





# ଇରାଣୀ ନଗରୀ





ଉମାକାନ୍ତ ମହାପାତ୍ର

# ଇନ୍ଦ୍ରାଣୀ ନଗରୀ

ଉମାକାନ୍ତ ମହାପାତ୍ର

ପ୍ରକାଶକ

ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚାମ୍ବର୍ସ
ଭୌମ ନଗର, ଭୁବନେଶ୍ୱର-୭୫୧୦୦୧
ଷ୍ଟେସନ ରୋଡ୍, କଟକ-୭୫୩୦୦୧

ପ୍ରଥମ ପ୍ରକାଶ
୧୯୯୦

ପ୍ରଚ୍ଛଦ ଶିଳ୍ପୀ
ପ୍ରଭଞ୍ଜନ ମହାନ୍ତି

ମୁଦ୍ରଣ
ଏକାମ୍ର ଏଣ୍ଟରପ୍ରାଇଜର୍ସ
ରଥ ରୋଡ୍, ଭୁବନେଶ୍ୱର-୭୫୧୦୦୨

**ପଚିଶି ଟଙ୍କା ମାତ୍ର**

**INDRANI NAGARI**
Written by UMAKANT MOHAPATRA
Published by LARK BOOKS
Subarnarekha Chambers, Bhouma Nagar, Bhubaneswar-1
Printed at EKAMRA ENTERPRISERS, Rath Road, Bhubaneswar-2
First Edition 1990
Cover design by PRAVANJAN MOHANTY
**Rupees Twentyfive only**

ଅଗଷ୍ଟ ୯, ୧୯୯୦

ପାଠକ ପାଠିକାଗଣ ସମୀପେଷୁ,

ସାଧାରଣତଃ ମୁଖବନ୍ଧଟାକୁ ଅବାନ୍ତର ବୋଲି ଲୋକେ ପଢ଼ନ୍ତି ନାହିଁ । ଏଣୁ ଏହି ପୃଷ୍ଠାଟି ନ ପଢ଼ିଲେ ବହିର ରସ ଗ୍ରହଣରେ କିଛି ଅସୁବିଧା ହେବନାହିଁ । ତଥାପି ଏହା ମୋର ଏକ ବ୍ୟକ୍ତିଗତ ଦଲିଲ ଯାହାଦ୍ୱାରା କି ଏହି ବହିର ମୂଳ ଉଦ୍ଦେଶ୍ୟ ଅପେକ୍ଷାକୃତ ଶୀଘ୍ର ସ୍ପଷ୍ଟ ହୋଇଯିବ । ପ୍ରଥମତଃ ନାମଟା । ଇନ୍ଦ୍ର ବଦଳୁଥାନ୍ତି, କିନ୍ତୁ ଇନ୍ଦ୍ରାଣୀ ଏକ । ଏହିପରି ଗୋଟିଏ ଗୋଟିଏ ରାଜଧାନୀ ଥାଏ । ଯେଉଁଗୁଡ଼ିକ ସେହି ଦେଶର, ସେହି ଜାତିର ରାଜଧାନୀ । କୌଣସି ରାଜବଂଶର ନୁହେଁ । ଯଥା ରୋମ, ତାହା କେବଳ ଇଟାଲିର ରାଜଧାନୀ ନୁହେଁ । ତାହା କ୍ୟାଥଲିକ୍ ଖ୍ରୀଷ୍ଟାନ୍ ଧର୍ମ ଓ ୟୁରୋପୀୟ ସଭ୍ୟତାର ରାଜଧାନୀ । ସେହିପରି ଚୀନ୍‌ର ପେଇଚିଂ । ଏମାନେ ହେଲେ ଇନ୍ଦ୍ରାଣୀ । ଏଥିରେ ଦିଲ୍ଲୀ ମଧ୍ୟ ସାମିଲ । ଭାରତରେ ଦିଲ୍ଲୀର ପ୍ରତିଦ୍ୱନ୍ଦୀ ଭାବେ ବାହାରିଛନ୍ତି ପାଟଳୀପୁତ୍ର ଓ ଉଜ୍ଜୟିନୀ । କିନ୍ତୁ ଶେଷକୁ ଦିଲ୍ଲୀ ହିଁ ରହିଛି । ଅନ୍ୟାନ୍ୟ ନଗରୀ ଏମାନଙ୍କ ସଙ୍ଗେ ସମକକ୍ଷ ନୁହଁନ୍ତି ।

ଦିଲ୍ଲୀର ଏକ ବ୍ୟକ୍ତିତ୍ୱ ଅଛି ଯାହାକୁ ମୁଁ ସାମନାକୁ ଆଣିବାକୁ ଚେଷ୍ଟା କରିଛି । ଦିଲ୍ଲୀର ବ୍ୟକ୍ତିତ୍ୱ ନାନା ବିରୋଧାଭାସରେ ପରିପୂର୍ଣ୍ଣ । ଏହା ସ୍ୱାଭାବିକ୍ ଏବଂ ବିରୋଧାଭାସ ବା contradiction ଯୋଗୁଁ ବ୍ୟକ୍ତିତ୍ୱର ମହିମା କ୍ଷୁର୍ଣ୍ଣ ହୁଏନାହିଁ । ଯେଉଁ ବ୍ୟକ୍ତିତ୍ୱରେ ବିରୋଧାଭାସ ନାହିଁ ତାହା କ୍ଲାନ୍ତିକର କାରଣ ମନୁଷ୍ୟ ଓ ଜଡ ମଧ୍ୟରେ ତଫାତ୍ ନଥାଏ । ସେହିପରି ଯେଉଁ ନଗରରେ ବିରୋଧାଭାସ ନାହିଁ, ତାହା ନଗର ନୁହେଁ; କୁଲି କ୍ୟାମ୍ପ୍ ହୋଇପାରେ । ଦିଲ୍ଲୀ ଭାରତବର୍ଷକୁ ଦେଇଛି ମହମ୍ମଦ ତୋଗଲକ, କିନ୍ତୁ ତା ସାଥିରେ ନିଜାମୁଦ୍ଦିନ ଓ ଅମୀର ଖୁସ୍‌ରୋ ।

ତେବେ ଏହି ବହିର ବିଷୟବସ୍ତୁ ଦିଲ୍ଲୀ କେବଳ ନୁହେଁ । ଏହାର ପ୍ରଧାନ ବିଷୟ ହେଲ ଇତିହାସର ଅଧ୍ୟୟନ । ମୋର ବିଶ୍ୱାସ ଯେ ଆମେ ଭାରତୀୟମାନେ ବିଶେଷ କରି ହିନ୍ଦୁମାନେ ଇତିହାସ ପ୍ରତି ଘୋର ଅବିଚାର କରିଛୁ । ପ୍ରଥମ କଥା ଆମେ ନିଜେ ଇତିହାସ ଲେଖିଲୁ ନାହିଁ । ତାପରେ ବିଜେତା ଯେଉଁ ଇତିହାସ ଲେଖିଲେ, ସେ ମୁସଲମାନ ହୁଅନ୍ତୁ ବା ଇଂରେଜ ହୁଅନ୍ତୁ, ତାହାକୁ ସତ ବୋଲି ଧରିନେଲୁ । ଏହି ଜାତିର ଆତ୍ମସମ୍ମାନ ଉପରେ ଏକ ସ୍ଥାୟୀ ଆଘାତ ଆଣିଦେଲା । ଗୋଟିଏ ଜାତିର ଇତିହାସରେ ଅନେକ ସମୟରେ ପତନ ଘଟିଥାଏ । ସାମୟିକ ପରାଧୀନତା ପ୍ରାୟ ପ୍ରତ୍ୟେକ ଜାତିର ଇତିହାସରେ ଅଛି । ଚୀନ୍ ଦେଶର କଥା ଧରିଯାଉ । ଏହି ଜାତି ମଧ୍ୟ କେତେଥର ପରାଧୀନ ହୋଇଛି । କିନ୍ତୁ ଏଠାରେ ପଣ୍ଡିତ ଶ୍ରେଣୀ ଉତ୍ତମ ଇତିହାସ

ରଚନା କରିଛନ୍ତି ଏବଂ ପରାଧୀନତା ସମ୍ପର୍କରେ ଛପାଯାଉଥିବା ପତ୍ରିକାରେ ମଧ୍ୟ ତାଙ୍କର ଲେଖା ଚଲାଇଛନ୍ତି । ଜାତିକୁ ସଚେତ କରି ରଖିଛନ୍ତି ଯେ ଚୀନ୍ ହେଲା "ଚଂ-କୁଓ" ଅର୍ଥାତ୍ କେନ୍ଦ୍ର ଦେଶ । ଆଜି ଏହା ପରାଧୀନ । କିନ୍ତୁ କାଲି ପୁଣି ଏକ ଖାଣ୍ଟି ଚୀନା ରାଜବଂଶ ରାଜତ୍ୱ କରିବ । ଏଥିଲାଗି ପ୍ରସ୍ତୁତ ହୁଅ, ମନବଳ ରଖ । ଏଇଠି ଆମର ଭୁଲ୍ । ଆମେ ଇତିହାସକୁ ଭୁଲିଲୁ । ଏହା ମଧ୍ୟ ଭୁଲିଗଲୁ ଯେ ନିଜ ପକ୍ଷର ଦଲିଲ ପେଶ୍ ନ କଲେ ଏକତରଫା ଡିଗ୍ରୀ ହୋଇଯିବ ।

ଏଇ ସଂଗ୍ରହର କେତେକ ପ୍ରବନ୍ଧ ସମସ୍ତ ସମୟରେ ଭିନ୍ନ ଭିନ୍ନ ପତ୍ରିକାମାନଙ୍କରେ ବାହାରିଛି । ସେଥିଲାଗି ସମାବେଶ, ଝଙ୍କାର, ପାଞ୍ଚଜନ୍ୟ, ସପ୍ତର୍ଷି ଓ ସମ୍ବାଦ ସମ୍ପାଦକମାନଙ୍କୁ ଧନ୍ୟବାଦ ଜଣାଉଛି ।

୩୪-ଜୟଦେବ ନଗର
ଭୁବନେଶ୍ୱର-୭୫୧୦୦୨

ଉମାକାନ୍ତ ମହାପାତ୍ର

# ସୂଚୀପତ୍ର

# ଦିଲ୍ଲୀ-୧

ଭାରତର ରାଜଧାନୀ ଦିଲ୍ଲୀ । ସ୍ୱର୍ଗର ଇନ୍ଦ୍ରାଣୀଙ୍କ ପରି ଚିରଯୌବନା ଓ ଚିରନୂତନା । କେତେଥର ଭାଙ୍ଗିଛି । କେତେଥର ପୁଣି ଉଠିଛି । ଦିଲ୍ଲୀର ଇତିହାସ ତ ଇତିହାସ ନୁହେଁ । ଏହା ଏକ ରୋମାନ୍ସ । ସମ୍ରାଟମାନେ ସେମାନଙ୍କ ଔଦ୍ଧତ୍ୟର ପରମ ପରିଚୟ ହିସାବରେ ତାଙ୍କ ନାମକୁ ଦିଲ୍ଲୀ ଉପରେ ଥାପିବାର ବାରମ୍ବାର ଅପଚେଷ୍ଟା କରିଛନ୍ତି । ମହମ୍ମଦତୁଗଲକଙ୍କର ତୁଗଲକାବାଦ, ଫିରୋଜଶାହ ତୁଗଲକଙ୍କର ଫିରୋଜାବାଦ, ଶାହାଜାହାନଙ୍କ ଶାହଜାହାନାବାଦ ଦିଲ୍ଲୀର ଅଂଶ ବିଶେଷ । ମାତ୍ର ଦିଲ୍ଲୀ ସେହି ଦିଲ୍ଲୀ ରହିଛି । ଏହି ଇନ୍ଦ୍ରାଣୀ ନଗରୀର ପ୍ରାଚୀନତମ ନାମ ଇନ୍ଦ୍ରପ୍ରସ୍ଥ । ପାଣ୍ଡବ ମାନଙ୍କର ରାଜଧାନୀ । ମୟ ଦାନବ ଦ୍ୱାରା ନିର୍ମିତ । କିମ୍ବଦନ୍ତୀ କହେ ଯେ ବର୍ତ୍ତମାନର ପୁରାନାକିଲ୍ଲା ହେଉଛି ଇନ୍ଦ୍ରପ୍ରସ୍ଥ ଉପରେ ପ୍ରତିଷ୍ଠିତ ।

କୁରୁବଂଶର ରାଜଧାନୀ ଥିଲା ହସ୍ତିନାପୁର । ବର୍ତ୍ତମାନର ମିରଟ ସହର ପାଖା ପାଖି । ପାଣ୍ଡବମାନଙ୍କର ନୂଆ ରାଜଧାନୀ ସ୍ଥାପନା ଗଭୀର ବୁଦ୍ଧିମତ୍ତାର ପରିଚାୟକ । ନିଶ୍ଚୟ ଏହା ପାଣ୍ଡବମାନଙ୍କର ବ୍ରେନ୍‌ଟ୍ରଷ୍ଟ ଅର୍ଥାତ ଶ୍ରୀକୃଷ୍ଣଙ୍କର ଉପଦେଶ । ସେତେବେଳେ ନଦୀପଥ ଥିଲା ବ୍ୟବସାୟ ବାଣିଜ୍ୟର ସର୍ବଶ୍ରେଷ୍ଠ ପଥ । ହସ୍ତିନାପୁର ନଦୀ ଉପରେ ଅବସ୍ଥିତ ନୁହେଁ । ଏଣୁ ବାଣିଜ୍ୟ କେନ୍ଦ୍ର ହିସାବରେ ଗଢିଉଠିବା ସମ୍ଭବ ନଥିଲା । ଇନ୍ଦ୍ରପ୍ରସ୍ଥ ଯେ ଭବିଷ୍ୟତରେ ସମୃଦ୍ଧ ଓ ଶକ୍ତିଶାଳୀ ସାମ୍ରାଜ୍ୟର ରାଜଧାନୀ ହେବ ତା ହୁଏତ ସେତେବେଳର ଦୂରଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞମାନେ ବୁଝିପାରିଥିବେ । ସମସ୍ତେ ଜାଣନ୍ତି ଯେ ପାଣ୍ଡବମାନେ ପାଞ୍ଚଖଣ୍ଡି ଗାଁ ମାଗିଥିଲେ ଏବଂ ଦୁର୍ଯ୍ୟୋଧନ ତାହା ନ ମାନିବାରୁ ପ୍ରଳୟଙ୍କରୀ ମହାଭାରତ ଯୁଦ୍ଧ ହୋଇଥିଲା । ଲୋକମୁଖରେ ଇନ୍ଦ୍ରପ୍ରସ୍ଥର ପ୍ରାକୃତ ରୂପ ହୋଇଥିଲା ଇନ୍ଦର ପତ୍ । ଆହୁରି ମଧ୍ୟ ଲୋକମୁଖରେ ପ୍ରଚଳିତ ଯେ ଅନ୍ୟ ଚାରିଟି ଗାଁ ହେଲା, ପାନିପତ୍, ସୋନିପତ୍, ବାଗପତ୍ ଓ ତିଲପତ୍ । ଏହି ପାଞ୍ଚଖଣ୍ଡି ଗାଁ ପାଇଥିଲେ ପାଣ୍ଡବମାନେ ଯୁଦ୍ଧ କରିନଥାନ୍ତେ । କେବଳ ଅଭିମାନୀ ଦୁର୍ଯ୍ୟୋଧନ ହିଁ ଘୋଷଣା କରିଥିଲା ଯେ ସେ ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଦେବନାହିଁ । ଠିକ୍ କଥା । କିନ୍ତୁ ସେ ପାଞ୍ଚଖଣ୍ଡି ଗାଁ ଓ ହସ୍ତିନାପୁର ଇତ୍ୟାଦିର ଅବସ୍ଥିତି ବିଷୟରେ ଆମେ କିଛି ଭାବୁନାହୁଁ । ତଳେ

ଏକ ମାନଚିତ୍ର ଦେଉଛୁ ଯାହାକି ଏ ବିଷୟରେ ବିଶେଷ ଆଲୋକପାତ କରିପାରେ । ଅବଶ୍ୟ ଧରି ନେଉଛୁ ଯେ କିମ୍ବଦନ୍ତୀ ମୋଟାମୋଟି ସତ । ହସ୍ତିନାପୁରକୁ ମିରଠ ଓ ଦିଲ୍ଲୀକୁ ଇନ୍ଦ୍ରପ୍ରସ୍ଥ ଧରିବାରେ ଆପତ୍ତି ନହେବା କଥା । ପ୍ରତ୍ନତତ୍ତ୍ୱ ଗବେଷଣା ମଧ୍ୟ




ମୋଟାମୋଟି ଏହା ସପକ୍ଷରେ । ମାନଚିତ୍ରରୁ ଗୋଟିଏ ଜିନିଷ ଲକ୍ଷ୍ୟ କରିବାର କଥା ଯେ ଏହି ପାଞ୍ଚଟି ଗ୍ରାମ ଏକ ବିରାଟ ଇଲାକା । ପାନିପଥ୍‌ରୁ ତିଲପଥ୍ ପ୍ରାୟ ଅଶି ମାଇଲ । ପୁଣି ମଥୁରା ପାଣ୍ଡବଙ୍କର ମିତ୍ରରାଜ୍ୟ । ଏଣୁ ପାଣ୍ଡବଙ୍କର ପ୍ରସ୍ତାବ ମାନିନେବା ଅର୍ଥ ଯମୁନାର ସମସ୍ତ ପଶ୍ଚିମ ଅଞ୍ଚଳରେ ପାଣ୍ଡବଙ୍କର ଅଧିକାର ସ୍ୱୀକାର କରିଯିବା । ତା ଛଡ଼ା କୁରୁ ରାଜ୍ୟରୁ ପଞ୍ଚନଦ, ଗାନ୍ଧାର, ବାହ୍ଲିକ ଇତ୍ୟାଦିକୁ ଯାଉଥିବା ବାଣିଜ୍ୟ ପଥ ଉପରେ ପାଣ୍ଡବଙ୍କର ଅଧିକାର ରହିବ । ଏହା ହସ୍ତିନାପୁର ପକ୍ଷରେ ନିରାପତ୍ତା ଦୃଷ୍ଟିରୁ ଗ୍ରହଣଯୋଗ୍ୟ କି ? ଦୁର୍ଯ୍ୟୋଧନର ହଠକାରିତା ଅନ୍ୟ ଏକ ଦୃଷ୍ଟିଭଙ୍ଗୀରୁ ଦେଶର ସ୍ୱାର୍ଥରକ୍ଷା ମଧ୍ୟ କୁହାଯାଇ ପାରେ । ଯେ ଜିତେ ସେ ହିଁ ଠିକ୍ ।

ସେ କଥା ଥାଉ । ବର୍ତ୍ତମାନ ମହାଭାରତରୁ ଇତିହାସ ଆଡ଼କୁ ଆସିବା ଦରକାର । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମୌର୍ଯ୍ୟ ବଂଶର ଏକ ରାଜା ଏହି ନଗରୀର ସ୍ଥାପନା କରିଥିଲେ ବୋଲି କୁହାଯାଏ । ତାଙ୍କର ନାଁ ଦିଲୁରୁ କୁଆଡ଼େ ସହରର ନାଁ ଦିଲ୍ଲୀ ହେଲା । ତେବେ ଏ ବିଷୟରେ ସଠିକ କହିବା କଷ୍ଟ । ଇତିହାସର ଏକ ପ୍ରଧାନ ବ୍ୟକ୍ତିତ୍ୱ ହେଲେ ପୃଥ୍ୱୀରାଜ ଚୌହାନ । ତାଙ୍କର ବନ୍ଧୁ ଓ କବି ଚାନ୍ଦ ବରଦାଇ ତାଙ୍କର କାବ୍ୟ ପୃଥ୍ୱୀରାଜ ରାସୋରେ ତାଙ୍କୁ ଅମର କରିଯାଇଛନ୍ତି । ଅବଶ୍ୟ ଏହା ଆଗରୁ ତୋମର ରାଜପୁତ୍ ମାନେ ଦିଲ୍ଲୀରେ ନିଜର ରାଜଧାନୀ

ସ୍ଥାପନ କରିଥାଇ ଥିଲେ । ଏହି ବଂଶର ରାଜା ଅନଙ୍ଗ ପାଳଙ୍କୁ ହିଁ ଆଧୁନିକ ଦିଲ୍ଲୀର ସଂସ୍ଥାପକ ବୋଲି ଗ୍ରହଣ କରାଯାଇ ପାରେ । କୁତବ୍‌ମିନାର ପାଖରେ ଯେଉଁ ବିରାଟ ଦୁର୍ଗ ଓ ନଗରୀର ଭଗ୍ନାବଶେଷ ଅଛି, ତାହା ଅନଙ୍ଗପାଳଙ୍କ ଦ୍ୱାରା ହିଁ ପ୍ରତିଷ୍ଠିତ । କୁତବମିନାରର ହତାଭିତରେ ଯେଉଁ ଲୌହ ସ୍ତମ୍ଭ ଅଛି ତା ମଧ୍ୟ ଅନଙ୍ଗପାଳ ନେଇଆସି ପ୍ରତିଷ୍ଠା କରିଥିଲେ । ତାର ପ୍ରାୟ ଶହେ ବର୍ଷ ପରେ ପୃଥ୍ୱୀରାଜ ଚୌହାନ ଓ ତାଙ୍କ ସ୍ତ୍ରୀ ସଂଯୁକ୍ତା । ସେ ପ୍ରେମ କାହାଣୀ ଓ ସଂଯୁକ୍ତାଙ୍କ ପୃଥ୍ୱୀରାଜଙ୍କ ସଙ୍ଗେ ବିବାହର କାହାଣୀ ତ ଲୋକମୁଖରେ ପ୍ରଚଳିତ । ଦୁଃଖର କଥା ଯେ ଚୌହାନ ସୂର୍ଯ୍ୟ ଏତେ ଶୀଘ୍ର ଅସ୍ତ ହୋଇଗଲା । ତରାଇନ୍‌ର ପ୍ରଥମ ଯୁଦ୍ଧ ପରେ କେହି କଳ୍ପନା ମଧ୍ୟ କରିନଥିବେ ଯେ ପରାସ୍ତ ଓ ଅପଦସ୍ତ ମହମ୍ମଦ ଘୋରୀ ମାତ୍ର ବର୍ଷକ ପରେ ତାଙ୍କର ବିଜେତା ପୃଥ୍ୱୀକୁ ଚୌହାନଙ୍କୁ ଧୂଳିସାତ କରିଦେବେ ।

୧୨୦୦ ଖ୍ରୀଷ୍ଟାବ୍ଦ ପରଠାରୁ ଦିଲ୍ଲୀର ଲିଖିତ ଇତିହାସ ଅଛି । ମୁସଲମାନ ସମ୍ରାଟମାନଙ୍କର ଗୋଟିଏ ଭଲ ଗୁଣ ଯେ ସେମାନେ ଇତିହାସ ଲେଖାଉଥିଲେ ଓ ଐତିହାସିକ ମାନଙ୍କର ପୃଷ୍ଠପୋଷକତା କରୁଥିଲେ । ଅବଶ୍ୟ ଏ ଇତିହାସ ଏକ ତରଫା । କିନ୍ତୁ ପ୍ରାୟ ସବୁ ଇତିହାସରେ ଏ ଦୋଷ କିଛି ପରିମାଣରେ ଥାଏ । ହିନ୍ଦୁମାନଙ୍କର ଇତିହାସ ପ୍ରତି ଉଦାସୀନତା ବର୍ତ୍ତମାନର ଐତିହାସିକମାନଙ୍କ ପକ୍ଷରେ ଏକ ପ୍ରଚଣ୍ଡ ସମସ୍ୟା । ଏହି ମୁସଲମାନ ଆକ୍ରମଣରେ କଥାହିଁ ଧରାଯାଉ । ଇତିହାସ ମୁସଲିମ୍ ଲେଖକ ମାନଙ୍କ ଗ୍ରନ୍ଥ ଉପରେ ନିର୍ଭର କରି ଲେଖାଯାଇଛି । ସେଥିରୁ ମନେହୁଏ ଯେପରି ପ୍ରଖର ସୂର୍ଯ୍ୟରଶ୍ମି ଆଗରେ ଶିଶିରକଣା ଉଡ଼ିଗଲା ପରି ମୁସଲମାନ ଶକ୍ତି ଆଗରେ ହିନ୍ଦୁମାନେ ଉଡ଼ିଗଲେ । କିନ୍ତୁ ଗୋଟେ ଦୁଇଟା ସମସ୍ୟା ରହି ଯାଉଛି । ଏହି ଅପରାଜେୟ ମୁସଲିମ୍ ଶକ୍ତି ଭାରତରେ ଅର୍ଥାତ ସିନ୍ଧୁ ପ୍ରଦେଶରେ ଦେଖାଦେଲା ୭୩୬ ଖ୍ରୀଷ୍ଟାବ୍ଦରେ ଏବଂ ସିନ୍ଧୁରେ ମୁସଲମାନ ରାଜ୍ୟ ସ୍ଥାପିତ ହେଲା ୭୧୧ ଖ୍ରୀଷ୍ଟାବ୍ଦରେ । ତାପରେ ଏହି ଅପରାଜେୟ ଶକ୍ତି ସେଇଠି ଅଟକି ଗଲା । ଭାରତରେ ପକ୍‌କା ମୁସଲିମ ସାମ୍ରାଜ୍ୟ ସ୍ଥାପନା ହୁଏ ୧୧୯୨ ଖ୍ରୀଷ୍ଟାବ୍ଦରେ ତରାଇନ୍‌ର ଯୁଦ୍ଧରେ ପୃଥ୍ୱୀରାଜଙ୍କ ପରାଜୟ ପରେ । କେଉଁ ଶକ୍ତି ପ୍ରାୟ ପାଞ୍ଚଶହେ ବର୍ଷ ଭାରତବର୍ଷକୁ (ଉତ୍ତର ପଶ୍ଚିମର କେତେକ ସ୍ଥଳଅଞ୍ଚଳ ବାଦ ଦେଇ) ମୁସଲିମ ବିଜୟରୁ ରକ୍ଷାକରିଥିଲା ? ଏବଂ ସେ ସମୟରେ ଯେତେବେଳେ କି ମୁସଲିମ ଦିଗ୍‌ବିଜୟ ପତାକା ୟୁରୋପରେ ସ୍ପେନଠାରୁ ଭାରତ ମହାସାଗର ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା ଏବଂ ୟୁରୋପୀୟ ଖ୍ରୀଷ୍ଟାନ ଶକ୍ତି ଏହା ବିରୁଦ୍ଧରେ ବାରମ୍ବାର ବିଫଳ ହୋଇଥିଲା । ଅନ୍ୟ ଏକ ସମସ୍ୟା ହେଲା ଯେ ଉତ୍ତର ଭାରତରେ ମୁସଲମାନ ମାନେ ପ୍ରାୟ ଛଅଶହ ବର୍ଷ ରାଜତ୍ୱ କଲେ । କିନ୍ତୁ ଅଧିକାଂଶ ଲୋକସଂଖ୍ୟା ମୁସଲମାନ ହେଲନାହିଁ । ଏହା ଅନ୍ୟ କୌଣସି ମୁସଲିମ୍ ଶାସିତ ଦେଶରେ

ହୋଇନାହିଁ । କେବଳ ସ୍ପେନ୍ ଛଡ଼ା । କିନ୍ତୁ ସେଠାରେ ମୁସଲମାନ ଶାସନ ସ୍ୱଳ୍ପକାଳ ସ୍ଥାୟୀ ଥିଲା । ଏହି ଏକଦେଶଦର୍ଶିତାର ସମସ୍ୟା ଇଂରେଜ ଅମଳରେ ଆହୁରି ଉତ୍କଟ ହୋଇଗଲା । ଭାରତୀୟ ସୈନିକଶକ୍ତି, ଇଂରେଜ ମାନେ ଯେପରି ପ୍ରଚାର କରନ୍ତି, ସେପରି ନିକୃଷ୍ଟ ନଥିଲା । ଇଂରେଜମାନେ ମଧ୍ୟ ବଡ଼ ବଡ଼ ଯୁଦ୍ଧରେ ଭାରତୀୟଙ୍କଠାରୁ ହାରି ଯାଇଛନ୍ତି । କିନ୍ତୁ ଯେହେତୁ ସେମାନେ ଶେଷ ବିଜୟ ଲାଭ କଲେ, ଏଣୁ ତାଙ୍କର ସବୁ ଠିକ୍, ଭାରତୀୟଙ୍କର ସବୁ ଭୁଲ । ସେକଥା କେବେ ଭବିଷ୍ୟତରେ ଆଲୋଚନା କରିବାର ବାସନା ରହିଲା ।

ବର୍ତ୍ତମାନ ଚାଲନ୍ତୁ ଦିଲ୍ଲୀ ଫେରିଯିବା । ଦାସବଂଶର ପ୍ରଧାନ ସମ୍ରାଟ କୁତୁବୁଦ୍ଦିନ ଆଇବକ ଓ ଇଲତୁତମିଶ ପୃଥ୍ୱୀରାଜଙ୍କ ଦିଲ୍ଲୀକୁ ନୂଆକରି ଗଢିବାର ଚେଷ୍ଟା କଲେ । ସେମାନେ ଆଣିଲେ ମଧ୍ୟଏସିଆ ଓ ତୁର୍କି ସ୍ଥାପତ୍ୟ । ତାର ନିଦର୍ଶନ କୁତବମୀନାର ଓ ତା ପାଖାପାଖି ଥିବା ଅନ୍ୟାନ୍ୟ ସୌଧ । ତାପରେ ଆସିଲେ ଆଲ୍ଲାଉଦ୍ଦିନ ଖିଲଜି । ସେ ତ ପୁରୁଣା ଦିଲ୍ଲୀ (କୁତବମୀନାର ପାଖାପାଖି) ଅନେକ ସୌଧ ନିର୍ମାଣ କଲେ । କିନ୍ତୁ ଏତିକରେ ତାଙ୍କ ମନ ପୂରିଲା ନାହିଁ । ସେ ତିଆରି କଲେ ଆଉ ଏକ ସହର । ଏହା ସିରି ଅର୍ଥାତ ବର୍ତ୍ତମାନର ଶେଖଗାଁଓ ପାଖାପାଖି । ଏହା ତୃତୀୟ ଦିଲ୍ଲୀ । ଆଲ୍ଲାଉଦ୍ଦିନ ଅତ୍ୟନ୍ତ ବୁଦ୍ଧିମାନ ଓ କୁଶଳୀ ସମ୍ରାଟ ଥିଲେ । ସେ ଶାସନ ଓ ସାମ୍ରାଜ୍ୟକୁ ଏକ ସୁଦୃଢ଼ ପ୍ରଶାସନିକ ଓ ଅର୍ଥନୈତିକ ଭିତ୍ତି ଉପରେ ସ୍ଥାପନ କରିଥିଲେ । ଆଶ୍ଚର୍ଯ୍ୟର କଥା ଯେ ଏହି ବ୍ୟବସ୍ଥାର ପଛରେ ଥିଲେ ଦୁଇଟି ହିନ୍ଦୁ ବ୍ୟବସାୟୀ ଶ୍ରେଣୀ, ମୁଲତାନୀ ଓ ଓ ବଂଜାରା ଏବଂ ହିନ୍ଦୁ କାୟସ୍ଥ ରାଜସ୍ୱ ଅଧିକାରୀ ଗଣ । ଏହି ବ୍ୟବସ୍ଥା ପ୍ରାୟ ମୋଗଲ ସମୟ ପର୍ଯ୍ୟନ୍ତ ଦୃଢ଼ ଥିଲା ଏବଂ ପରବର୍ତ୍ତୀ ରାଜପୁରୁଷ ମାନଙ୍କର ଚରମ ଅପାରଗତା, ସ୍ୱାର୍ଥାନ୍ଧତା ଏବଂ ରକ୍ତଲୋଲୁପତା ସତ୍ତ୍ୱେ ଭାରତ ସାମ୍ରାଜ୍ୟକୁ ମୋଟାମୋଟି ରକ୍ଷା କରି ପାରିଥିଲା ଏବଂ ସେ ସମୟରେ ଭାରତ ବର୍ଷରେ ଏକ ସମୃଦ୍ଧ ଅର୍ଥନୈତିକ ବ୍ୟବସ୍ଥା ଥିଲା । ଆଲ୍ଲାଉଦ୍ଦିନ କିଛି କମ୍ ଯୋଦ୍ଧା ନଥିଲେ । ରାଣୀ ପଦ୍ମିନୀ ଓ ଦାକ୍ଷିଣାତ୍ୟ ଅଭିଯାନ କଥା ଛାଡ଼ନ୍ତୁ । ସେ ଗୁଡ଼ାକ ତାଙ୍କର ଅପରିପକ୍ୱ ଯୁବକ ଅବସ୍ଥାର କସରତ । ତାଙ୍କ ରାଜତ୍ୱ କାଳରେ ଅନେକ ମଙ୍ଗୋଲ ଆକ୍ରମଣ ହୋଇଛି । ସେ ସମୟରେ ମଙ୍ଗୋଲ ମାନେ ଅଜେୟ ବୋଲି ଧରି ଯାଉଥିଲା । ଇସଲାମ୍‌ର ଖଲିଫାଙ୍କ ରାଜଧାନୀ ବାଗଦାଦ ମଙ୍ଗୋଲ ମାନେ ଧ୍ୱଂସ କରିଥିଲେ । ଆଲ୍ଲାଉଦ୍ଦିନ ମଙ୍ଗୋଲ ମାନଙ୍କୁ ପରାଜିତ କରି ଭାରତରୁ ତଡ଼ି ଦେଇଥିଲେ । ଭାରତୀୟ ଯୁଦ୍ଧ କୌଶଳ ଓ ଶୌର୍ଯ୍ୟର ଏହି କାହାଣୀ ଯଥେଷ୍ଟ ପ୍ରଚାରିତ ହୋଇନାହିଁ ଏବଂ ଆମେମାନେ ଧରି ନେଇଛୁ ଯେ ମଧ୍ୟ ଏସିଆର ଆକ୍ରମଣକାରୀ ମାନେ ସବୁବେଳେ ସଫଳ ହୋଇଛନ୍ତି । ଏହା ଠିକ୍ ନୁହେଁ । ମଙ୍ଗୋଲ ଆକ୍ରମଣ ବିଫଳ କରିଦେବା ନିଈଆଁକୁ ଉଜାଣି ବୁହାଇବା ପରି କଷ୍ଟସାଧ୍ୟ ଓ ଗୌରବ ବିଷୟ ।

ଆଲ୍ଲାଉଦ୍ଦିନଙ୍କ ପରେ ଖିଲଜି ସୂର୍ଯ୍ୟ ଏକ ରକ୍ତ ସମୁଦ୍ରରେ ଅସ୍ତ ଗଲା । ଏ ସମସ୍ତଟା ଦିଲ୍ଲୀର ଇତିହାସରେ ଏକ ଘୃଣ୍ୟ ଓ କଳଙ୍କମୟ ଅଧ୍ୟାୟ । ମଝିରେ ମଲ୍ଲିକ୍ କାଫୁର୍ ନାମକ ଏକ ଗୁଣ୍ଡା ମଧ୍ୟ ସିଂହାସନରେ ବସିଗଲା ।

ଏହାପରେ ତୋଗଲକମାନଙ୍କ ଶାସନ । ଗିୟାସୁଦ୍ଦିନ ଓ ମହମ୍ମଦ ବିନ ତୋଗଲକ ଆଉ ଏକ ନୂଆ ସହର ଗଢ଼ିଲେ—ତୋଗଲକାବାଦ । ଆରାବଲୀ ପର୍ବତ ଓ ଯମୁନା ମଧ୍ୟରେ ଏହି ସହର । ବର୍ତ୍ତମାନ ଅବଶ୍ୟ ସେଠି ସହର ନାହିଁ, କିନ୍ତୁ ତୁଗଲକାବାଦ ଦୁର୍ଗ ଅଛି । ଫିରୋଜଶାହ ତୋଗଲକ ଏହି ସହରକୁ ବଢ଼ାଇ ଯମୁନା କୂଳେ କୂଳେ ଫିରୋଜଶାହ କୋଟଲା ପର୍ଯ୍ୟନ୍ତ ନେଇଗଲେ । ଏହାର ନାମ ଦେଲେ ଫିରୋଜାବାଦ । ସେ ସମୟର ଅବସ୍ଥାକୁ ଦେଖିଲେ ଦିଲ୍ଲୀ ଥିଲା ମର୍ତ୍ତ୍ୟର ଇନ୍ଦ୍ରପୁରୀ । ସମସ୍ତ ଇସଲାମୀ ଦୁନିଆ ଅର୍ଥାତ ମଧ୍ୟ ଏସିଆ ଓ ମଧ୍ୟ ପ୍ରାଚ୍ୟକୁ ମଙ୍ଗୋଲମାନେ ଛାରଖାର କରିଦେଇଥିଲେ । ତା ତୁଳନାରେ ଭାରତବର୍ଷ ଦାରୁଲ ଅମନ୍ ଅର୍ଥାତ ଶାନ୍ତିର ଘର । ମୁଲ୍ଲା କୁହନ୍ତୁ, ବ୍ୟବସାୟୀ କୁହନ୍ତୁ, ଶିଳ୍ପୀ କୁହନ୍ତୁ, ଇରାକ, ଇରାନ ତୁର୍କିସ୍ତାନ ଇତ୍ୟାଦିରୁ ଗୁଣୀଜନମାନେ ଦିଲ୍ଲୀ ଚାଲି ଆସିଲେ । ଏମାନଙ୍କ ଦ୍ୱାରା ଦିଲ୍ଲୀ ସମୃଦ୍ଧ ହେଲା । କହିବାକୁ ଗଲେ ସେ ସମୟର ଦୁନିଆରେ ଦିଲ୍ଲୀ ସବୁଠାରୁ ସମୃଦ୍ଧ ନଗର ବୋଲି ଦାବୀ କରି ପାରିଥାନ୍ତା ।

କିନ୍ତୁ ଏହାକୁ ଛାରଖାର କରିଦେଲା ତିମୁର । ତିମୁରର ଆକ୍ରମଣ ଘୂର୍ଣ୍ଣିବାତ୍ୟା ପରି ଆସିଲା । ଦିଲ୍ଲୀରେ ହଜାର ହଜାର ଲୋକଙ୍କୁ ବିନା କାରଣରେ ନୃଶଂସ ଭାବରେ ହତ୍ୟା କରାଗଲା । କିନ୍ତୁ ତିମୁର ପ୍ରକୃତରେ କେବଳ ଏକ ଡକାୟତ ଥିଲା । ଦିଲ୍ଲୀ ଲୁଟ କରିନେଇ ତାର ଜନ୍ମସ୍ଥାନ ସମରକନ୍ଦକୁ ଫେରିଗଲା । ସାଙ୍ଗରେ ମଣିମୁକ୍ତା, ସୁନାରୁପା ଛଡ଼ା ଆଉ ଏକ ଦାମୀ ଜିନିଷ ନେଇଗଲା । ପ୍ରାୟ କୋଡ଼ିଏ ହଜାର କାରିଗର; ସମରକନ୍ଦକୁ ସଜେଇବା ପାଇଁ । ଏ ଆକ୍ରମଣ ଫଳରେ ଶାସନ ବ୍ୟବସ୍ଥା ଭାଙ୍ଗିଗଲା । ଆଉ ଦିଲ୍ଲୀ ଅନେକ କାଳ ପର୍ଯ୍ୟନ୍ତ ନିଜ ଗୌରବ ଫେରି ପାଇଲା ନାହିଁ । ଏହା ପରେ ଅବଶ୍ୟ ସୈୟଦ ଓ ଲୋଦିମାନେ ସାମ୍ରାଜ୍ୟର ଏକ ପ୍ରତିବମ୍ବ ବଞ୍ଚାଇ ରଖିଥିଲେ । ଏମାନେ ଦିଲ୍ଲୀକୁ ଦେଇଛନ୍ତି ଲୋଦି ଗାର୍ଡେନ । ଅତି ସୁନ୍ଦର ଜାଗା । କିନ୍ତୁ କୌଣସି ଗୋଟିଏ ସୌଧ ମନେ ରଖିଲା ଭଳି ନୁହେଁ । ଏବଂ ବଗିଚା ତ ଆଜିର ।

ତା ପରର ଦିଲ୍ଲୀର ନାମ ଦୀନପନାହ । ଏହା ପୁରୁନାକିଲ୍ଲା, ହାଇକୋର୍ଟ, ମଥୁରା ରୋଡ଼ ଅଞ୍ଚଳ ଏବଂ ବାହାଦୁରଶାହ ଜଫର ରୋଡ଼ ଯେଉଁଠି ଆଜିକାଲି ସବୁ ଖବର କାଗଜର ଅଫିସ । ଏହି ସହର ମୋଗଲ ସମ୍ରାଟ ହୁମାୟୁନ ଆରମ୍ଭ କରିଥିଲେ । ଶେରଶାହ ହୁମାୟୁନଙ୍କୁ ଭାରତରୁ ବିତାଡ଼ିତ କରି ଦେଇଥିଲେ । କିନ୍ତୁ ହୁମାୟୁନଙ୍କ ଅସମ୍ପୂର୍ଣ୍ଣ ନଗରକୁ ସମ୍ପୂର୍ଣ୍ଣ ମଧ୍ୟ କରିଥିଲେ । ଏବେ ତାହାର ନିଦର୍ଶନ

ସ୍ଥାପନା କରିଥିଲା । ଆକବର ଓ ଜାହାଙ୍ଗିର ଦିଲ୍ଲୀରେ ରହୁ ନଥିଲେ । ତାଙ୍କର ଘର ଥିଲା ଆଗ୍ରା । କିନ୍ତୁ ଶାହଜାହାନ ଦିଲ୍ଲୀ ଫେରି ଆସିଲେ । ସେ ଏକ ନୂତନ ଦିଲ୍ଲୀ ତିଆରି କଲେ—ଶାହଜାହାନାବାଦ । ବର୍ତ୍ତମାନର ପୁରୁଣା ଦିଲ୍ଲୀ ଅର୍ଥାତ ପ୍ରାଚୀର ପରିବେଷ୍ଟିତ ଦିଲ୍ଲୀ । ଶାହଜାହାନ ସମ୍ରାଟ ଏବଂ ଯୋଦ୍ଧା ହିସାବରେ ତ ବେଶି ନାମକାଦା । କିନ୍ତୁ ସେ କଳାକାର ମଧ୍ୟ । ସେ ସ୍ୱପ୍ନ ଦେଖୁଥିଲେ ଏବଂ ତାକୁ ସାକାର କରୁଥିଲେ ପଥରରେ । ତାଜମହଲ ତାଙ୍କର ମାର୍ବଲ ପଥରରେ ସ୍ୱପ୍ନ । ଏବଂ ସେ ସ୍ୱପ୍ନ ତାଙ୍କର ପ୍ରିୟାର । ଦିଲ୍ଲୀ ମଧ୍ୟ ତାଙ୍କର ସ୍ୱପ୍ନର ରୂପାନ୍ତର । କିନ୍ତୁ ବୋଧହୁଏ ସେ ସ୍ୱପ୍ନ ତାଙ୍କ ନିଜ ବିଷୟରେ । ଏହି ସ୍ୱପ୍ନ ଲାଲ ପଥରରେ । ତାଙ୍କର ଦୁଇଟି ପ୍ରଧାନ କୀର୍ତ୍ତି, ଲାଲକିଲ୍ଲା ଓ ଜାମାମସଜିଦ୍ । କିନ୍ତୁ ଏଠିତ ସ୍ଥାପତ୍ୟ ବିଷୟରେ ଆଲୋଚନା କରିବାର ସ୍ଥାନ ନୁହେଁ । ଆମର କାରବାର ଦିଲ୍ଲୀର ବ୍ୟକ୍ତିତ୍ୱ ନେଇ ।

ପ୍ରସିଦ୍ଧ ଉର୍ଦ୍ଦୁ କବି ମୀର ତକି ମୀରଙ୍କର ଏକ କବିତାର ଅଂଶ ହେଲା :

“ଦିଲ୍ଲୀ କେ ନଥେ କୁଚେ ଅଉର ଆକ୍ଏମୁସବ୍‌ବିରକେ
ଜୋ ଶକ୍ଲ ନଜର ଆଇ, ତସବୀର ନଜର ଆଇ ।”

ଅର୍ଥାତ୍ ଦିଲ୍ଲୀର ଗଳି ତ ଗଳି ନୁହେଁ । ଚିତ୍ରଶିଳ୍ପୀର କଳାକୃତି । ଯାହା ଆଖିରେ ପଡ଼ିଲା, ତା ଛବି ପରି ସୁନ୍ଦର । ଏଥିରୁ ବୁଝି ପାରୁଥିବେ କବି ଦିଲ୍ଲୀକୁ କେତେ ଭଲ ପାଉଥିଲେ । ମୀର ଯେ ଦିଲ୍ଲୀରେ ସୁଖରେ ଥିଲେ ତା ନୁହେଁ । ଏପରିକି ଦାରିଦ୍ର୍ୟର କଷାଘାତରେ ଲକ୍ଷ୍ନୌ ପଳାଇବାକୁ ବାଧ୍ୟ ହୋଇଥିଲେ (୧୭୮୨ ଖ୍ରୀଷ୍ଟାବ୍ଦ) । କିନ୍ତୁ ଶେଷରେ ଦିଲ୍ଲୀ ଫେରି ଆସିଥିଲେ । ଆଉ ଜଣେ ଉର୍ଦ୍ଦୁର ମହାନ କବି ଜୌକ୍ । ଦିଲ୍ଲୀର ଦୁର୍ଦ୍ଦିନ ଅର୍ଥାତ ଠିକ୍ ସିପାହୀ ବିଦ୍ରୋହର ପୂର୍ବର ସମୟ । ଦିଲ୍ଲୀ ଫକ୍‌କଡ଼ ହୋଇଗଲାଣି ; କବି ଓ କଳାକାରଙ୍କୁ ପୋଷିବ କିଏ ? ଅନେକ ଦିଲ୍ଲୀ ଛାଡ଼ି ହାଇଦ୍ରାବାଦ, ଲକ୍ଷ୍ନୌ, ରାମପୁର ଇତ୍ୟାଦି ଅନ୍ୟ ଦରବାରକୁ ପଳାଇ ଗଲେ । କିନ୍ତୁ ଉର୍ଦ୍ଦୁର ମହାନ୍ ବିଭୂତି ମାନେ, ଅର୍ଥାତ୍ ଜୌକ୍, ଗାଲିବ୍, ମୋମିନ୍, ସୌଦା, ଦର୍ଦ୍ଦ ଇତ୍ୟାଦି ଦିଲ୍ଲୀ ଛାଡ଼ି ନଥିଲେ । ଜୌକ୍‌ଙ୍କୁ ହାଇଦ୍ରାବାଦରୁ ନିମନ୍ତ୍ରଣ ଆସିଥିଲା । ତାର ଉତ୍ତରରେ ସେ କହିଥିଲେ ।

“ହୈ କଦ୍ର ସୁଖନ ଦକ୍‌ଖିନମେ ବହୁତ୍ ଲେକିନ
କୌନ ଯାଏ ଜୌକ ଦିଲ୍ଲୀ କି ଗଲିୟାଁ ଛୋଡ଼କର :

(ଅବଶ୍ୟ ଏହା ସତ୍ୟ ଯେ ଦକ୍ଷିଣ (ହାଇଦ୍ରାବାଦ)ରେ କବିତାର ଉଚ୍ଚକୋଟୀର ଗୁଣଗ୍ରାହିତା ଅଛି । କିନ୍ତୁ, ହେ ଜୌକ୍, ଦିଲ୍ଲୀର ଗଳି କିଏ ଛାଡ଼ି କରି ଯିବ ?)

ସିପାହୀ ବିଦ୍ରୋହ ଦିଲ୍ଲୀକୁ ଛାରଖାର କରିଦେଲା । ହୁଏତ ଇଂରେଜ ମାନଙ୍କର ତାହାହିଁ ଉଦ୍ଦେଶ୍ୟ ଥିଲା । ମୋଗଲ ସାମ୍ରାଜ୍ୟ ନାଁରେ ସିପାହୀ ବିଦ୍ରୋହ ହୋଇଥିଲା । ଅତଏବ ମୋଗଲ ରାଜଧାନୀ ଦିଲ୍ଲୀକୁ ହେୟ ଲାଂଛିତ କରିବା ଦ୍ୱାରା ଇଂରେଜ ଶକ୍ତିର ଗୌରବ ବଢ଼ିବ । କିନ୍ତୁ ଏହି ଦୁର୍ଦ୍ଦିନରେ ମଧ୍ୟ ଦିଲ୍ଲୀ ଏକ ପ୍ରଧାନ ସାଂସ୍କୃତିକ କେନ୍ଦ୍ର ଥିଲା । ସେ ସମୟରେ ଦିଲ୍ଲୀ ତାର ସାହିତ୍ୟିକ ପରମ୍ପରାକୁ ଭାସ୍ୱର ରଖିଥିଲା । ଗାଲିବ, ମୋମିନ ଇତ୍ୟାଦିଙ୍କ ଉତ୍ତରାଧିକାରୀ ପରମ୍ପରା ପ୍ରକାଶ ପାଇଥିଲା ଶେଫ୍ତା, ଦାଗ, ଅନବର, ନସିମ୍ ଇତ୍ୟାଦି କବିମାନଙ୍କ ଦ୍ୱାରା । ଏମାନେ ଅବଶ୍ୟ ତାଙ୍କର ପୂର୍ବସୂରୀ ଗାଲିବ ବା ମୋମିନଙ୍କ ପରି ବଳିଷ୍ଠ ନଥିଲେ । କିନ୍ତୁ ଉଲ୍ଲେଖ ଯୋଗ୍ୟ ଅବଶ୍ୟ ଥିଲେ ଏବଂ ସବୁଠାରୁ ବଡ଼କଥା, ଦିଲ୍ଲୀର ବ୍ୟକ୍ତିତ୍ୱକୁ ବଞ୍ଚାଇ ରଖିଥିଲେ ।



# ଦିଲ୍ଲୀ-୨

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଇଂରେଜ ବୁଝିପାରିଥିଲେ ଯେ ଆଉ କଲିକତାରେ ରାଜଧାନୀ ରଖିବା ଉଚିତ ନୁହେଁ । ଇଂରେଜ ସାମ୍ରାଜ୍ୟ ଉତ୍ତର ପଶ୍ଚିମ ଆଡ଼କୁ ମାଡ଼ିଯାଇଥିଲା ଏବଂ ତାଦ୍ୱାରା ରୁଷ ସାମ୍ରାଜ୍ୟର ବିସ୍ତାର ସହିତ ତାଙ୍କୁ ସମ୍ମୁଖୀନ ହେବାକୁ ପଡ଼ିଲା । ସେ ସମୟର ସମସ୍ୟା ପଞ୍ଜାବ ଆଫଗାନିସ୍ଥାନ ଇତ୍ୟାଦି । ଏଣୁ ଗୋଟିଏ କାର୍ଯ୍ୟବାହକ ରାଜଧାନୀ ସିମଲାରେ ମଧ୍ୟ ଗଢ଼ି ଉଠିଥିଲା । ଇଂରେଜମାନଙ୍କ ମଧ୍ୟରେ ଦିଲ୍ଲୀର ଗୁରୁତ୍ୱ ଉପଲବ୍ଧ ହେଲା । ଦିଲ୍ଲୀରୁ ଶାସନ ନକଲେ ସେମାନଙ୍କ ସାମ୍ରାଜ୍ୟର ବୈଧତା ଆସିବ ନାହିଁ । ଏଣୁ ସ୍ଥିର ହେଲା ଯେ ଇଂଲଣ୍ଡର ରାଜା ପଞ୍ଚମ ଜର୍ଜଙ୍କର ଭାରତର ସମ୍ରାଟ ହିସାବରେ ଦିଲ୍ଲୀରେ ଅଭିଷେକ **(CORANATION)** ହେବ । ତାଦ୍ୱାରା ଇଂରେଜ ରାଜାଙ୍କର ଭାରତ ସହିତ ବ୍ୟକ୍ତିଗତ ସମ୍ପର୍କ ସ୍ଥାପିତ ହେବ ।

୧୨ ଡ଼ିସେମ୍ବର ୧୯୧୧ରେ ଦିଲ୍ଲୀରେ ପ୍ରସିଦ୍ଧ ଦରବାର ଅନୁଷ୍ଠିତ ହେଲା । ପଞ୍ଚମ ଜର୍ଜ ଦିଲ୍ଲୀକୁ ଭାରତର ରାଜଧାନୀ ବୋଲି ଘୋଷଣା କଲେ । ପଞ୍ଚମ ଜର୍ଜ ଆଦେଶ ଦେଇଥିଲେ ଯେ ନୂତନ ରାଜଧାନୀ ଅତି ସାବଧାନତାର ସହିତ ଗଠନ କରିବାକୁ ହେବ । ପ୍ରଥମେ ସ୍ଥିର ହୋଇଥିଲା ଯେ ବର୍ତ୍ତମାନ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଞ୍ଚଳରେ ରାଜଧାନୀ କରିବାକୁ ହେବ । ସେହି ପାଖରେ ମଧ୍ୟ ଦରବାର ହୋଇଥିଲା । କିନ୍ତୁ ଦେଖାଗଲା ଯେ ଏହା ସଙ୍କୀର୍ଣ୍ଣ ଓ ବନ୍ୟାବିପଦ ମଧ୍ୟ ଅଛି । ଏଣୁ ଟାଉନ ପ୍ଲାନିଂ କମିଶନ, ଯେଉଁଥିରେ କି ଦିଲ୍ଲୀର ଭବିଷ୍ୟତର ପ୍ରଧାନ ବାସ୍ତୁକଳା ବିଶେଷଜ୍ଞ ଲୁଟେନ୍‌ସ୍ ସଭ୍ୟ ଥିଲେ, ଏହି ଉତ୍ତର ଦିଲ୍ଲୀକୁ ନାକଚ କରିଦେଲା । ତା ଜାଗାରେ ରାଏସିନାର ପଥୁରିଆ ଅଞ୍ଚଳ ବଛାଗଲା । ଲୁଟେନ୍‌ସଙ୍କ ପକ୍ଷରେ ଏପରି ଅବସର ଆଉ ମିଳିପାରି ନଥାନ୍ତା ତାଙ୍କୁ । ଆଉ ଗୋଟିଏ ରୋମ ଗଢ଼ିବାକୁ ଆଦେଶ ଦିଆଗଲା । ଜୀବନରେ ଏପରି ସୁଯୋଗ ଖୁବ୍ କମ୍ କଳାକାରଙ୍କ ଭାଗ୍ୟରେ ମିଳେ । ଲୁଟେନ୍‌ସଙ୍କ ସହଯୋଗୀ ହେଲେ ସାର୍ ହରବର୍ଟ ବେକର । ଏମାନଙ୍କର ସାହାଯ୍ୟକାରୀ ଥିଲେ ପ୍ରଧାନ ଠିକାଦାର ଶୋଭାସିଂହ, ଧରମ ସିଂହ, ବିଶାଖାସିଂହ, ସେଠହାରୁନ୍, ନବାବ ଅଲି ଓ ଆହୁରି ଅନେକ ।

ବର୍ତ୍ତମାନର ରାଷ୍ଟ୍ରପତି ଭବନ ତିଆରି କରିଥିଲେ ସେଠ ହାରୁନ୍ ଓ ପାର୍ଲାମେଣ୍ଟ ଭବନକୁ ଲଛମନ ଦାସ । ନବାବ ଅଲ୍ଲି ରାଷ୍ଟ୍ରପତି ଭବନର ମୋଗଲ ଗାର୍ଡ଼େନ ଲଗାଇଥିଲେ । କିନ୍ତୁ ସବୁଠାରୁ ବଡ଼ ଠିକାଦାର ଥିଲେ ସୁଜାନ ସିଂହ ଓ ତାଙ୍କ ପୁଅ ଶୋଭାସିଂହ । ସେମାନେ ସେ ସମୟରେ ନୂଆଦିଲ୍ଲୀରେ ବହୁତ ଜାଗା କିଣିପକାଇଲେ । ତାଙ୍କର ନାଆଁରେ ସୁଜାନସିଂହ ପାର୍କ । ନୂଆଦିଲ୍ଲୀର ସମସ୍ତ ସୌଧ ୧୯୩୧ ବେଳକୁ ତିଆରି ସରିଥିଲା । ସମୟ ଲାଗିଥିଲା ପାଖାପାଖି ୨୦ବର୍ଷ ଏବଂ ପ୍ରାୟ ଦେଢ଼ କୋଟି ପାଉଣ୍ଡ ଖର୍ଚ୍ଚ ହୋଇଥିଲା । ସେତେବେଳେ ଟଙ୍କା ଏତେ ଶସ୍ତା ନଥିଲା । ବଡ଼ଲାଟ ଲର୍ଡ ହାର୍ଡିଂଜ ଖର୍ଚ୍ଚ କାଟ କରିବାର ଚେଷ୍ଟା କଲେ । ଏଣୁ ଲୁଟ୍ୟେନ୍‌ସ ବଡ଼ ଅଫସୋସ କରି କହିଥିଲେ, "ବଡ଼ଲାଟ ଭାବୁଛନ୍ତି ତିନିବର୍ଷ ପରେ ଏ ଜାଗା କିପରି ଦେଖାଯିବ । ଆଉ ମୁଁ ଭାବୁଛି ତିନିଶହ ବର୍ଷ ପରେ ଏହାର ରୂପ କଣ ହେବ ।"

ଅନେକ ଲୁଟ୍ୟେନ୍‌ସଙ୍କୁ ସମାଲୋଚନା ମଧ୍ୟ କରିଛନ୍ତି । ଭାରତବର୍ଷରେ ତାର ନିଜସ୍ୱ ବାସ୍ତୁକଳାର ଐତିହ୍ୟ ଥାଉ ଥାଉ ଗ୍ରୀସ, ରୋମାନ ପଦ୍ଧତିର ସ୍ଥାପନାର କିଛି ଅର୍ଥ ହୁଏ ନାହିଁ । ଲୁଟ୍ୟେନ୍‌ସ ତାଙ୍କ ସମସ୍ତ ଚେଷ୍ଟା ସତ୍ତ୍ୱେ ମଧ୍ୟ ଶାହଜାହାନଙ୍କ ସ୍ଥାପତ୍ୟ ଠାରୁ ଅନେକ ପଛରେ । ଏଥିରେ ଯେ ଗୌରବମଣ୍ଡିତ ବିଜେତାର ପ୍ରଚ୍ଛନ୍ନ ଔଦ୍ଧତ୍ୟ ରହିଛି ତା ସ୍ୱୀକାର କରିବାକୁ ହେବ । କିନ୍ତୁ ଲୁଟ୍ୟେନ୍‌ସଙ୍କ ସ୍ଥାପତ୍ୟରେ ମଧ୍ୟ ଏକ ବିଶେଷତା ଅଛି । ସେ ଶୂନ୍ୟସ୍ଥାନ (space) କୁ ମଧ୍ୟ ସ୍ଥାପତ୍ୟର ଏକ ମାଧ୍ୟମ ରୂପେ ବ୍ୟବହାର କରିଛନ୍ତି । ଏବଂ ଏଥିରେ ଅତ୍ୟନ୍ତ ଦୃଷ୍ଟିମଧୁର ସାଫଲ୍ୟ ଲାଭ କରି ଅଛନ୍ତି । ତାଙ୍କର ପ୍ରଧାନ କୃତି ହେଲା ରାଜପଥ । ପୁରୁଣା କିଲ୍ଲା ବା ପ୍ରାଚୀନ ଇନ୍ଦ୍ରପ୍ରସ୍ଥଠାରୁ ଆରମ୍ଭ କରି ଏହା ଧୀରେ ଧୀରେ ରାଷ୍ଟ୍ରପତି ଭବନକୁ ଉଠି ଆସିଛି । ପ୍ରତ୍ୟେକ ସୌଧ, ଜଳାଶୟ, ରାସ୍ତା, ଗଛ ସବୁ ଏକ ଜୀବନ୍ତ ସମଷ୍ଟି । କ୍ଷମତାର ପ୍ରତୀକ ହେଲା ବଡ଼ଲାଟଙ୍କ ନିବାସ ଓ ତାର ଦୁଇପଟେ ସେକ୍ରେଟେରିଅଟର ଦୁଇଟି ଦୁର୍ଗସମ ସୌଧ, ନର୍ଥବ୍ଲକ ଓ ସାଉଥ ବ୍ଲକ । ସତେ ଯେପରି ସିଂହ ଦରଜାର ଦୁଇଟି ଅତିକାୟ ସିଂହ ।

ରାଷ୍ଟ୍ରପତି ଭବନରୁ ରାଜପଥ ଆସି ଶେଷ ହୁଏ ଇଣ୍ଡିଆଗେଟ ପାଖ ଷଟ୍‌କୋଣ ବଗିଚାରେ । ତାର ମଝିରେ ଇଣ୍ଡିଆ ଗେଟ । ତା ଉପରେ ଖୋଲା ହୋଇଛି ଯୁଦ୍ଧରେ ପ୍ରାଣ ଦେଇଥିବା ସୈନିକ ମାନଙ୍କ ନାମ । ଆଜିକାଲି ସେଠି ଅମର ଜବାନଜ୍ୟୋତି ପ୍ରଜ୍ୱଳିତ । ଏଠି ପ୍ରତ୍ୟେକ ସୌଧ ସ୍ଥାପତ୍ୟ ନୁହେଁ, ସ୍ୱପ୍ନର ନିଦର୍ଶନ । ସନ୍ଧ୍ୟା ସମୟରେ ଆକାଶରେ ଆଲୋକର ପରିବର୍ତ୍ତନ ସଙ୍ଗେ ସଙ୍ଗେ ରାଜପଥରେ ମଧ୍ୟ ଏକ କାଉଁରିକାଠି ବାଜିଯାଏ । ମନେହୁଏ ଏହାର ପ୍ରାଣ ଅଛି । ଲୁଟ୍ୟେନ୍‌ସ ନିଶ୍ଚୟ ଜାମା

ମସଜିଦ୍ ସଙ୍ଗେ ସମକକ୍ଷ ହେଲାଭଳି କୌଣସି ସୌଧ ତିଆରି କରି ନାହାନ୍ତି । କିନ୍ତୁ ଏକଥା ସତ ଯେ ମୋଗଲ ମାନେ ରାଜପଥ ପରି କୌଣସି ସ୍ଥାନ ସୃଷ୍ଟି କରି ନାହାନ୍ତି ।

ହୁଏତ ଲୁଟସ୍ୱେନ୍ସ ମଧ୍ୟ ଭାରତକୁ ଭଲ ପାଉଥିଲେ । ଯଦିଚ ତାହା ବ୍ରିଟିଶ୍ ଶାସିତ ତଥାପି ତା ଭାରତ । ରାଷ୍ଟ୍ରପତି ଭବନର ଏକ ସ୍ତମ୍ଭ (ଜୟପୁର କଲମରେ) ଗୋଟିଏ ଲେଖା ଖୋଦିତ ଅଛି ଯାହାର ଓଡ଼ିଆ ଅନୁବାଦ ଏହି ପ୍ରକାର ହେବ :

ତୁମ ଚିନ୍ତାରେ ଭରିଦିଅ ବିଶ୍ୱାସ
ତୁମ କର୍ମରେ ସାହସ
ତୁମ ଜୀବନରେ ବଳିଦାନ ।

ଆଜି ଶାହଜାହାନଙ୍କର ଦିଲ୍ଲୀ ନାହିଁ । ଲୁଟସ୍ୱେନ୍ସଙ୍କ ନୂଆଦିଲ୍ଲୀ ମଧ୍ୟ ଜନଗହଳରେ ଲୁପ୍ତପ୍ରାୟ । ଅଠକାୟ ଏବଂ ଅତିଅସୁନ୍ଦର ବହୁମହଲା କୋଠା ବର୍ଷାଦିନର ଛତୁପରି ଚାରିଆଡ଼େ ଫୁଟି ଉଠୁଛି । ଅସୁନ୍ଦରର ଦିଗ୍ୱିଜୟ । ସହର ତଳି ବସ୍ତିର କୁତ୍ସିତତାର ଉପାୟ ଅଛି । କିନ୍ତୁ ବୋଡ଼ିଏ ଡାଲା ଏହି ଆସୁରିକ ଡ଼ିଆସିଲି ତହାର ଔଷଧ କଣ ? ହେ ବିଶ୍ୱକର୍ମା । ତୁମେ ହିଁ ଉପାୟ ଦେଖାଅ ।

ଦିଲ୍ଲୀ ଧୀରେ ଧୀରେ ଯମୁନା କୂଳେ କୂଳେ ଦକ୍ଷିଣରୁ ଉତ୍ତର ଆଡ଼କୁ ଗତି କରୁଥିଲି । ଲାଲାକୋଟ, କିଲାରାୟ ପିଥୋରା, ଜହାଁପନାହ, ସିରି, ତୁଗଲକାବାଦ, ଦୀନପନାହ, ଫିରୋଜାବାଦ ଓ ଶାହଜାହାନାବାଦ ଏବଂ ଶେଷରେ ଇଂରେଜଙ୍କ ନୂଆଦିଲ୍ଲୀ । କିନ୍ତୁ ବର୍ତ୍ତମାନର ଦିଲ୍ଲୀ ଏସବୁ ଗ୍ରାସକରି ଆଖପାଖର ସମସ୍ତ ଗ୍ରାମାଞ୍ଚଳ ମଧ୍ୟ ନିଜ ପେଟରେ ପୂରେଇ ସାରିଲାଣି । ଦିଲ୍ଲୀ ଆଉ ଦିଲ୍ଲୀ ହୋଇ ନାହିଁ । ସତରେ କଣ ଜନକପୁରୀର ନିବାସୀ କହି ପାରିବ ଯେ ସେ ଦିଲ୍ଲୀ ବାସିନ୍ଦା ? ତାର ଆଉ ଦିଲ୍ଲୀ ସହିତ ନାଡ଼ିର ସମ୍ପର୍କ ନାହିଁ । ବର୍ତ୍ତମାନ ଦିଲ୍ଲୀ ଏକ ନଗର ନୁହେଁ । ଏହା ଏକ ନଗର ସମଷ୍ଟି । ଏ ପ୍ରକାର ନାଗରିକ ବ୍ୟକ୍ତିତ୍ୱର ବିକାଶ ଏ ପର୍ଯ୍ୟନ୍ତ ଦିଲ୍ଲୀରେ ହୋଇନାହିଁ । ଲୋକେ ଆଉ ବୁଲିବାକୁ ଇଣ୍ଡିଆ ଗେଟ ଆସୁ ନାହାନ୍ତି । କାରଣ ବହୁତ ଦୂର । ଦିଲ୍ଲୀର ପ୍ରାଚୀନ କୀର୍ତ୍ତି ସାଙ୍ଗରେ ତାଙ୍କର ଯେତିକି ପରିଚୟ ସେତିକି ଭାରତର ଅନ୍ୟଯାଗାର ପର୍ଯ୍ୟଟକ ମାନଙ୍କର । କୁତବମିନାର ବା ଲାଲକିଲ୍ଲାକୁ ସେମାନେ ନିଜର ବୋଲି ଭାବି ଶିଖିନାହାନ୍ତି । କେବଳ ଆଶା କରାଯାଇ ପାରେ ଯେ ଭବିଷ୍ୟତରେ ତାଙ୍କ ପିଲାମାନେ ତାହା ଅନୁଭବ କରିବେ ।

ଦିଲ୍ଲୀକୁ ଚିରକାଳ ବାହାରୁ ଲୋକ ଆସୁଥିଲେ ଏବଂ ଅନେକ ରହି ଯାଉଥିଲେ । ସେମାନେ ନିଜର ଏକ ଏକ ସାହି ମଧ୍ୟ ଗଢି ନେଉଥିଲେ । ମୋଗଲ

କାଲର ନାମ ଦେଇଛନ୍ତି । ଆରବ କି ସରାଇ, ମୁଲତାନ ଢାଂଢା ଇତ୍ୟାଦି । ବର୍ତ୍ତମାନ ମଧ୍ୟ ଏହାର ଲକ୍ଷଣ ଦେଖାଯାଏ । ଯେପରି ଚିତ୍ତରଞ୍ଜନ ପାର୍କ ବଙ୍ଗାଳୀ, ପଂପୋଶ କାଶ୍ମୀରୀ । ଦିଲ୍ଲୀରେ ବହୁ ଦକ୍ଷିଣ ଭାରତୀୟ ବିଶେଷକରି ତାମିଲ ଓ ମାଲୟାଲି ସ୍ଥାୟୀ ବାସିନ୍ଦା ହୋଇ ଗଲେଣି । ସେମାନଙ୍କ ସଂଖ୍ୟା ଏତେ ବେଶି ଯେ ବର୍ତ୍ତମାନ ସେମାନଙ୍କର ସମ୍ପର୍କ ତାମିଲନାଡୁ ସହିତ କମି ଯାଉଛି ଏବଂ ସେମାନେ ନିଜ ନିଜ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପନ କରୁଛନ୍ତି । ସେମାନେ ନିଜର ସାଂସ୍କୃତିକ ସମ୍ପଦ ବିଷୟରେ ଅତିରିକ୍ତ ସଚେତନ । ଦକ୍ଷିଣ ଦିଲ୍ଲୀରେ ନାନା ସ୍ଥାନରେ ଗୋପୁରମ୍ ସଂଯୁକ୍ତ ମନ୍ଦିର । କର୍ଣ୍ଣାଟକ ପଦ୍ଧତିର ସଙ୍ଗୀତ ଚର୍ଚ୍ଚା ଯଥେଷ୍ଟ ଏବଂ ଏଥିଲାଗି ଉତ୍ତମ ପ୍ରତିଷ୍ଠାନମାନ ଅଛି । ଅଥଚ ଦିଲ୍ଲୀର ତାମିଲମାନେ ମଧ୍ୟ ଦିଲ୍ଲୀର ସଂସ୍କୃତି ସହିତ କେତେକଟା ଜଡ଼ିତ । ସେମାନେ ବିଶେଷ କରି ଟୋକାମାନେ ପଂଜାବୀ ମିଶ୍ରିତ ହିନ୍ଦି କହନ୍ତି । ଦିଲ୍ଲୀର ତାମିଲ ମାନେ ତାମିଲନାଡୁ ଫେରିବାକୁ ନାରାଜ । ବର୍ତ୍ତମାନ ଏଠି ଏକ ମିଶ୍ରିତ ସଂସ୍କୃତିର ଗଠନ ହେଉଛି । ହୁଏତ ଭବିଷ୍ୟତରେ ଦିଲ୍ଲୀର ତାମିଲ ସଂସ୍କୃତି ଏକ ବିଶିଷ୍ଟ ଓ ନିଜସ୍ୱ ରୂପ ଧାରଣ କରିବ । ଅନ୍ୟାନ୍ୟ ପ୍ରାଦେଶିକ ସଂସ୍କୃତିର ଏଭଳି ବିକାଶର ସମ୍ଭାବନା ବିଶେଷ ନାହିଁ । କେବଳ ପଂଜାବୀଙ୍କୁ ବାଦ ଦେଲେ ଅନ୍ୟ ଅଣହିନ୍ଦିଭାଷୀ ଲୋକଙ୍କ ସଂଖ୍ୟା ବିଶେଷ ନୁହେଁ । ପଂଜାବୀଙ୍କ ସମସ୍ୟା ହେଲା ଯେ ପଞ୍ଜାବ ଅତି ପାଖରେ ଏଣୁ ଦିଲ୍ଲୀରେ ଏକ ସ୍ୱତନ୍ତ୍ର ପଂଜାବୀ ସଂସ୍କୃତି ଗଢି ଉଠି ପାରୁନାହିଁ । ଅଥଚ ପଂଜାବୀ ଭାଷା କେତେକ ପରିମାଣରେ ହିନ୍ଦିକୁ ପ୍ରଭାବିତ କରୁଛି । କିନ୍ତୁ ମୋ ମତରେ ଦିଲ୍ଲୀର ପଞ୍ଜାବୀ ମାନଙ୍କର ମଧ୍ୟ ଭବିଷ୍ୟତରେ ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ସତ୍ତା ନିଶ୍ଚୟ ବିକଶିତ ହେବ । ସେଥିଲାଗି ଆଉ କିଛି ସମୟ ଲାଗିବ । ପଂଜାବୀ ସାମୂହିକ ମନଉପରେ ଦେଶ ବିଭାଜନ ଓ ତାର ଆନୁଷଙ୍ଗିକ ଅ-ସୁରକ୍ଷାର ଭାବନା ଏପର୍ଯ୍ୟନ୍ତ ବଳୀୟାନ । ଯେତେବେଳେ ତାହା ଭୁଲିଯିବ, ପଂଜାବୀ ସମାଜ ଯାହାକି ଏ ପର୍ଯ୍ୟନ୍ତ ଆର୍ଥିକ ସ୍ଥିରତା ଉପରେ ବଳ ଦେଉଥିଲା, ତାର ସାଂସ୍କୃତିକ ସତ୍ତା ଅବଶ୍ୟ ପ୍ରକାଶ କରିବ ଏବଂ ତାହା ଅନେକାଂଶରେ ପଂଜାବର ସାଂସ୍କୃତିକ ପ୍ରକାଶ ଠାରୁ ଭିନ୍ନ ହେବ । କାରଣ ପଂଜାବର ପଂଜାବୀ ସଂସ୍କୃତି ଗ୍ରାମ ଓ ଛୋଟ ସହରକୁ ଭିତ୍ତିକରି ଗଢିଉଠିଛି ଏବଂ ଦିଲ୍ଲୀର ପଂଜାବୀ ସଂସ୍କୃତି ହେବ ମହାନଗରର ।



# ମୋଗଲ ସାମ୍ରାଜ୍ୟର ଅସ୍ତରାଗ-୧

ସୂର୍ଯ୍ୟାସ୍ତର ଯେ ବିଶେଷ ଏକ ସୌନ୍ଦର୍ଯ୍ୟ ଅଛି ତା ସମସ୍ତଙ୍କୁ ସ୍ୱୀକାର କରିବାକୁ ହେବ । ଏହା ଦିବସର ମୃତ୍ୟୁ ଓ ରାତ୍ରିର ଜନ୍ମ । ସେହିପରି ସୂର୍ଯ୍ୟୋଦୟ ରାତ୍ରିର ମୃତ୍ୟୁ ଓ ଦିବସର ଜନ୍ମ । ଏଥିଲାଗି ସଂସ୍କୃତରେ ସନ୍ଧ୍ୟା ସମୟଟା ଉଭୟ ଲାଗି ପ୍ରଯୁଜ୍ୟ । ଏହା ଏକ ପରିବର୍ତ୍ତନର ସମୟ । ପ୍ରାକୃତିକ ସନ୍ଧ୍ୟା ବିଷୟରେ ତ ସମସ୍ତେ ଜାଣନ୍ତି । କିନ୍ତୁ ରାଜନୈତିକ ଓ ସାମାଜିକ ସନ୍ଧ୍ୟା ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଓ କୌତୁହଳ ଉଦ୍ଦୀପକ । ଆସନ୍ତୁ, ମୋଗଲ ସାମ୍ରାଜ୍ୟର ସନ୍ଧ୍ୟା ଉପରେ ଦୃଷ୍ଟିପାତ କରାଯାଉ । ମୋଗଲ ସାମ୍ରାଜ୍ୟ ପକ୍ଷାଘାତଗ୍ରସ୍ତ ବୃଦ୍ଧ । ଯୁବକ ଶକ୍ତି ହରି, ଯଥା— ମରାଠା, ରୋହିଲା, ଇଂରେଜ ଇତ୍ୟାଦି ଅପେକ୍ଷା କରି ବସିଛନ୍ତି, ବୁଢା କେବେ ମରିବ । ଯଦିବ ବୁଢ଼ା ପଙ୍ଗୁ ଓ ଅକ୍ଷମ ତଥାପି ବୁଢ଼ାର ଆଗରୁ ଏପରି ନାମ ଡାକ ରହି ଯାଇଛି ଯେ ସେ ଥାଉଁ ଥାଉଁ ତା ସମ୍ପତ୍ତି ଉପରେ ହାତ ଦେବା ଅସମ୍ଭବ । ପାରସ୍ୟର ନାଦିରଶାହ ଆକ୍ରମଣ କରି ଦିଲ୍ଲୀରୁ ମୟୂର ସିଂହାସନ ଓ ଅଗଣିତ ମୂଲ୍ୟବାନ ବସ୍ତୁ ଏବଂ ଧନ ରତ୍ନ ଲୁଟି କରି ଚାଲି ଗଲାଣି । କିନ୍ତୁ ନାଦିରଶାହର ଆକ୍ରମଣ ଖଣ୍ଡି ଆଭୂତ ଭଳି ଆସିଲା ଓ ଗଲା । ଦିଲ୍ଲୀ ଓ ଭାରତବର୍ଷକୁ ନେଇ ଯେଉଁମାନେ ଖେଳୁଆଡ଼ ହୋଇଥିଲେ ସେମାନେ କିଛି ଶିଖିଲେ ନାହିଁ । ଅବସ୍ଥା ଯଥାପୂର୍ବଂ ତଥା ପରଂ ।

ସମୟ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଓ ତା ପାଖାପାଖି । ଏ ସମୟରେ ରାଜନୈତିକ ଅବସ୍ଥା କିପରି ଥିଲା ସେ ବିଷୟରେ ଅନେକ କାଗଜପତ୍ର ମିଳେ ଓ ତାହା ମନୁଷ୍ୟର ନୀଚତାର ଏକ ସୁଦୀର୍ଘ ତାଲିକା । ଦଗାବାଜୀ, କୃତଘ୍ନତା, କ୍ଷୁଦ୍ରସ୍ୱାର୍ଥସର୍ବସ୍ୱତା ଇତ୍ୟାଦିର ଏକ କ୍ଲାନ୍ତିକର ଖତିଆନ । ତେବେ ଏ କ୍ଷମତାଶାଳୀ ଜୁଆଡ଼ିଙ୍କୁ ବାଦ ଦେଲେ ସାଧାରଣ ଲୋକେ ତ ଫେର୍ ଚଳୁଥିବେ । ତାଙ୍କ ଜୀବନଯାତ୍ରା କିପରି ଥିଲା ? ତାଙ୍କର ସୁଖ ଦୁଃଖର ଖବର କଣ ? ଏ ବିଷୟରେ ସଲାରଜଂଗ୍ ଏକ ଡାଇରି ଲେଖିଥିଲେ । ତାର ନାମ ମୁରକ୍କା-ଇ-ଦିଲ୍ଲୀ । ଏଥିରୁ ଜନସାଧାରଣଙ୍କ ଦୈନନ୍ଦିନ ଜୀବନଯାତ୍ରାର ଏକ ସୁନ୍ଦର ଚିତ୍ର ମିଳେ । ଯେତେଦୂର ଜଣାପଡ଼େ, ଏହି ରାଜନୈତିକ ମଲ୍ଲଯୁଦ୍ଧ ଜନତାର ଜୀବନ ଉପରେ ସେପରି ବେଶି ପ୍ରଭାବ ପକାଇ ପାରି ନଥିଲା ।

ତେବେ ସୁରକ୍ଷାର ଅଭାବ ବ୍ୟାପକ ଭାବେ ଅନୁଭୂତ ହେଉଥିଲା । କାଲି କଣ ହେବ ତା ଅନିଶ୍ଚିତ । ଏଣୁ ଖାଅ, ପିଅ, ମୌଜ କର । କାଲିକ କଏ ଥିବ କଏ ନଥିବ କହିବା ମୁସ୍କିଲ । ନୈତିକତାର ସମସ୍ତ ମାନ ଲୁପ୍ତ ହୋଇଥିଲା । ମୁଲ୍ଲା ମସ୍‌ଜିଦରେ ବକ୍ତୃତା ଦେଉଥିଲା । ଲୋକେ ମଧ୍ୟ ତାକୁ ଶୁଣୁଥିଲେ । କିନ୍ତୁ ଜନମାନସ ଉପରେ ତାହା କୌଣସି ପ୍ରଭାବ ପକାଇ ପାରୁ ନଥିଲା । ଧର୍ମ ହୋଇ ଯାଇଥିଲା ବାହ୍ୟ ଆଚରଣ ସର୍ବସ୍ୱ । ଦିଲ୍ଲୀ ଓ ତା ଆଖପାଖରେ ବହୁତ ଦରଘା ଅର୍ଥାତ ପୀର ବା ମୁସଲମାନ ସନ୍ଥଙ୍କ କବର । ଦରଘାକୁ ଯିଆସେତ୍ତେ ବା ତୀର୍ଥ କରିବାକୁ ଯିବା ଅତ୍ୟନ୍ତ ଜନପ୍ରିୟ ହୋଇ ଯାଇଥିଲା । ଯଥା ରବିବାର ଶେଖ୍ ନସିରୁଦ୍ଦିନ ଚରାଗଦିଲ୍ଲୀଙ୍କ ଦିନ । ସେଦିନ ତାଙ୍କ ଦରଘାକୁ ଯିବା କଥା । ସେହିପରି ବୁଧବାର ହଜରତ ନିଜାମୁଦ୍ଦିନଙ୍କର, ଗୁରୁବାର କୁତବମୀନାର ପାଖରେ ମେହରୌଲିରେ ହଜରତ କୁତୁବୁଦ୍ଦିନଙ୍କ ଲାଗି ନିର୍ଦ୍ଦିଷ୍ଟ । ଏହି ଦିନ ମାନଙ୍କରେ ଦରଘାରେ ବହୁତ ଲୋକ ହେଉଥିଲେ । ତା ସାଙ୍ଗେ ସାଙ୍ଗେ ବହୁତ କଣାବିକା ହେଉଥିଲା । ତା ଛଡ଼ା ଏ ସବୁ ସ୍ଥାନରେ ପ୍ରେମିକ ପ୍ରେମିକାଙ୍କ ଦେଖା ହେବାର ବହୁତ ସୁବିଧା । ପ୍ରଥମେ ତ ଧର୍ମ ସ୍ଥାନ । ଏଣୁ ସନ୍ଦେହର ଅବକାଶ କମ । ପୁଣି ଗୁପ୍ତ ପ୍ରେମ ହେଉ ବା ଗୁପ୍ତଚର ବୃତ୍ତି ହେଉ ମିଳନ ସ୍ଥଳ ବା ଇଂରେଜୀରେ ଯାହାକୁ କହନ୍ତି Rendezvous, ତାହା ଏକଦମ୍ ନିର୍ଜନ ସ୍ଥାନରେ ହେବ ନାହିଁ, ଅତ୍ୟନ୍ତ ଚହଳ ଯାଗାରେ ।

ପର୍ବ ପର୍ବାଣୀ ଖୁବ୍ ଧୁମଧାମରେ ହେଉଥିଲା । ଇଦୁଲ ଫିତର, ଇଦୁଜ୍ଜୋହା ବା ବକ୍‌ରିଦ୍, ମହରମ, ହୋଲି, ଦୀପାବଳୀ ଓ ଦଶହରା ଖୁବ୍ ଜାକଜମକରେ ହେଉଥିଲା । କିନ୍ତୁ ହିନ୍ଦୁ ମୁସଲମାନ ଉଭୟ ଏକ ପର୍ବ ପାଳନ କରୁଥିଲେ । ତାର ନାମ ବସନ୍ତ । ଏହା ବସନ୍ତପଞ୍ଚମୀରୁ ଆରମ୍ଭ ହୋଇ ସପ୍ତାହେ ଚାଲୁଥିଲା । ସପ୍ତାହଟା ଯାକ ନାଚ ଗାନା ଓ କଓ୍ୱାଲି । ଶେଷ ଦିନ ଏକ କାଳ୍‌ପନିକ ପୀରଙ୍କ କବରରେ ମହୋତ୍ସବ ହେଉଥିଲା । ଉତ୍ସବ ଆରମ୍ଭ ହେଉଥିଲା ପୀରଙ୍କ କବରକୁ ମଦରେ ଧୋଇ । ଭକ୍ତଗଣ ଅବଶ୍ୟ ପାଦୁକ ପାଉଥିବେ । ବୋଧହୁଏ ଏହା ଜନସାଧାରଣଙ୍କର ଏକ ସ୍ୱତଃସ୍ଫୂର୍ତ୍ତି କାର୍ଯ୍ୟକ୍ରମ । ଦୁଃଖଦ ବାସ୍ତବିକତାକୁ ଭୁଲି ଯିବାର ଏକ ସାମୁହିକ ପ୍ରୟାସ । ଏହି ପର୍ବ ଲାଗି କୌଣସି ପରିଚାଳନା ସମିତି ନ ଥିଲା । କିନ୍ତୁ ମୋଟାମୋଟି ଏକ ବୁଝାମଣା ଥିଲା ଓ ସବୁ ସୁରୁଖୁରୁରେ ହୋଇ ଯାଉଥିଲା ।

ସେ ସମୟର ବଡ଼ ଓ ସୌଖୀନ ବଜାର ଥିଲା ଚାନ୍ଦନିଚୌକ ଓ ଚୌକ ସାଦୁଲ୍ଲା ଖାଁ । ଚୌକ ସାଦୁଲ୍ଲା ଖାଁ ଆଉ ନାହିଁ । ଏଠି ଅତ୍ୟନ୍ତ ଭିଡ଼ ହେଉଥିଲା । ରାସ୍ତା କଡ଼େ କଡ଼େ କେତେ ଅଦ୍ଭୁତ ଦୃଶ୍ୟ । ଗୋଟିଏ ଯାଗାରେ ବାଇ ନାଚ ହେଉଛି । ପ୍ରଚୁର ଦେଖଣାହାରୀ । ତା ପାଖରେ ଜଣେ ମୌଲବୀ ସାହେବ ଏହି ନାଚ ଦେଖାଲୀ

ପାପିଷ୍ଠଗଣଙ୍କର ଶେଷ ବର୍ଷରର ଦିନ ଭାଗ୍ୟରେ କଣ ଅଛି ତା ବିଷୟରେ ଏକ ଓଜସ୍ୱିନୀ ବକ୍ତୃତା ଝାଡ଼ୁଛନ୍ତି । ଦେଖଣାହାରୀ ତାଙ୍କ ମଧ୍ୟ ଦି ଗୁର ପଇସା ପକାଇ ଦେଇ ଯାଉଛନ୍ତି । ତା ପାଖରେ ଜ୍ୟୋତିଷ ହାତ ଦେଖୁଛନ୍ତି । ନିକଟରେ ଦବେଇବାଲା । ଭିନ୍ନ ଭିନ୍ନ ରୋଗର ଲକ୍ଷଣ ସମ୍ପର୍କରେ ଏପରି ବର୍ଣ୍ଣନା ଦେଉଛି ଯେ ରୁମ ଟାଙ୍କୁରି ଉଠିବ ଏବଂ ସେଥିଲାଗି ସେ କିପରି ହିମାଳୟରେ ନିଜର ଜୀବନ ବିପନ୍ନ କରି ମାଙ୍କଡ଼ ଓ ଭାଲୁମାନଙ୍କ ଠାରୁ ନାନା ଚେରମୂଳୀ ସଂଗ୍ରହ କରିଛି ଏବଂ ତା ସବୁ ପ୍ରାୟ ବିନା ମୂଲ୍ୟରେ ବିକ୍ରୀ କରୁଛି ତା'ର ବିଶଦ ବିବରଣ, ତା'ର ଦବେଇ ଧାତନ ଶକ୍ତି ଓ ଆଉ ଏକ ଶକ୍ତି ବିଷୟରେ ଯାହା ସହଜେ ଅନୁମେୟ । ଯତ୍ରତତ୍ର ମଦ ଦୋକାନ । ସେ ସମୟରେ ଦିଲ୍ଲୀର ଦୁଇଟା ବଡ଼ ମୋହଲ୍ଲା ବା ଅଂଶ କସାଲପୁର ଓ ନାଗଲ ଗଣିକାଳୟରେ ପୂର୍ଣ୍ଣ । ସେ ସମୟରେ କେତେକ ଗଣିକା ରାଜା ଉଜିରଙ୍କ ପରି ପ୍ରସିଦ୍ଧି ଲାଭ କରିଥିଲେ ଏବଂ ହାତୀରେ ଯିବା ଆସିବା କରୁଥିଲେ । ଏମାନେ କେବଳ ସମାଜର ଉଚ୍ଚ ସ୍ତର ସହିତ ସମ୍ପର୍କ ରଖୁଥିଲେ ଏବଂ କଳାକାର ଓ ସଙ୍ଗୀତଜ୍ଞ ହିସାବରେ ନାମ କରିଥିଲେ ।

ମୋଟାମୋଟି ଦିଲ୍ଲୀ ସେ ସମୟରେ ପଞ୍ଚମକାର ଉପାସନାରେ ମତ୍ତ । ଭବିଷ୍ୟତ ବିଷୟରେ କାହାର କିଛି ଚିନ୍ତା ନ ଥିଲା କାରଣ ଭବିଷ୍ୟତ ଯେ ଅନ୍ଧକାରମୟ ସେ ବିଷୟରେ କାହାର କିଛି ସନ୍ଦେହ ନଥିଲା । କିନ୍ତୁ ସେ ସମୟରେ ଏପରି ଏକ କ୍ଷୁଦ୍ର ବୀଜ ବପନ କରାଗଲା ଯାହାର ଫଳ ସୁଦୂର ପ୍ରସାରିତ । ମୋଗଲ ଦରବାର ଦୁଇ ଭାଗରେ ବିଭକ୍ତ ହୋଇଗଲା । ଇରାନୀ ତୁରାନୀ ଓ ଅନ୍ୟ ବିଦେଶାଗତ ଅମୀର ଉମରା ଭାରତୀୟମାନଙ୍କୁ ଶ୍ରେଷ୍ଠ ଲୋକ ବୋଲି ଭାବୁଥିଲେ । ଫଳରେ ଏକ ସ୍ୱଦେଶୀ ପାର୍ଟି ଗଢି ଉଠିଲା । ରାଜପୁତମାନଙ୍କ କଥା ସ୍ୱତନ୍ତ୍ର । ସେମାନେ ମୋଗଲ ଦରବାରରେ ଥିଲେ ମଧ୍ୟ ତାଙ୍କର ହୃଦୟରେ ନିଜ ଦେଶ ରାଜପୁତନା ସହିତ ଯୋଗସୂତ୍ର ଥିଲା । ଏବଂ ସେମାନେ ସମ୍ରାଟଙ୍କ ଦୟା ଉପରେ ଏତେ ନିର୍ଭରଶୀଳ ନଥିଲେ । କିନ୍ତୁ ହିନ୍ଦୁସ୍ତାନୀ ମୁସଲମାନଙ୍କର ସ୍ଥାନ ଉଚ୍ଚ ନଥିଲା । ଏହାଙ୍କର ନେତୃତ୍ୱ ନେଲେ ସୈୟଦ ଭ୍ରାତା ।

ଏ ଦୁଇ ଜଣ ହିନ୍ଦୁସ୍ତାନୀ ଅବଦୁଲ୍ଲା ଖାଁ ଓ ହୋସେନ ଅଲି ଲିଟରୀ କଥିତଗଲେ । ଏମାନଙ୍କ ଯୋଗ୍ୟତା ବିଷୟରେ କୌଣସି ସନ୍ଦେହ ନଥିଲା । କିନ୍ତୁ ଆଉରଂଜେବଙ୍କ ପରେ ଏମାନଙ୍କ ଦୁର୍ଦ୍ଦିନ ଆସି ଯାଇଥିଲା । ଏମାନେ ଫରୁକସିୟାରଙ୍କୁ ସମର୍ଥନ କଲେ ଓ ୧୭୧୩ ଖ୍ରୀଷ୍ଟାବ୍ଦରେ ଜହାନଦାର ଶାହଙ୍କୁ ବିତାଡ଼ିତ କରି ଫରୁକସିୟାରଙ୍କୁ ସିଂହାସନରେ ବସାଇଲେ । କିନ୍ତୁ ବିଦେଶୀ ପାର୍ଟି ସୈୟଦ ଭ୍ରାତାମାନଙ୍କୁ ସହି ପାରୁ ନଥିଲେ । ସୈୟଦ ଭାତୃଦ୍ୱୟ ଭାରତୀୟ ହେବାରେ ଗର୍ବ ଅନୁଭବ କରୁଥିଲେ ଓ ବିଦେଶୀ ମୁସଲମାନ ଅପେକ୍ଷା ଭାରତୀୟ ହିନ୍ଦୁମାନଙ୍କୁ ବେଶି ବିଶ୍ୱାସ କରୁଥିଲେ । ଫରୁକସିୟାର

ମସ୍ତ ଭୁଲ୍ କଲେ । ସେ ସୈୟଦ ଭ୍ରାତାଙ୍କ ଅଭିଭାବକତ୍ୱ ପସନ୍ଦ ନକରି ବିଦେଶୀ ପାର୍ଟି ସାଙ୍ଗେ ମିଶି ଆରମ୍ଭ କଲେ ସୈୟଦ ଭ୍ରାତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର । ଏ ସବୁ ଗୁଲକ ସୈୟଦ ଭ୍ରାତାଙ୍କ ପାଖେ ଚଳିବା ଅସମ୍ଭବ । ଫରୁକସିୟାରଙ୍କୁ ଅନ୍ଧ କରି ଦିଆଗଲା ଓ ସେ ଆଜୀବନ ବନ୍ଦୀ ହେଲେ ।

କିନ୍ତୁ ସୈୟଦ ଭ୍ରାତା ଦ୍ୱୟ କାର୍ଯ୍ୟତଃ ସମ୍ରାଟ ହେଲେ ମଧ୍ୟ ଆଇନଗତ ସ୍ୱତ୍ୱରେ କେବଳ ତୈମୁରଙ୍କ ବଂଶଧର ହିଁ ମୋଗଲ ସମ୍ରାଟ ହୋଇପାରିବ । ଏଣୁ ଏମାନେ ଅନେକ ଚିନ୍ତା ଓ ତର୍କୋଧିକ ଆଲୋଚନା ପରେ ସ୍ଥିର କଲେ ଯେ, ଆଉରଂଜେବଙ୍କର ନାତି ମୃତ ସମ୍ରାଟ ଆଦମ-ଓସ୍ମାନଙ୍କ ସାନ ଭାଇ ରଫି-ଓସ୍ମାନଙ୍କ ଜ୍ୟେଷ୍ଠପୁତ୍ର ଯୁବକ ମହମ୍ମଦ ଇବ୍ରାହିମଙ୍କୁ ସିଂହାସନରେ ବସାଇବେ । ଏଣୁ ତତ୍‌କ୍ଷଣାତ୍ ଦୂତ ରେଫି-ଓସ୍ମାନଙ୍କ ହାବେଲି ଅର୍ଥାତ ପ୍ରାସାଦକୁ ପଠାଗଲା । ଦୂତଗଣଙ୍କର ହାବେଲିରେ ଆଗମନ ଓ ତା' ସଙ୍ଗେ ସଙ୍ଗେ ତାରସପ୍ତକ ସ୍ୱରରେ ନାରୀ କଣ୍ଠରୁ କରୁଣ ରୋଦନ ଓ ଅଶ୍ରାବ୍ୟ ଅଭିସପାତ ।

ଏହାର କାରଣ ସ୍ପଷ୍ଟ । କେତେଦିନ ହେଲା ଦିଲ୍ଲୀରେ ପ୍ରଚଣ୍ଡ ଗୁଜବ ଯେ ଫରୁକ୍‌ସିୟାରଙ୍କ ସମୟ ସରିଲାଣି । ଦିଲ୍ଲୀ ତ ଚିରକାଳ ଗୁଜବ ଉପରେ ନିର୍ଭରଶୀଳ (କଥାଟା ବର୍ତ୍ତମାନ ମଧ୍ୟ ସତ୍ୟ । କେତେ ଲୋକ ଏଥିରୁ ମୋଟ ପଇସା କରି ଥାଆନ୍ତି । ) କିନ୍ତୁ ସୈୟଦ ଭ୍ରାତା କାହା ମୁଣ୍ଡରେ ସୁନା କଳସ ଢାଳିବେ ତା ଅନିଶ୍ଚିତ । ଏବଂ ଯେ ସମ୍ରାଟ ହେବ, ସେ ତା ପ୍ରତିଦ୍ୱନ୍ଦୀ ଅର୍ଥାତ୍ ଅନ୍ୟାନ୍ୟ ମୋଗଲ ବଂଶୀୟ ଶାହଜାଦା-ମାନଙ୍କୁ ଯେ ବନ୍ଦୀ କରି ବକ୍‌ରି ପରି କତଲ କରିବ ତା ତ ଦିଲ୍ଲୀର ଗଜମୂର୍ଖ ମଧ୍ୟ ଜାଣେ । ଅତଏବ ଦୂତମାନଙ୍କୁ ଦେଖି ମହିଳାମାନେ ବୁଝିଗଲେ ଯେ ଫରୁକସିୟାର ଆଉଟ୍ । ଆଉ ଜଣେ ବାଦଶାହା ହୋଇ ସାରିଲାଣି ଓ ସେ ତା ଗାଦି ନିଷ୍କଣ୍ଟକ କରିବାକୁ ମହମ୍ମଦ ଇବ୍ରାହିମଙ୍କୁ ଧରିବାକୁ ଲୋକ ପଠାଇଛି । ସେମାନେ ମୋଗଲ ଘର ମହିଳା । ଏତିକ ବୁଝି ପାରିବେ ନାହିଁ ?

ମସ୍ତ ପ୍ରାସାଦ । ଅସଂଖ୍ୟ କୋଠରି । ବହୁ ଅଗଣା । ବହୁ ସିଡ଼ି । ଆଉ ଏ ପ୍ରକାର ଝାମେଲା ତ ରାଜବଂଶରେ ସ୍ୱାଭାବିକ । ଏଣୁ କେତେଟା ଗୁପ୍ତଘର, ଦୁଇ ଚାରିଟା ଗୁପ୍ତ ସୁଡ଼ଙ୍ଗ ନଥିଲେ ତ ପ୍ରାସାଦ ହୋଇ ପାରିବ ନାହିଁ । ହାରେମର ମହିଳାଗଣ ମହମ୍ମଦ ଇବ୍ରାହିମ ଓ ତାଙ୍କ ସାନଭାଇ ରଫଉଦ୍ଦୌଲଙ୍କୁ କୁଆଡ଼େ ପାର କରିଦେଲେ । ଦୂତଗଣ ଯେତେ ଖୁଜାଇବାର ଚେଷ୍ଟା କରୁଛନ୍ତି, ଶୁଣେ କିଏ ? ଏଣେ ସୈୟଦ ଭ୍ରାତାଙ୍କ ହାତରେ ସମୟ ବଡ଼ କମ୍ । ଯଦି ଜଣା ପଡ଼ିଯାଏ ଯେ ଫରୁକ୍‌ସିୟାର ଗାଦିଚ୍ୟୁତ ଓ ଆଉ କେହି ତା ଦଖଲ କରି ନାହିଁ ତା' ହେଲେ ଯେ କୌଣସି ମୋଗଲ ବଂଶଧର ନିଜକୁ ସମ୍ରାଟ ଘୋଷଣା କରି ଦେଇ ପାରେ । ଫଳ ଅତି କମରେ ଗୃହ ଯୁଦ୍ଧ । ଏଣୁ ସେମାନେ ଲୋକ ପରେ ଲୋକ ପଠାଉଛନ୍ତି ।

ଦୂତଗଣ ଗୁପ୍ତଘର ସନ୍ଧାନରେ ଗ୍ଭଲିଲେ । ଏବଂ ସଙ୍ଗେ ସଙ୍ଗେ ଆରମ୍ଭ ହେଲା ଛାଞ୍ଚୁଣି, ତର୍କି ଓ ଅନ୍ୟାନ୍ୟ ମାରଣାସ୍ତ୍ର ଦ୍ୱାରା ଦୂତଗଣଙ୍କ ଉପରେ ନିଷ୍ଠୁର କେନାନା ଆକ୍ରମଣ । ଗୋଟିଏ ବାକ୍ତି ଠାରୁ ଚୁଆ ଛଡ଼ାଇଲେ ସେ କି ଉଗ୍ର ମୂର୍ତ୍ତି ଧାରଣ କରେ ତାହା ଜାଣି । ଏ ମହିଳାମାନଙ୍କ ଦେହରେ ତୈମୁର ଓ ଚେଙ୍ଗିଜ୍ ଖାଁଙ୍କ ରକ୍ତ । ପୁଣି ସ୍ୱୟଂ ତାଙ୍କର ଖାସ ମୋଗଲ ବବର୍ଚିଖାନା । ସେଠି ଗୋଟା ଗୋଟା ଛେଲ ଶ୍ରେଷ୍ଠ ହୁଏ । ସେଠି କେତେ ଅସ୍ତ୍ର ଶସ୍ତ୍ର ନଥିବ । ପ୍ରକ୍ଷେପାସ୍ତ୍ର ହିସାବରେ ଖଣ୍ଡିଆ ଜୋତା, ଭଙ୍ଗା ପଥର ଇତ୍ୟାଦିର ଏପରି ଘରେ ଅଭାବ ନାହିଁ । ଏଣେ ଦୂତଗଣ କିଛି କରି ପାରିବେ ନାହିଁ । କାରଣ ଶାନ୍ତିଭଙ୍ଗକାରିଣୀ ଗଣ ଭବିଷ୍ୟତ ସମ୍ରାଟଙ୍କର ମା, ମାଉସୀ, ପିଉସୀ, ଖୁଡ଼ି ଇତ୍ୟାଦି । କାଲି ଏହିମାନେ ହିଁ ଆଦେଶ କରିବେ, "ଯିହ ହାରାମଜାଦା ମୁଝେ ଲାତ୍ ମାରା ଥା । ବନ୍ଦ କରଦୋ ଇସକୋ ପଞ୍ଜର୍ ମେ" "ଏ ବଦମାସର ସମସ୍ତ ସମ୍ପତ୍ତି ଲୁଟ କର ।" ଏଣୁ ଦୂତଗଣ ନାଚାର । କେବଳ ଆଲ୍ଲାଙ୍କର ଶପଥ, ରସୁଲଙ୍କର ଦୋହାଇ ଦେଇ କହୁଛନ୍ତି ଯେ ସେମାନେ କେବଳ ହଜୁରଙ୍କୁ ତାଙ୍କ ହକର ସିଂହାସନରେ ବସାଇବା ପାଇଁ ନେବାକୁ ଆସିଛନ୍ତି । କିନ୍ତୁ ମୋଗଲ ମହିଳାଗଣ କାହିଁକି ଶୁଣିବେ ? ଗ୍ଭଲିଛି ସେହି ଆକ୍ରମଣ । ଏଣେ ସୈୟଦମାନଙ୍କ ଠାରୁ ଘନ ଘନ ତାଗିଦା । ଶୀଘ୍ର ଆସ । ନଚେତ କଅନ୍ତା ଚମଡ଼ା ଉତାରି ଦଆଯିବ ।

ଚରମ ବିପଦରେ ପଡ଼ିଲେ ମନୁଷ୍ୟର ବୁଦ୍ଧି କିପରି ଖେଳେ ତାହା ପ୍ରକୃତରେ ଆଶ୍ଚର୍ଯ୍ୟ । ଏ ସମୟରେ ଏକ ଅପ୍ରତ୍ୟାଶିତ ଘଟଣା ଘଟିଗଲା । ଏକ ବାଳକ ଧୀରେ ଧୀରେ ହବେଲି ଆଡ଼କୁ ବଜାରରୁ ଆସୁଥିଲା । ପରିଧାନ ଅଧା ମଇଳା ପାଇଜାମା ଓ କୁରୁତା । ହଠାତ୍ ଜଣେ ଦୂତ ତାକୁ ଝିଙ୍କି ପକାଇଲା । ଆରେ ଏହିତ ମହମ୍ମଦ ଇବ୍ରାହିମଙ୍କ ସବା ସାନଭାଇ ଫେ-ଉଦ୍‌ଦରଜାତ । ମହିଲା ମହଲ ଜାଣିବା ଆଗରୁ ଦୂତଗଣ ପିଲାକୁ ଧରି ଚମ୍ପଟ ଲାଲକିଲାକୁ । ତା'ର ସ୍ୱରରେ ବାମାକଣ୍ଠର ଚିତ୍କାର । ଖାଣ୍ଟି ମୋଗଲାଇ ଅଭିସମ୍ପାତ । ଓଡ଼ିଆରେ ତାର ସ୍ୱାଦ ଏପରି ହେବ, "ହେ ମହାପ୍ରଭୁ, ବାଡ଼ପଡ଼େ, ଅଲଖେଇସେ କୋଡ଼ପୋଛା ଟେଫିକୁ ନେଇ ପଳେଇଲେ । ଗଛ ଜଳିଯାଉ ତାଙ୍କ ଉପରେ । ଇତ୍ୟାଦି ।" ଏଣେ ସୈୟଦ୍ ଭ୍ରାତା ଦ୍ୱୟ ଏ ପିଲାକୁ ଦେଖି ରାଗି ଖପ୍ପା । "କମବଖତ୍, ନାଦାନ୍, ତୁମ ଉପରେ ଖୋଦାର ଗଜବ୍, ହଜାର ଲାନତ୍, କଣ ଧରି ଆଣିଚ ? ସମ୍ରାଟ ହେବେ ବଡ଼ ଭାଇ । ଏ ଛୋଟାକୁ କ'ଣ ଧରି ଆଣିଛ ?" କିନ୍ତୁ ଦୂତଗଣ ସେ ମହିଳା ଆକ୍ରମଣରେ ଏତେ ବିବ୍ରତ ହୋଇ ଯାଇଥିଲେ ଯେ ସଫା ସଫା କହିଦେଲେ, "ହଜୁର ଜାନମାଲର ମାଲିକ । କିନ୍ତୁ ସେ ଶଇତାନର ଦାଣ୍ଡମାନଙ୍କ ଠାରୁ ଯାହା ଆଣି ପାରିଛୁ ତା'ନେଇ ସନ୍ତୁଷ୍ଟ ହୁଅନ୍ତୁ । ଆଉ ଦ୍ୱିତୀୟ ଥର ସେଠାକୁ ଯାଇ ପାରିବୁ ନାହିଁ ।"

ଭ୍ରାତାଦ୍ୱୟ ବୁଦ୍ଧିମାନ । ବୁଝିଗଲେ ଯେ ଆଉ ଥରେ ଚେଷ୍ଟା କଲେ ଅତ୍ୟନ୍ତ କେତେ ଘଣ୍ଟା ସମୟ ଲାଗିଯିବ । ତା' ମଧ୍ୟରେ ଅନ୍ୟ ଦଳ ବିପଦ ସୃଷ୍ଟି କରିପାରେ ।

ଏବଂ ଯେ ସମ୍ରାଟ ହେଉ ରାଜ୍ୟ ତ ଚଳାଇବାକୁ ଆମେ ଦୁଇ ଭାଇ । କଲମ ଓ ତରବାରି ଉଭୟ ଆମ ହାତରେ । ଏ ବାଳକକୁ ସମ୍ରାଟ କଲେ କ୍ଷତି କଣ ? ରାଜରକ୍ତ ତ ଅଛି । ପ୍ରକୃତରେ ସୈୟଦଭ୍ରାତୃଙ୍କର ଫରାସୀ ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ପରି କହିବାର ଅଧିକାର ଥିଲା "L'INDE, C'EST NOUS" ଅର୍ଥାତ୍ ହିନ୍ଦୁସ୍ଥାନ, ସେ ତ ଆମେ ଦୁଇ ଭାଇ । ଆଉ ସମ୍ରାଟ ? ସେ ତ ଆମର କୁଟୁମ୍ବ । ଖାଲି ରାଜରକ୍ତ ଥିଲେ ହେଲା । ଦୁଇ ଅଭିଭାବକ ବାଳକ ସମ୍ରାଟଙ୍କୁ ଧରି ଚାଲିଲେ ଦୱାନେ ଖାସକୁ । ସମ୍ରାଟଙ୍କର ଅଭିଷେକ । ଅମୀର ଉମରା ହାତ ଯୋଡି ଠିଆ ହୋଇଛନ୍ତି । ସେମାନଙ୍କ ମସ୍ତକରେ ମହା ମୂଲ୍ୟବାନ କିଂଖାବର ପଗଡ଼ି । ଦେହରେ ଶୁଭ୍ର ମଲମଲର ଅଙ୍ଗରଖା, ଯାହା ଭିତରୁ ଜରିର ସଦରୀର ସୁନେଲି ରଙ୍ଗ ଦେଖା ଯାଉଛି । ଅଣ୍ଟାରେ କାଶ୍ମିରୀ ଶାଲର ବହୁମୂଲ୍ୟ କମରବନ୍ଧ । ଏବଂ ସେଥିରୁ ଝୁଲୁଛି ମଣିମାଣିକ୍ୟ ଖଚିତ ତରବାରି । ସେମାନଙ୍କ ବେକରେ ମୁକ୍ତାର ହାର ଓ ହାତରେ ହୀରକାଙ୍ଗୁରୀୟ । ପାଦରେ ସୁନାଜରିର କାମକରା ସଲମଶାହି ଯୋତା । ଏମାନଙ୍କର ଯେ ମାଲିକ, ଜିଲ୍ଲେ ଶୁଭାନୀ (ଈଶ୍ୱରଙ୍କ ପାର୍ଥିବଚ୍ଛାୟା) ରଫି ଉଦ୍-ଦରଜତ୍ ମୋଗଲ ସିଂହାସନରେ ବସିବାକୁ ଚାଲିଛନ୍ତି । ପରିଧାନ ମଇଳା ପାଇଜାମା ଓ କୁରୁତା । ଠିକ୍ ହଂସ ମଧ୍ୟେ ବକ ଯଥା । ଅମୀର ଉମରା ଲଇଁ ଲଇଁ କୁର୍ଣ୍ଣିଶ କରୁଛନ୍ତି । ଏହି ବାଳକ ବର୍ତ୍ତମାନ ଆଇନତଃ ଦୀନ ଦୁନିଆର ମାଲିକ । ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା ।



# ମୋଗଲ ସାମ୍ରାଜ୍ୟର ଅସ୍ତରାଗ-୨

## (ତିନିଜଣ କବି)

କିନ୍ତୁ ଏହି ସମସ୍ତ ସମୟଟା କେବଳ ଏହି ହାସ୍ୟାସ୍ପଦ ଘଟଣାବଳୀର ସମଷ୍ଟି ନୁହେଁ । ଏହା ଉର୍ଦ୍ଦୁ ସାହିତ୍ୟର ଇତିହାସରେ ଅତି ମହତ୍ତ୍ୱପୂର୍ଣ୍ଣ ସମୟ । ଏହି ସମୟରେ ଉର୍ଦ୍ଦୁର ନିଜ ରୂପ ସ୍ପଷ୍ଟ ହେଲା ଏବଂ ବଳିଷ୍ଠ ପ୍ରତିଭାଶାଳୀ କବିମାନେ ଏହାକୁ ସମୃଦ୍ଧ କଲେ । ତେବେ ମୁଁ ତ ଉର୍ଦ୍ଦୁ ସାହିତ୍ୟର ଇତିହାସ ଲେଖିବାକୁ ବସିନାହିଁ । ମୁଁ କେବଳ ସେହି ଅସ୍ତରାଗ ରଞ୍ଜିତ ସାହିତ୍ୟିକ ଆକାଶର ଶୋଭା ସମ୍ବନ୍ଧରେ ଆପଣଙ୍କୁ କିଛି ଧାରଣା ଦେବାର ଚେଷ୍ଟା କରିବି । ମୋର ଇଚ୍ଛା ତିନିଜଣ କବିଙ୍କ ସହିତ ପାଠକଙ୍କର କିଞ୍ଚିତ୍ ପରିଚୟ କରାଇବା ।

ପ୍ରଥମେ ଆସିଲେ ମୀର ତକି ମୀର । ଅସ୍ତରାଗର ପ୍ରଥମ ଅଂଶର ପ୍ରାୟ ସମସାମୟିକ । ତାପରେ ଊନବିଂଶ ଶତକର ପ୍ରଥମ ଭାଗ । ୧୮୫୮ ରେ ତ ମୋଗଲ ସାମ୍ରାଜ୍ୟର ଆନୁଷ୍ଠାନିକ ଶେଷକୃତ୍ୟ ମହାରାଣୀ ଭିକ୍ଟୋରିଆଙ୍କୁ ଭାରତ ସାମ୍ରାଜ୍ଞୀ ଘୋଷଣା କରି ସମାପ୍ତ ହେଲା । ସେ ସମୟର ଦୁଇଜଣ କବିଙ୍କ ବିଷୟରେ କିଛି କହିବାର ବାସନା ଅଛି । ସେମାନେ ହେଲେ ଗାଲିବ୍ ଓ ମୋମିନ । ଗାଲିବ ଯେ ଉର୍ଦ୍ଦୁର ମହାନ କବି, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଆଲୋଚନା କେବଳ ଏଇଥିପାଇଁ ହୋଇପାରେ ଯେ "ଗାଲିବ କ'ଣ ଉର୍ଦ୍ଦୁର ସର୍ବଶ୍ରେଷ୍ଠ କବି କି" ? ଗାଲିବଙ୍କର ନିଜର ପ୍ରତିଭା ସମ୍ବନ୍ଧରେ କୌଣସି ସନ୍ଦେହ ନଥିଲା । ତାଙ୍କ ଭାବନାଟା ସଂସ୍କୃତ କବି ଭବଭୂତିଙ୍କ ପରି "କାଳ ନିରବଧି ଓ ପୃଥିବୀ ବିପୁଳା । ମୋର ସମାନଧର୍ମା କେହି ଭବିଷ୍ୟତରେ ହୋଇପାରେ ।" ପ୍ରଥମେ ସେ ଅସଦ୍ ଉପନାମରେ ଲେଖୁଥିଲେ ଯାହାକି ତାଙ୍କ ନାମର (ମିର୍ଜା ଅସଦୁଲ୍ଲା ଖାଁ) ଏକ ସଂକ୍ଷିପ୍ତ ରୂପ । ପରେ ଗାଲିବ ଉପନାମ ବ୍ୟବହାର କଲେ । ଗାଲିବ ଅର୍ଥ ଉଚ୍ଚ ବା ମହାନ୍ । ସେ ନିଜର ପ୍ରତିଭା ସମ୍ବନ୍ଧରେ କହିଛନ୍ତି :

"ହେଁ ଅଉର୍ ଭି ଦୁନିଆଁ ମେଁ ସୁଖନବର ବହୁତ ଅଚ୍ଛେ
କହତେ ହେଁ କି ଗାଲିବକା ହୈ ଅନ୍ଦାଜେ ବୟାଁ ଅଉର ।"

ଅର୍ଥାତ—"ସଂସାରରେ ଅନେକ ଭଲ ଭଲ କବି ଅଛନ୍ତି । କିନ୍ତୁ ଲୋକେ କହନ୍ତି ଯେ ଗାଲିବର ବର୍ଣ୍ଣନା ଶୈଳୀ ହିଁ ଭିନ୍ନ ବସ୍ତୁ ।" ଏଥି ସହିତ ଅବଶ୍ୟ ଅଧମ ଏକମତ । ତେବେ ଏ କବି ଯଦି କାହାର ଶ୍ରେଷ୍ଠତ୍ୱ ସ୍ୱୀକାର କରନ୍ତି, ତାହେଲେ ନିଶ୍ଚୟ ତାଙ୍କର ପ୍ରତିଭା ଉଚ୍ଚକୋଟୀର ହୋଇଥିବ । ଗାଲିବ ମୀର ତକି ମୀରଙ୍କର ଶ୍ରେଷ୍ଠତା ସ୍ୱୀକାର କରିଛନ୍ତି ନିମ୍ନଲିଖିତ ପଦ୍ୟରେ :

"ରେଖ୍ତା କେ ତୁମ୍ ହି ନହିଁ ହୋ ଉସ୍ତାଦ,
ଅଗଲେ ଜମାନେ ମେଁ କୋଇ ମୀର ଭି ଥା ।"

ଅର୍ଥାତ—"ଗାଲିବ, ତୁ ଉର୍ଦ୍ଦୁର ଏକମାତ୍ର ଗୁରୁ ନୋହୁଁ । ପୂର୍ବକାଳରେ ଜଣେ ମୀର ମଧ୍ୟ ଥିଲା ।" ଏପରି ସମ୍ମାନ ଯେ ଗାଲିବ କାହାକୁ ଦେବେ, ଏପରି କଳ୍ପନା କରିବା ମଧ୍ୟ କଷ୍ଟ । ତେବେ ତାଙ୍କ କଥା ଅକ୍ଷରେ ଅକ୍ଷରେ ସତ୍ୟ । ମୀର ଅତି ଗଭୀର ଭାବକୁ ଅତି ସରଳଭାଷାରେ ପ୍ରକାଶ କରିବାରେ ଅଦ୍ୱିତୀୟ । ମୀର ସ୍ୱୀକାର କରୁଥିଲେ ଯେ ସାହିତ୍ୟିକ ଦାୟିତ୍ୱ ହେଲା ସତ୍ୟକୁ ପ୍ରକାଶ କରିବାକୁ ହେବ । ସେଥିଲାଗି ଯେତେବଡ଼ ମୂଲ୍ୟ ଦେବାକୁ ପଡ଼ୁନା କାହିଁକି । ତାଙ୍କର ଗୋଟିଏ ଶେର୍‌ରେ କହିଛନ୍ତି :

"ମୌସମ ଆୟା ତୋ ନଖ୍‌ଲେଦାର ପର ଐ ମୀର
ସରେ ମନସୁର କା ବାର ଆୟା ।"

ଏହି ଦ୍ୱିପଦୀର ବ୍ୟାଖ୍ୟା ଆବଶ୍ୟକ । ମନସୁର ପ୍ରଥମ ସୁଫୀ । ସେ ଘୋଷଣା କଲେ ଅନଲହକ୍ ଅର୍ଥାତ ମୁଁ ସତ୍ୟ । ମୁଲ୍ଲାଗଣଙ୍କର ଘୋର ଅତ୍ୟାଚାର ଶେଷରେ ମନସୁରଙ୍କର ପ୍ରାଣଦଣ୍ଡରେ ଯାଇଁ ସମାପ୍ତ ହେଲା । କବି କହିଛନ୍ତି, ମନସୁରର ମୃତ୍ୟୁ ଶେଷକଥା ନୁହେଁ । ଯେତେ ଥର ବସନ୍ତ ଆସିବ, ଏକ ନୂତନ ସତ୍ୟଭାଷୀ ମନସୁରର ମସ୍ତକ ଫାସୀ ଦେବା ଗଛରେ ଝୁଲିବ । ଅର୍ଥାତ ସତ କହିବାକୁ ହେବ ଓ ତାର ମୂଲ୍ୟ ପାଇଁ ପ୍ରାଣ ମଧ୍ୟ ଦେବାକୁ ହେବ । ଗତ ପରିଚ୍ଛେଦରେ ହୁଏତ ମନେ ହେବ ମୂଲ୍ୟବୋଧ ଲୋପ ପାଇଥିଲା । ପୁରାପୁରି ନୁହେଁ, କେତେ ଜଣଙ୍କର ମୂଲ୍ୟବୋଧ ଥିଲା । ଓ ସେମାନେ ତାର ମୂଲ୍ୟ ମଧ୍ୟ ଦେଇଥିଲେ । ମୀର୍ ଯଦିଓ ପ୍ରାଣଦଣ୍ଡ ପାଇନଥିଲେ ତେବେ ନବେବର୍ଷର ଦୀର୍ଘ ଜୀବନ ଅଭାବ, ଦାରିଦ୍ର୍ୟ ଓ ଅଶାନ୍ତିରେ ହିଁ କଟାଇଛନ୍ତି ।

ମୀର ଗାଲିବଙ୍କର ପୂର୍ବସୂରି । ଏଣୁ ତାଙ୍କୁ ପ୍ରଶଂସା କଲେ ଗାଲିବଙ୍କର ପ୍ରତିଷ୍ଠା ଉପରେ ଆଞ୍ଚ ଆସୁ ନଥିଲା । ଗାଲିବ ତାଙ୍କର ସମସାମୟିକ କବିଙ୍କର ଏପରି ପ୍ରଶଂସା କରିଛନ୍ତି କି ? ହଁ, ଜଣଙ୍କର ଏବଂ ଥରେ । କିନ୍ତୁ ସେଭଳି ପ୍ରଶଂସା ମୁଁ ଆଉ କୁତ୍ରାପି ଶୁଣିନାହିଁ । ମନେହୁଏ ଏପରି ପ୍ରଶଂସା କେବଳ ଗାଲିବ ହିଁ କରିପାରନ୍ତି ।

ଗାଲିବଙ୍କର ଜଣେ ସମସାମୟିକ କବି ଥିଲେ ମୋମିନ ଖାଁ । ମୋମିନ । ସେ ମଧ୍ୟ କମ୍ ଦାମ୍ଭିକ ନଥିଲେ । ଗାଲିବଙ୍କର ଅତିଶୟ ଫାର୍ସିନିଷ୍ଠ ଉର୍ଦ୍ଦୁକୁ ତାଚ୍ଛଲ୍ୟ କରି କହୁଥିଲେ "ହଁ। ଅସଦୁଲ୍ଲ ଖାଁ। ଫାର୍ସୀ ମେ କୁଛ କହତେ ହୈ ।" ଯଦି ଫକୀର ମୋହନ ମଧୁସୂଦନ ରାଓଙ୍କ ବିଷୟରେ କହିଥାନ୍ତେ, "ହଁ ମଧୁବାବୁ ସଂସ୍କୃତରେ ଭଲ ଲେଖା ଲେଖି କରୁଛନ୍ତି" ତା ହେଲେ ବ୍ୟାପାରଟା ଅନେକଟା ସେହିଭଳି ହୋଇଥାନ୍ତା ।

ମୋମିନ ଏକ କବିତାରେ ଲେଖିଥିଲେ :

"ତୁମ ମେରେ ପାସ ହୋତେ ହୋ ଗୋୟା
ଯବ କୋଇ ଦୁସରା ନହିଁ ହୋତା ।"

ଯେତେବେଳେ ତୁମେ ମୋ ପାଖରେ ଥାଅ, ମନେହୁଏ ଯେପରି ଆଉ କେହି ନାହାନ୍ତି । ଅର୍ଥାତ୍ ତୁମେ ଉପସ୍ଥିତ ଥିଲେ ଅନ୍ୟ କାହାର ଉପସ୍ଥିତି ହିଁ ଅବାନ୍ତର । କେବଳ ତୁମେ ଥିବାହିଁ ସତ୍ୟ । ଏହା ପଢି ଗାଲିବ୍ କହିଲେ, "ମୋମିନ ଖାଁ, ମେରା ସାରା ଦିଓ୍ୱାନ ଲେଲୋ । ମୁଝେ ୟିହ ଶେର୍ ଦେଦୋ ।" ଅର୍ଥାତ—"ମୋର ସମସ୍ତ କାବ୍ୟକୃତି ନେଇଯାଅ, ମୋତେ କେବଳ ଏହି ପଦଟି ଦେଇଦିଅ ।" ଏପରି ପ୍ରଶଂସା କେତେଜଣ କବି ଅନ୍ୟ ଜଣେ କବିର କରିପାରନ୍ତି ?

ଗାଲିବଙ୍କର ଫାର୍ସୀ ବାଇ ନିଶ୍ଚୟ ଏକ ଦୁର୍ଭାଗ୍ୟ । ଗାଲିବଙ୍କର ତାଙ୍କ ଫାରସୀ ବ୍ୟାକରଣ ଓ ଅଲଙ୍କାରରେ ପାଣ୍ଡିତ୍ୟ ସମ୍ବନ୍ଧରେ ଅନେକ ଗର୍ବ ଥିଲା ଓ ଅନ୍ୟାନ୍ୟ ଫାର୍ସୀ ଜ୍ଞାନୀ ମୌଲବୀଗଣଙ୍କ ସହିତ ଅଯଥାରେ କଳିକଳହରେ ଲିପ୍ତ ହୋଇ ନିଜର ସମୟ ଓ ଶକ୍ତି ଅପଚୟ କରିଛନ୍ତି । ଗାଲିବ ଗଦ୍ୟରେ କୌଣସି ଗ୍ରନ୍ଥ ଲେଖି ନାହାନ୍ତି । କିନ୍ତୁ ପ୍ରଚୁର ଚିଠି ଲେଖିଛନ୍ତି । ସେଥିରେ ଏପରି ଏକ ମାର୍ଜିତ ଓ ସୌଷ୍ଠବମୟ ଶୈଳୀ ଦେଖାଯାଏ ଯାହାକି ବର୍ତ୍ତମାନ ଆଦରଣୀୟ । ସେହି ଅନ୍ଦାଜେବୟାଁ ଯାହାକି ପଦ୍ୟରେ ପ୍ରତି ଛନ୍ଦରେ ଉଦ୍‌ଭାସିତ, ତାହା ତାଙ୍କର ଗଦ୍ୟରେ ମଧ୍ୟ ଜାଜ୍ୱଲ୍ୟମାନ । ଗାଲିବ ଭାରତ ଓ ଦିଲ୍ଲୀର ଏକ ଘଟଣାବହୁଳ ସମୟର ସାକ୍ଷୀ । ଏଣୁ ତାଙ୍କ ଅଙ୍ଗେ ନିଭାଇବା କଥା ଯଦି ଲେଖି ଯାଇଥାନ୍ତେ, ତା ହୁଏତ ବାବରଙ୍କ ଆତ୍ମଜୀବନୀ ପରି ଅମର ଗ୍ରନ୍ଥ ହୋଇଥାନ୍ତା । ତାଙ୍କ ଚିଠିରେ ଯେଉଁ ନମୁନା ମିଳେ ତା ଅତ୍ୟନ୍ତ ଚିତ୍ତାକର୍ଷକ । ଭାଷା ଅତି ସରଳ ଏବଂ ମନେ ହେବ ଯେପରି ଆପଣଙ୍କ ପାଖରେ ବସି ଆଡ୍ଡା ଦେଉଛନ୍ତି । ବିଶେଷ କରି ସିପାହୀ ବିଦ୍ରୋହ ସମୟର ଅତି ପ୍ରାଣବନ୍ତ ଚିତ୍ର ତାଙ୍କ ଚିଠିରୁ ମିଳେ । ତଳେ କେତୋଟି ଉଦାହରଣ ଦେଲି ।

"ସ୍ଥିତରେ ଚାରି କେତେକ ଗୋରା ଆମଘର ଭିତରେ ପଶି, ମୋତେ, ମୋ ପିଲା ଛୁଆଙ୍କୁ ଓ କେତେକ ପୁଣ୍ୟବନ୍ତ ପ୍ରତିବେଶୀମାନଙ୍କୁ ଧରି କର୍ଣ୍ଣେଲ

ବ୍ରାଉନ ପାଖକୁ ନେଇଗଲେ । ମୋତେ ପଚାରିଗଲେ "ତୁମେ ମୁସଲମାନ୍ ?" ମୁଁ କହିଲି, "ଆଜ୍ଞା ଅଧା ମୁସଲମାନ । ପଚାରିଗଲେ "ଅଧା ମୁସଲମାନ କଣ ?" ମୁଁ ମୁଁ ଉତ୍ତର ଦେଲି, "ଆଜ୍ଞା ମଦ୍ୟପାନ କରେ । କିନ୍ତୁ ଘୁଷୁରି ମାଂସ ଖାଏନାହିଁ ।"

ପାଠକେ ଜାଣିଥିବେ ଯେ ମଦ୍ୟପାନ ଓ ଘୁଷୁରି ମାଂସ ମୁସଲମାନ ଧର୍ମରେ ହାରାମ ଅର୍ଥାତ ନିଷିଦ୍ଧ । ଅବଶ୍ୟ ମଦ୍ୟପାନ ଦିଗରେ ଗାଲିବଙ୍କ ପରି ବହୁ ବ୍ୟତିକ୍ରମ ଦେଖାଯାଏ ।

ଆଉ ଗୋଟିଏ ଚିଠି ଦେଖନ୍ତୁ । ଏହା ମଧ୍ୟ ତାଙ୍କ ଚିଠିରୁ ଉଦ୍ଧୃତ । ଯେଉଁମାନେ ବିଦ୍ରୋହରେ ପ୍ରାଣ ହରାଇଲେ ତାଙ୍କ ବିଷୟରେ ।

"ଯେଉଁମାନେ ପ୍ରାଣ ହରାଇଲେ ତାଙ୍କ ଭିତରୁ କିଏ ମୋର ଶିଷ୍ୟ, କିଏ ମୋର ବନ୍ଧୁ, କିଏ ମୋର ପ୍ରିୟା । ହାୟ ଏତେ ଲୋକ ମଲେ ଯେ ମୁଁ ଯେତେବେଳେ ମରିବି, ମୋ ଲାଗି ଲୁହ ଟୋପାଏ ଗଡ଼ାଇବାକୁ ମଧ୍ୟ କେହି ନଥିବ । ଯଦି ପୁଣି ଥରେ ଦେଖାହୁଏ ତ ତାହା ସେହି ଶେଷ ବିଚାରର ଦିନ । କିନ୍ତୁ ସେଠି ଆଉ କ'ଣ ଦେଖା ହେବ ? ସେଦିନ ତ ପାପୀ ଅଲଗା, ପୁଣ୍ୟାତ୍ମା ଅଲଗା । ଶିଆ ଭିନ୍ନ, ସୁନ୍ନୀ ଭିନ୍ନ ।"

ଏହି ବିଷାଦ ମଧ୍ୟରେ ଲକ୍ଷ୍ୟ କରନ୍ତୁ ଗାଲିବଙ୍କର ଜୀବନ ଦର୍ଶନ । ମନୁଷ୍ୟର ବିଚାରର ଦାୟିତ୍ୱ ଭଗବାନଙ୍କର । ମନୁଷ୍ୟ କେବଳ ମନୁଷ୍ୟକୁ ଭଲ ପାଇବ । ଆଉ ଏକ ସ୍ଥାନରେ ସେ ନିଜ ବିଷୟରେ ଲେଖିଛନ୍ତି ।

"ଯଦି କେଉଁଦିନ ଭୁଲରେ ନମାଜ ପଢ଼ିଥାଏ ତାହାହେଲେ ମୁଁ କାଫେର । ଯଦି କେଉଁ ଦିନ ମଦ ନଖାଇଥାଏ ତାହେଲେ ମୁଁ ପାପୀ । ହେତୁ ପାଇବା ଦିନଠାରୁ ପଚାଶ ବର୍ଷ ହେଲା ଏ ବର୍ଣ୍ଣ ଗନ୍ଧର ସଂସାରରେ ବିଚରଣ କରୁଛି । କେତେ ସ୍ନେହ, କେତେ କୃପା, କେତେ ପ୍ରେମ ପାଇଛି । କିନ୍ତୁ ଏବେ ଲାଗୁଛି ମୁଁ ଯେପରି ଏଠି ଅପରିଚିତ । କେବଳ ସ୍ମୃତି ହିଁ ସମ୍ବଳ ।"

ଗାଲିବ ନିଜର ସୃଷ୍ଟି ପ୍ରତି ବହୁ ଅବିଚାର କରିଛନ୍ତି । ନିଜର କାବ୍ୟ ସଂକଳନ ନିଜେ କଲେ ଏବଂ ସେଥିରେ ନିଜର ଯୁବକ ସମୟର ବହୁ ଲେଖା ବାଦଦେଲେ ଯାହା ମଧ୍ୟରେ ଅନେକ ଉଚ୍ଚକୋଟୀର କବିତା ଥିଲା । ସେଥିରୁ ଅଧିକାଂଶ ଲୁପ୍ତ ହୋଇଗଲା । ଗଦ୍ୟର ନମୁନା ତ ଦେଖିଲେ । ତେବେ ଯେଉଁ ସମ୍ଭାବନା ସଫଳ ହୋଇ ନାହିଁ ତା ଲାଗି ଶୋକ କଲେ ଆଉ କଣ ହେବ ? ଗାଲିବ ନିଜେ କହିଛନ୍ତି ।

ମୁଦ୍‌ଦତ ହୁଆ ମରେଗ୍ୟା ଗାଲିବ୍ ପର ୟାଦ୍ ଆତା ହୈ ।
ଉସ୍‌କା ୟହ କହନା କ ମୁଁ ହୋତା ତୋ କ୍ୟା ହୋତା ।"

ଅର୍ଥ ଗାଲିବ କେଉଁ କାନ୍ତୁ ମଲଣି । ତେବେ ତାର ସେହି କହିବା ମନେ ପଡ଼େ । ଯଦି ଏପରି ହୋଇଥାନ୍ତା ତେବେ କଣ ହୋଇଥାନ୍ତା । ଏଣୁ ଏହି ଅସ୍ତରାଗର ବର୍ଣ୍ଣନା ସେହି ଗାଲିବଙ୍କର ଏକ କବିତାର ଅନୁବାଦରେ ଶେଷ କରୁଯାଉ । ଏହା ତାଙ୍କର ଏକ ପ୍ରସିଦ୍ଧ ଗଜଲର ଅନୁବାଦ, ଏହା ଚାରି ପଦର (ଶେର) ଗଜଲ । ପ୍ରତ୍ୟେକ ପଦ ସ୍ୱୟଂସମ୍ପୂର୍ଣ୍ଣ ।

—୧—

ପ୍ରିୟା, ପଦେ ପଦେ ସେହି ପ୍ରଶ୍ନ ତୁ କଣ, ତୁ କଏ ।
ଏ କପରି ବଚନ ଆଳାପ କହିତ ?

—୨—

ଯଦି ଦେହ ଭସ୍ମୀଭୂତ, ହୃଦସ୍ଥ କ ବଞ୍ଚି ଯାଇଥିବ ?
କେଉଁ ଆଶା ନେଇ ହାୟ, କ ଖୋଜୁଛ ଭସ୍ମସ୍ତୂପ ମଧ୍ୟେ ?

—୩—

ଧମନୀରେ ପ୍ରବାହ ତା ମାତ୍ର ଏକ ଶାରୀରିକ କ୍ରିୟା
ଯଦି ନେତ୍ରେ ଅଶ୍ରୁ ହୋଇ, ତେବେ ସିନା ରକ୍ତର ଯାଚନା !

—୪—

ହରାଇଛି ବାକ୍ ଶକ୍ତି, ସେହିଭଳି । ଯଦି ଥାଆନ୍ତା,
କପରି ବା କହିଥାନ୍ତି, କ ଆଶା ମୁଁ ରଖିଛି ମନରେ ?

ଗାଲିବଙ୍କର ସ୍କଚ୍ ହୁଇସ୍କି ପ୍ରତି ଅତ୍ୟନ୍ତ ଦୁର୍ବଳତା ଥିଲା । ସେ ଓଲ୍ଡ୍ ଟମ ନାମକ ହୁଇସ୍କିର ଭକ୍ତ ଥିଲେ । ତାଙ୍କ ଏକ ଚିଠିରେ ମୁଲ୍ଲାଙ୍କ ସଙ୍ଗେ କଥୋପକଥନର ଏକନମୁନା ଦେଖନ୍ତୁ ।

ମୁଲ୍ଲାଜୀ କହିଲେ "ମଦଗ୍ରୁଡ଼" । ମୁଁ ପଚାରିଲି "ମଦ ଖାଇଲେ କଣ ହୁଏ" ? ସେ କହିଲେ "ମଦ୍ୟପର ପ୍ରାର୍ଥନା ଭଗବାନ ସ୍ୱୀକାର କରନ୍ତି ନାହିଁ ।" ମୁଁ କହିଲି "ଯଦି ଏକ ବୋତଲ ଓଲ୍ଡ୍ ଟମ ଏବଂ ତା ସହିତ ଉପଯୁକ୍ତ ଖାଦ୍ୟ ଓ ଏହା ସବୁ ହଜମ କରିପାରିବାର ସ୍ୱାସ୍ଥ୍ୟ ଥାଏ ତାହେଲେ ଆଉ କେଉଁ ଦୁର୍ଲଭ ସମ୍ପଦ ଲାଗି ପ୍ରାର୍ଥନା କରିବ ?"



# ମୋଗଲ ସାମ୍ରାଜ୍ୟର ଅସ୍ତରାଗ-୩

## ଦୁଇ ସମ୍ରାଟ ଏବଂ ଦୁଇ ବନ୍ଦର

ସିପାହୀ ବିଦ୍ରୋହ ଭାରତ ଇତିହାସର ଯୁଗାନ୍ତକାରୀ ଘଟଣା । ଇଂରେଜ ଐତିହାସିକ ଗଣ ଯାହା କହନ୍ତୁ ନା କାହିଁକି, ଏ ବିଦ୍ରୋହ ଉତ୍ତର ଭାରତରେ ବେଶ ସାଫଲ୍ୟ ଲାଭ କରିଥିଲା । ମଇ ୧୮୫୭ ରୁ ମାର୍ଚ୍ଚ ୧୮୫୮ ପର୍ଯ୍ୟନ୍ତ କହିବା ମୁସ୍କିଲ ଥିଲା ଯେ ଫଳ କଣ ହେବ । ତେବେ ଇଂରେଜ ଜିଣିଲେ । ତା ପରେ ଯାହା ହେଲା ତା ଅବର୍ଣ୍ଣନୀୟ । ଇଂରେଜମାନେ ଦେଖାଇଥିବା କ୍ରୁରତାର ତୁଳନା ମିଳିବା ମୁସ୍କିଲ । ଲର୍ଡ କ୍ୟାନିଂ ଭାଇସରୟ ହୋଇ ଆସିବା ପରେ କେତେକ ଇଂରେଜଙ୍କୁ ଏଥିଲାଗି କିଛି ଶାସ୍ତି ଦେଇଥିଲେ ଏବଂ ଫଳତଃ ତାଙ୍କର ବହୁ ସମାଲୋଚନା ହୋଇଥିଲା । ତାର ଉତ୍ତରରେ ସେ ଲେଖିଥିଲେ "ମୁଁ ପଢେ ସମସ୍ତ କଷ୍ଟମନ୍ତବ୍ୟ ଶୁଣିବି, କିନ୍ତୁ ସେ ଘଟଣାବଳୀକୁ ଦୁନିଆ ଆଗରେ ପ୍ରକାଶ କରି ପାରିବିନାହିଁ । କାରଣ ତା ହେଲେ ଇଂରେଜ ଜାତିଉପରେ ଘୋର କଳଙ୍କ ଲାଗିବ । ଏତିକି ଯଥେଷ୍ଟ ଯେ ଭବିଷ୍ୟତରେ ଯେପରି ଏହା ନହୁଏ, ତାର ବ୍ୟବସ୍ଥା କରିଛି ।" ଏଣୁ ପାଠକେ ଅନୁମାନ କରି ନିଅନ୍ତୁ ।

୧୪ ସେପ୍ଟେମ୍ବର ୧୮୫୭ ରେ ଇଂରେଜ ଦିଲ୍ଲୀ ଦଖଲ କଲେ । ସେନାପତି ଜନ ନିକଲସନ୍‌ଙ୍କୁ ଏଥିଲାଗି ଅବଶ୍ୟ ପ୍ରାଣ ଦେବାକୁ ହୋଇଥିଲା । ବୃଦ୍ଧ ବାହାଦୁର ଶାହଙ୍କର ଏକ ହାସ୍ୟାସ୍ପଦ ବିଚାର କରାଯାଇ ତାଙ୍କୁ ନିର୍ବାସନ ଦଣ୍ଡ ଦିଆଗଲା ଏବଂ ବ୍ରହ୍ମଦେଶର ରେଙ୍ଗୁନ୍‌ରେ ତାଙ୍କର ଶାସ୍ତି କାଟିବାକୁ ହେଲା । ତା ଆଗରୁ ପ୍ରାୟ ତାଙ୍କ ଆଖି ଆଗରେ ତାଙ୍କ ପୁଅ ଓ ନାତି ମାନଙ୍କୁ ହତ୍ୟା କରାଯାଇ ଥିଲା । ଏହା ପରେ ଅନ୍ୟ ସବୁ ଦଣ୍ଡ ଶରବତ୍‌ପରେ ଖଡ଼୍‌ଗାଘାତ ପରି । କେବଳ ଗୋଟିଏ ଜିନିଷ, ଗୋଟିଏ ଅଭିବ ଲାଗି ବୃଦ୍ଧ ବାହାଦୁରଶାହ ଶେଷ ପର୍ଯ୍ୟନ୍ତ କାନ୍ଦୁଥିଲେ । ତାହା ଏହି ଅଭାବ ଯେ ତାଙ୍କର ଶେଷ ଶୟନ ଅର୍ଥାତ କବର ମାତୃଭୂମିରେ ହୋଇ ପାରିବ ନାହିଁ । ବାହାଦୁରଶାହ ଉର୍ଦ୍ଦୁର ପ୍ରସିଦ୍ଧ କବି । ସେ ଜଫର ଉପନାମରେ ଲେଖୁଥିଲେ । ତାଙ୍କର ଏକ ପ୍ରସିଦ୍ଧ ଗଜଲ୍‌ର ଏକ ଅଂଶ ହେଲା,

କିତନା ବଦନସୀବ ଜଫର ଦଫନ କେ ଲିୟେ
ଦୋ ଗଜ ଜମିନ ନ ମିଲି ସକ କୁଏ ୟାର ମେଁ ।

"ଜଫର କ ହତଭାଗ୍ୟ, ତାକୁ ପ୍ରୀସ୍ତ କଡ଼ରେ ଶେଷ ସ୍ୱେନ ଲାଗି ଦୁଇଗଜ ମାଟି ମଧ୍ୟ ମିଳାଲ ନାହିଁ ।"

ହତଭାଗ୍ୟ ଜଫର ନିର୍ବାସିତ ହେଲେ ବ୍ରହ୍ମଦେଶକୁ । କିନ୍ତୁ ନିୟତିର ପରିହାସ ଯେ ସେହି ବ୍ରହ୍ମଦେଶର ରାଜାଙ୍କୁ ନିର୍ବାସିତ ହୋଇ ଶେଷ ଜୀବନ କଟାଇବାକୁ ପଡ଼ିଲା ଭାରତ ବର୍ଷରେ ଏବଂ ତା ମଧ୍ୟ ଏକ ଅଜ୍ଞାତ କ୍ଷୁଦ୍ର ବନ୍ଦରରେ । ମହାରାଷ୍ଟ୍ରର ରତ୍ନଗିରି ନିକଟବର୍ତ୍ତୀ ସିନ୍ଧୁ ଦୁର୍ଗ । ଏଠାରୁ ଶିବାଜୀଙ୍କ ନୌ ସେନାପ (ମରାଠୀରେ ସର୍ ଖେଲ୍, ଇଂରେଜୀରେ ଆଡ଼ମିରାଲ) କୋଣାର୍କି ଅଙ୍ଗ୍ରେ ଇଂରେଜ ଓ ପର୍ତ୍ତୁଗୀଜ୍ ନୌ ଶକ୍ତି ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ମରାଠା ନୌଶକ୍ତିର ତିରୋଧାନ ସଙ୍ଗେ ସଙ୍ଗେ ସମସ୍ତ କୋଙ୍କଣ ଉପକୂଳ (ବମ୍ବେଠାରୁ ଗୋଆ ପର୍ଯ୍ୟନ୍ତ) ଗଭୀର ସୁସୁପ୍ତିରେ ନିମଗ୍ନ ହେଲା । ବାହାଦୁର ଶାହ ତ ଥିଲେ ବୃଦ୍ଧ । କିନ୍ତୁ ବ୍ରହ୍ମଦେଶର ଶେଷରାଜା 'ଥିବ୍' ସତେଇଶ ବର୍ଷର ଯୁବକ । କଥିତ ଅଛି ଯେ ତାଙ୍କୁ ନିଜର ଜିନିଷ ନେବାକୁ ମାତ୍ର ଦଶମିନିଟ ସମୟ ଦିଆଯାଇ ଥିଲା । ଇଂରେଜ ଏଠି ତାଙ୍କ ଲାଗି ଏକ ପ୍ରାସାଦ ତିଆରି କରି ଦେଇଥିଲେ ଏବଂ ସେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୯୧୬) ଏଠି ରହୁଥିଲେ । ବର୍ତ୍ତମାନ ସେ ପ୍ରାସାଦ ହୋଇଛି ଏକ ପଲିଟେକନିକ ଏବଂ ତାଙ୍କର ବଂଶଧର ମାନେ କିଏ ଡ୍ରାଇଭର, କିଏ ମିସ୍ତ୍ରୀ ଇତ୍ୟାଦି । ବାହାଦୁର ଶାହଙ୍କ ବଂଶଧରମାନଙ୍କ ଅବସ୍ଥା ତଦ୍ରୂପ । ତେବେ ବାହାଦୁର ଶାହ ଅମର । ଶେଷ ମୋଗଲ ସମ୍ରାଟ ବୋଲି ନୁହେଁ । ତାଙ୍କ ବହୁ ଆଗରୁ ପ୍ରମାଣିତ ହୋଇ ସାରିଥିଲା ଯେ ମୋଗଲ ସମ୍ରାଟ ଏକ ହାସ୍ୟକର ପ୍ରତିଷ୍ଠାନ । ବାହାଦୁର ଶାହଙ୍କ ପିତାମହ ଶାହ ଆଲମ ଦ୍ୱିତୀୟଙ୍କ ବିଷୟରେ କଥିତ ଥିଲା ।

ଶାହଆଲମ ( ଅର୍ଥ ସୃଷ୍ଟିର ସମ୍ରାଟ )
ଦିଲ୍ଲୀ ସେ ପାଲମ (ଅର୍ଥାତ ରାଜ୍ୟ ଦିଲ୍ଲୀରୁ ପାଲମ,
ଯେଉଁଠି ବର୍ତ୍ତମାନ ଦିଲ୍ଲୀ ବିମାନ ବନ୍ଦର )

ବାହାଦୁର ଶାହଙ୍କର ଥିଲା କବିତ୍ୱ ଶକ୍ତି । ନିଜେ ଉଲ୍ଲେଖଯୋଗ୍ୟ କବି ତ ଥିଲେ । କିନ୍ତୁ ତାଠାରୁ ବଡ଼ କଥା ଥିଲା ତାଙ୍କର ଗୁଣଗ୍ରାହିତା । ତାଙ୍କର କ୍ଷମତା ପ୍ରାୟ ଲାଲକିଲ୍ଲା ମଧ୍ୟରେ ସୀମିତ ଥିଲା । କିନ୍ତୁ ତାଙ୍କ ରାଜସଭାରେ ଯେତେ ମହାନ କବି ଥିଲେ ତା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ତାଙ୍କର ସଂରକ୍ଷଣ ପାଇ ବହୁ ପ୍ରତିଭାର ବିକାଶ ହୋଇ ପାରିଥିଲା । ତଥାପି ସେ ବୋଧହୁଏ ଅନେକ ଆଗରୁ ତାଙ୍କର ଓ ତାଙ୍କ ଶ୍ରେଣୀର ଶେଷ ପରିଣତି ଜାଣି ବୁଝି ପାରିଥିଲେ । ତାଙ୍କର କବିତାରେ ଦେଖିବାକୁ ମିଳେ ଏକ ଘୋର ହତାଶା । ତାଙ୍କର ଏକ ଗଜଲରେ ସେ କହିଛନ୍ତି ।

ନଁ କିସିକେ ଆଁଖକା ନୂରହୁଁ, ନ କିସିକେ ଦିଲ୍‌କା କରାର ହୁଁ,
ଜୋ କିସିକେ କାମ ନ ଆସକା, ମୈଁ ଏକ ମୁସ୍ତଗୁବାର ହୁଁ ।

( ମୁଁ କାହା ଆଖିର ଜ୍ୟୋତି ନୁହେଁ, କାହା ହୃଦୟର ଶାନ୍ତି ନୁହେଁ
ମୁଁ ମୁଠାଏ ଧୂଳି ଯାହାକି କାହାର ଦରକାରରେ ଲାଗିଲି ନାହିଁ ।)

ତେବେ ଶେଷ ପର୍ଯ୍ୟନ୍ତ ସେ ନିଜର ଆତ୍ମସମ୍ମାନ ଏବଂ ଦେଶାତ୍ମବୋଧ କାହାକୁମାନ କରି ରଖିଥିଲେ । ସେ ସମୟରେ ଇଂରେଜ ମାନଙ୍କର ଭାରତୀୟଙ୍କ ପ୍ରତି ଏପରି ତାଚ୍ଛଲ୍ୟଭାବ ଆସି ନଥିଲା ଏବଂ କେତେକ ଇଂରେଜ ଉର୍ଦ୍ଦୁ ଭାଷାରେ କବିତା ମଧ୍ୟ ଲେଖୁଥିଲେ । ସିପାହୀ ବିଦ୍ରୋହ ସମୟରେ ଜଣେ ଇଂରେଜ ଅଫିସର ତାଙ୍କ ପାଖକୁ ଲେଖି ପଠାଇଥିଲେ ।

ଦମ୍‌ଦମେ ମେଁ ଦମ୍ ନହିଁ, ଅବ୍ ଖାକ୍ ହୋଁ ଜିଂଶକା ।
ବସ୍, ବହାଦୁରଶାହ ଚଲ୍ ଚୁକା, ତେଗ୍ ହିନ୍ଦୁସ୍ତାନକା ।

(ବାହାଦୁର ଶାହ, ତୁମର ଦମଦମା ନାମକ ତୋପରେ ଆଉ ଦମ୍ ନାହିଁ । ଯୁଦ୍ଧର ଚେଷ୍ଟା ବୃଥା । ଭାରତର ଅସିଚାଳନା ଶେଷ ହେଲା ।)

ତାର ଉତ୍ତର ସେ ଏକ କବିତାରେ ଦେଲେ :

ହିନ୍ଦୟୋଁ ମେ ବୁ ରହେଗି ଯବ ତଲକ ଇମାନ କି
ତବ ତୋ ଲନ୍ଦନ୍ ତକ ଚଲେଗି ତେଗ୍ ହିନ୍ଦୁସ୍ତାନ କି ।

(ଭାରତୀୟଙ୍କ ମଧ୍ୟରେ ଯେ ପର୍ଯ୍ୟନ୍ତ ବିଶ୍ବାସ ଶକ୍ତି ମଧ୍ୟ ଥିବ, ଭାରତର ତରବାରୀ ଲଣ୍ଡନ ପର୍ଯ୍ୟନ୍ତ ମଧ୍ୟ ପ୍ରଦର୍ଶିତ ହେବ । ) ତାଙ୍କ ଉକ୍ତି କେତେକାଂଶରେ ସଫଳ ହୋଇଛି ।

ଥିବ୍‌ବଙ୍କ ବ୍ରହ୍ମଦେଶରେ ସମାଧି ଭିକ ଇତିହାସରେ ସ୍ଥାନ ଅଛି କି ନାହିଁ ସେ ବିଷୟରେ ମୋର କୌଣସି ଧାରଣା ନାହିଁ । ତେବେ ବ୍ରହ୍ମଦେଶ ସରକାର ତାଙ୍କର ଶେଷ ସ୍ୱାଧୀନ ରାଜାଙ୍କର ସ୍ମୃତିରକ୍ଷା ବିଷୟରେ କିଛି କରିଥିବାର ମୁଁ ଜାଣେ ନାହିଁ । କିନ୍ତୁ ବାହାଦୁରଶାହାଙ୍କ ଲାଗି ସରକାରୀ ଚେଷ୍ଟାର ଆବଶ୍ୟକତା ନାହିଁ । (ଅବଶ୍ୟ ସେଥିରେ ହେଲା କରାଯାଇ ନାହିଁ) ଦିଲ୍ଲୀର ଲାଲକିଲ୍ଲା ହିଁ ତାଙ୍କର ସ୍ମାରକ । ଏବଂ ତାଠାରୁ ବଡ଼ ତାଙ୍କର ଓ ତାଙ୍କର ସମସାମୟିକ ମାନଙ୍କର ସାହିତ୍ୟିକ ଅବଦାନ ।

ହତଭାଗ୍ୟ ଜଫର ବହୁଦିନରୁ ଇହସଂସାରରୁ ଗଲେଣି । ତେବେ ତାଙ୍କ କାହାଣୀ ମନେ ପକାଇଲେ ସ୍ୱତଃ ସ୍ଫୂର୍ତ୍ତି ଭାବେ ମୁହଁରୁ ବାହାରି ଆସେ,

"ଜିନ୍ଦାବାଦ, ଶାହାନ୍‌ଶାହ ବାହାଦୁରଶାହ"



# ତିନି ନାୟିକା

ମୋଗଲ ସାମ୍ରାଜ୍ୟର ପ୍ରତିଷ୍ଠାତା ବାବର । ପୁରା ନାମ ଜହିରୁଦ୍ଦିନ ମୁହମ୍ମଦ ବାବର । କିନ୍ତୁ ସେ କେବେ ହେଲେ ନିଜକୁ ମୋଗଲ କହି ନାହାନ୍ତି । ଆପଣ ଯଦି ତାଙ୍କୁ ମୋଗଲ କହିଥାଆନ୍ତେ ତେବେ ଆପଣଙ୍କ ଭାଗ୍ୟରେ କଣ ଘଟିଥାନ୍ତା କହିବା ମୁସ୍କିଲ । ହୁଏତ ଗରଦାନ ଯାଇଥାନ୍ତା । ସେ ଜଣେ ଉଚ୍ଚକୋଟୀର କବି ଓ ଲେଖକ ଥିଲେ । ବିଶେଷ କରି ତାଙ୍କ ଆତ୍ମଜୀବନୀ "ବାବର ନାମା" ପୃଥିବୀର ସାହିତ୍ୟିକ ଗନ୍ଥାଘରର ଅମୂଲ୍ୟ ସମ୍ପଦ । ତାଙ୍କ ଲିଖିତ ଏକ ଫରସୀ କବିତାର ମୋଟାମୋଟି ଅନୁବାଦଟି ଏହିଭଳି :

"ଯଦି ମୋଗଲ ଦେବଦୂତ ମଧ୍ୟ ହୁଏ, ତାହେଲେ
ବି ସେ ନୀଚକର୍ମରେ ପ୍ରବୃତ୍ତ ହେବ । ଏହା ସ୍ୱର୍ଣ୍ଣା-
କ୍ଷରରେ ଲିପିବଦ୍ଧ ଯେ ମୋଗଲ ନାମ ହିଁ ଘୃଣ୍ୟ ।
ମୋଗଲ ଲଗାଇଥିବା ଫସଲକୁ କେହି ଛୁଇଁବ
ନାହିଁ । କାରଣ ମୋଗଲ ବୀଜ ହିଁ ଅତି ନିକୃଷ୍ଟ ।"

କେବଳ ଏହିଠାରେ ନୁହେଁ । ନାନା ସ୍ଥାନରେ ଗଦ୍ୟ ଓ ପଦ୍ୟରେ ସେ ନିଜର ମତ ସ୍ପଷ୍ଟ କରି ଯାଇଛନ୍ତି । ଅଥଚ ଏହି ମୋଗଲ ନିନ୍ଦୁକଙ୍କ ନାମ ଚିରକାଳ ପାଇଁ ଇତିହାସ ପୃଷ୍ଠାରେ ରହିଗଲା ମୋଗଲ ସାମ୍ରାଜ୍ୟର ପ୍ରତିଷ୍ଠାତା ରୂପେ । ଏହାଠାରୁ ବଡ଼ ପରିହାସ ଆଉ କଣ ହୋଇପାରେ ?

ଥରେ ସେ ସମରକନ୍ଦ ଓ ଉଜ୍‌ବେକିସ୍ଥାନ ମଧ୍ୟବର୍ତ୍ତୀ ଅଞ୍ଚଳରେ ଗୋଟିଏ ଝରଣା ପାଖରେ ପହଞ୍ଚି ସେଠି ପାଣି ପିଇଲେ । ସେଠି ତାଙ୍କ ସ୍ୱରଚିତ କବିତାର ଦୁଇଛନ୍ଦ ପଥରରେ ଖୋଳାଇ ଦେଇଥିଲେ । ସେ କବିତାର ଅର୍ଥ ହେଲା :

"ମୋ ପରି କେତେ ଆସିଲେ, ଏଠି ବିଶ୍ରାମ ନେଲେ ଓ ଚାଲିଗଲେ । ଆଖି ପତା ପଡ଼ିଲା ବେଳକୁ ଆଉ ନାହାନ୍ତି । ଯଦି ମୋର ବାହୁବଳରୁ ସଂସାରଟାକୁ ମଧ୍ୟ

ଜୟ କରେ, ତେବେ ମଧ୍ୟ ସଂସାର ଏଠି ରହିଯିବ ଓ ମୁଁ ଖୁଜିଯିବି । କବରରେ ଏକୁଟିଆହିଁ ରହିବାକୁ ପଡ଼ିବ ।"

ସେତେବେଳେ ବାବରଙ୍କର ବୟସ ମାତ୍ର କୋଡ଼ିଏ । ବାବରଙ୍କର ଜୀବନ ଅଘଟଣ ଘଟଣା ବହୁଳ । ଆଜି ସେ ସିଂହାସନ ଚ୍ୟୁତ ଫକିର ଓ ପରଦିନ ପୁଣି ସିଂହାସନ । ଏସବୁ ଭିତରେ କିନ୍ତୁ ଏକ ଅଦ୍ଭୁତ ନିର୍ଲିପ୍ତତା ଓ ଗଭୀର ଦୃଷ୍ଟିରେ ସବୁ ଦେଖି ଯିବାର ଏକ ଅଦମ୍ୟ ସ୍ପୃହା ତାଙ୍କ ଲେଖାରେ ସ୍ପଷ୍ଟ । ତାଙ୍କର ଏକ ପାରସୀ କବିତାକୁ ଓଡ଼ିଆ ଅକ୍ଷରରେ ଦେଉଛୁ । ଅବଶ୍ୟ ଅନୁବାଦ ଦେଲୁ । ଆଶାକରେ ଆପଣ ତାର କିଛି ସ୍ୱାଦ ପାଇ ପାରିବେ ।

"ନୀମ୍ ନାନେ ଗର୍ ଖୁରଦ୍ ମର୍ଦେ ଖୁଦାୟ
ବଜଲେ ଦରବେଶାଁ କୁନଦ୍ ନୀମେ ଦିଗର୍ ।
ହପ୍ତ ଇକଲିମ୍ ଅର୍ ବଗୀରଦ୍ ପାଦଶାହ୍
ହମ ଚୁନାଁ ଦର ବନ୍ଦେ ଇକଲିମେ ଦିଗର୍ ।"

ଅର୍ଥ :—ଯଦି ଜଣେ ଭକ୍ତ ପାଖରେ ଖଣ୍ଡିଏ ରୁଟି ଥାଏ, ତେବେ ସେ ତାକୁ ଦୁଇଖଣ୍ଡ କରି ଖଣ୍ଡିଏ ଖାଇବ ଓ ଅନ୍ୟ ଖଣ୍ଡ ସାଧୁ (ଦରବେଶ) ମାନଙ୍କ ମଧ୍ୟରେ ବାଣ୍ଟିଦେବ । କିନ୍ତୁ ଜଣେ ରାଜା ପାଖରେ ଯଦି ସାତଟା ରାଜ୍ୟ ଥାଏ, ତେବେ ମଧ୍ୟ ସେ ଆଉ ଗୋଟିଏ ରାଜ୍ୟଲାଗି ଲୋଭ କରିବ ।

ବାବରଙ୍କର ପ୍ରବଳ ଆତ୍ମବିଶ୍ୱାସ ସବୁଠାରୁ କଠିନ ପରିସ୍ଥିତି ମାନଙ୍କରେ ତାଙ୍କୁ ସହାୟ ହୋଇଥିଲା । ଅନେକ ସମୟରେ ମୁଷ୍ଟିମେୟ ସୈନ୍ୟ ନେଇ ପରାକ୍ରମୀ ଶତ୍ରୁକୁ ଆକ୍ରମଣ କରିଛନ୍ତି । ରଣକୌଶଳ ବା ଟାକ୍‌ଟିକସ୍ ଉପରେ ତାଙ୍କର ଥିଲା ଈଶ୍ୱର ଦତ୍ତ ଅଧିକାର । ସବୁଠାରୁ ବାହାଦୁର ହେଲା ହାରି ପଳାଉ ଥିବା ସମୟରେ ମଧ୍ୟ ନିଜ ସେନା ଉପରେ ନିୟନ୍ତ୍ରଣ ରଖି ପାରୁଥିଲେ । ସେ ଯେତେ ଯୁଦ୍ଧ କରିଛନ୍ତି, ସେହି ପରିମାଣରେ ହାରିଛନ୍ତି ମଧ୍ୟ । କିନ୍ତୁ ଶେଷରେ ସେ ହିଁ ତ ସାମ୍ରାଜ୍ୟ ସ୍ଥାପନ କରିବାକୁ ସମର୍ଥ ହେଲେ ।

ଏହି ଅଶ୍ୱପୃଷ୍ଠର ଜୀବନରେ ମଳୟ ମଧ୍ୟ ବହିଥିବ । ସେ ବିଷୟରେ ନିଜ ଆତ୍ମଜୀବନୀରେ ସେପରି କିଛି ଲେଖି ନାହାନ୍ତି ଯଦିଚ ସାମାନ୍ୟ କିଛି କିଛି ଇଂଗିତ ମିଳେ । ଅବଶ୍ୟ ନିଜର ପ୍ରେମ କାହାଣୀ ନିଜେ କହିବାରେ ଲଜ୍ୟା ହେବା ସ୍ୱାଭାବିକ । କିନ୍ତୁ ଅନ୍ୟାନ୍ୟ ସୂତ୍ରରୁ ବାବରଙ୍କର ଏକ ପ୍ରେୟସୀଙ୍କର ପରିଚୟ ମିଳେ । ଗୁଲବଦନ୍

ବେଗମ୍ ତାଙ୍କୁ "ଅଫଗାନୀ ଆଗାଚ୍ଚ" ବୋଲି କହିଛନ୍ତି । ଅକବର ନାମା ଓ ତଓ୍ୱାରିଖ—ହାଫିସ୍ଟେ—ହେସମତଖାନରେ ମଧ୍ୟ ଏହାଙ୍କର ଅନେକ ଉଲ୍ଲେଖ ଅଛି । ଏହାଙ୍କୁ କେତେ ସ୍ଥାନରେ ବେଗା ବେଗମ୍ ମଧ୍ୟ କୁହାଯାଇଛି । ଆଗା ଓ ବେଗ୍ ଉଭୟ ଉଚ୍ଚ ସମ୍ମାନ ସୂଚକ । ବାବର ଆଫଗାନିସ୍ଥାନରେ ଥିଲାବେଳେ ୟୁସୁଫଜାଇ ଉପଜାତି ସହିତ ସମ୍ପର୍କରେ କେତେକ ସମସ୍ୟା ଦେଖା ଦେଲା । ୟୁସୁଫଜାଇ ଏବଂ ଅନ୍ୟ ଉପଜାତି ମାନଙ୍କର ସରକାର ବା ରାଜାଙ୍କ ସାଥିରେ ସମ୍ପର୍କଟା ସହଯୋଗ ଓ ସଂଘର୍ଷର ବିଚିତ୍ର ସମନ୍ୱୟ । ଉପଜାତି ମାନେ ରହନ୍ତି ଅନୁର୍ବର ଓ ଦୁର୍ଗମ ପାହାଡ଼ରେ । ଏଣୁ ଏମାନେ ଲୁଟପାଟ କରିବାକୁ ବାଧ୍ୟ । ପୁଣି ରାଜାଙ୍କ ସେନାରେ ଯୋଗ ଦେବା ଏହି ଉପଜାତିର ଯୁବକ ମାନଙ୍କର ଏକ ପ୍ରଧାନ କର୍ମ । କାରଣ ଏଥିରେ ଦରମା ତ ମିଳେ । ପୁଣି ବେଳେ ବେଳେ ସରକାରୀ ଲୁଟତରାଜର ସୁବିଧା ମଧ୍ୟ ମିଳେ । କେତେକ କାରଣରୁ ବାବରଙ୍କ ସଙ୍ଗେ ୟୁସୁଫଜାଇ ମାନଙ୍କର ଗୋଳମାଳ ହୋଇ ଯାଇଥିଲା ଓ ସେମାନେ ଯୁଦ୍ଧଲାଗି ପ୍ରସ୍ତୁତ ହେଉଥିଲେ । ବାବରଙ୍କର ଦୁଃସାହସର କଦାପି ଅଭାବ ନଥିଲା । ଆଗରୁ ୟୁସୁଫଜାଇ ଅଞ୍ଚଳ ଉପରେ ଆକ୍ରମଣ କରି କିଛି ଫଳ ହୋଇ ନଥିଲା । କାରଣ ୟୁସୁଫଜାଇ ମାନଙ୍କର ଗିରିଦୁର୍ଗ ଅର୍ଥାତ୍ ସଙ୍ଗର୍ ସବୁ ଅତି ମଜବୁତ୍ । ବାବର ନିଜେ ଫକିରର ବେଶରେ ସମସ୍ତ ଅଞ୍ଚଳ ଦେଖିବାକୁ ବାହାରିଗଲେ । ସେ ସମୟରେ ବକରିଦ୍ ପର୍ବ । ବାବର ଭିକ୍ଷା ମାଗି ମାଗି ୟୁସୁଫଜାଇ ସର୍ଦ୍ଦାର ମନ୍‌ସୁରଙ୍କ ତମ୍ବୁ ପାଖରେ ପହଞ୍ଚିଲେ । ସେଠି ଥିଲେ ମନ୍‌ସୁରଙ୍କ କନ୍ୟା ମୁବାରିକା । ଚାରି ଚକ୍ଷୁର ମିଳନ ହେଲା । ମୁବାରିକା ଫକିରଙ୍କୁ ଭିକ୍ଷା ଦେଲେ ଦୁଇଖଣ୍ଡ ନାନ୍ ରୋଟି ଆଉ ତା ଭିତରେ ମାଂସ । ବାବର ଆଉ ଖାଇବେ କଣ ? ଭିକ୍ଷାନ୍ନକୁ ଗୋଟିଏ ବିଶେଷ ପଥର ତଳେ ଚାପା ଦେଇ ସଙ୍ଗେ ସଙ୍ଗେ ଫେରି ଆସିଲେ ଏବଂ ମନସୁରଙ୍କ ଝିଅ ସହିତ ବିବାହର ପ୍ରସ୍ତାବ ପଠାଇଲେ । ୟୁସୁଫଜାଇ ମାନେ ନିଜ ଉପଜାତି ବାହାରେ ଝିଅ ଦିଅନ୍ତି ନାହିଁ । ଏଣୁ ଉତ୍ତର ଦେଲେ ଯେ ମନସୁରଙ୍କର କୌଣସି କନ୍ୟା ନାହିଁ । ବାବର ତାଙ୍କୁ ସେଇ ବିଶେଷ ପଥର ଲେଉଟାଇ ରୁଟି ବାହାର କରିବାକୁ କହିଲେ । ଆଉ ନାହିଁ କରିବାର ଉପାୟ ନଥିଲା । ବିବାହର ପ୍ରଥମ ବର୍ଷରେ ରାଣୀ ମୁବାରିକା ନିଜର ପିତୃକୁଳ ୟୁସୁଫଜାଇ ମାନଙ୍କ ପ୍ରତି ମିତ୍ରତାର ଭିକ୍ଷା ମାଗିଥିଲେ ଏବଂ ବାବର ତା ସ୍ୱୀକାର କରିଥିଲେ ।

ବାବରଙ୍କର ଶେଷ ଇଚ୍ଛା ଥିଲା କାବୁଲର ଏକ ବଗିଚାରେ ମୁକ୍ତ ଆକାଶତଳେ ତାଙ୍କୁ କବର ଦିଆଯିବ ଏବଂ କବର ଉପରେ କୌଣସି ଛାତ ହେବ ନାହିଁ ଏବଂ ସେଠି କେହି ଦରୱାନ୍ ମଧ୍ୟ ନଥିବେ । ବାବରଙ୍କ ମୃତ୍ୟୁ ପରେ ବିବି ମୁବାରିକା ବାବରଙ୍କ ଶବ ନେଇ ବାହାରିଲେ କାବୁଲ୍, ବଲ୍ଲଭଙ୍କର ଶେଷ ଇଚ୍ଛା ପୂରଣ କରିବାକୁ । ଶାହେ କାବୁଲ ପାହାଡ଼ର ଢାଲୁରେ ବାବରଙ୍କ ଶେଷ ଶୟନ କରାଇ

ଦିଆଗଲା । ଏହାପରେ ମୁବାରକା ଆକବରଙ୍କ ରାଜତ୍ୱ କାଳରେ ଜୀବିତ ଥିଲେ ଏବଂ ତାଙ୍କର ବହୁତ ସମ୍ମାନ ଥିଲା ।

ବାବରଙ୍କ ଅନୋଖା କାହାଣୀରେ । ପ୍ରଥମ ନାମ ସଲିମ । ସିଂହାସନ ଆରୋହଣ କରି ନୂତନ ନାମ ଗ୍ରହଣ କଲେ ନୁରୁଦ୍ଦିନ ମୁହମ୍ମଦ ଜାହାଙ୍ଗୀର ପାଦଶାହା ଗାଜୀ । ତାପରେ ସେ କଣ କଲେ ତା ଏକ ଭିନ୍ନ ଶିରଃପୀଡ଼ା (ଯଥା—ଶେର୍ ଆଫଗାନର ମୃତ୍ୟୁ, ନୁର୍‌ଜାହାନଙ୍କର ସାମ୍ରାଜ୍ଞୀ ହେବା ଇତ୍ୟାଦି) । ବର୍ତ୍ତମାନ ଯୁବରାଜ ସମୟର ଘଟଣା କୁଆଯାଉ । କଥିତ ଅଛି ଯେ ସେ ଅନାରକଲି ନାମ୍ନୀ ଏକ ସୁନ୍ଦରୀ ଦାସୀର ଖାପଟରେ ପଡ଼ି କୁଳର କଳଙ୍କ ହେବାର ସମ୍ଭାବନା ଦେଖାଯିବାରୁ ପିତା ଆକବର ଏକ ସରକାରୀ କର୍ମ ଦେଖାଇ ସେଠାରୁ ଆଗ ସଲିମ୍‌ଙ୍କୁ ବିଦା କଲେ ଓ କଳିର ମୂଳ ଭିତ୍ତି ଅନାରକଲିଙ୍କୁ ଜୀଅନ୍ତା ଗୋଟିଏ କାନ୍ଥରେ ଭରତି କରି ଆଉ ଗୋଟିଏ କାନ୍ଥ ଠିଆ କରିଦେଲେ । ଅବଶ୍ୟ ମୁଁ ଏପରି ଟାମେଲା କରିବାର ଆବଶ୍ୟକତା ଏ ପର୍ଯ୍ୟନ୍ତ ବୁଝିପାରି ନାହିଁ । ନିଶ୍ଚୟ ମୋଗଲ ଅମଳତନ୍ତ୍ରରେ ଅତି ବିଚକ୍ଷଣ ଗୁମ୍‌ଖୁନ୍ ବିଶେଷଜ୍ଞ ମାନେ ଥିଲେ । ଲାସ୍ ଗାଏବ କରିବା ବିଦ୍ୟା କଣ ଆଜିର ?

ତେବେ କଥାଟା ଟ୍ରାଜେଡ଼ି ନିଶ୍ଚୟ । ଟ୍ରାଜେଡିର ସଫଳତା ହେଲା କାବ୍ୟ ସୃଷ୍ଟି । ଅନାରକଲିର କାହାଣୀ ଅନେକ ଲୋକଗୀତ ଓ ଅନେକ କାବ୍ୟର ବିଷୟ ବସ୍ତୁ । ସିନେମା ଯୋଗୁ ସମସ୍ତେ କାହାଣୀଟିକୁ ଜାଣି ଯାଇଛନ୍ତି । କାହାଣୀର ପ୍ରାମାଣିକତା ସମ୍ବନ୍ଧରେ ଯଦିଚ କେତେକ ସନ୍ଦେହ ଅଛି, ତଥାପି ଏହା ସତ୍ୟ ଯେ ଅନାରକଲୀ ପରି ଘଟଣା ସେତେବେଳେ ଘଟୁଥିଲା । କେବଳ ହତଭାଗିନୀର ମୃତ୍ୟୁର ପଛରେ କିଛିତ ହେର ଫେର ଥାଇପାରେ । ସେ ହତଭାଗିନୀ ଅବଶ୍ୟ । କିନ୍ତୁ ତାର ନିଷ୍ଫଳ ପ୍ରେମ ତାକୁ ଏକ ମହାନତା ମଧ୍ୟ ଦେଇଛି । ଏବଂ ସଂସାର ତାକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଛି । କାରଣ ସେ ପ୍ରେମର ଗୌରବରେ ତାର ଜୀବନର ତୁଚ୍ଛତାକୁ ଜୟ କରିବାକୁ ସମର୍ଥ ହୋଇଛି । ସେ ଟ୍ରାଜେଡିର ନାୟିକା । ସେ ଦିବ୍ୟାଙ୍ଗନା ।

କିନ୍ତୁ ମହାକାଳ ପଟ୍ଟ ପରିବର୍ତ୍ତନ କଲେ । ହେଉ ପ୍ରସିଦ୍ଧ ମୟୂର ସିଂହାସନରେ ବସିଲେ ଜଣେ ମୂର୍ତ୍ତିମାନ ପ୍ରହସନ । ଜହାନଦାର ଶାହ । ସେ ସଲିମ୍‌ଙ୍କ ପରି ପିଲା ନଥିଲେ । କିନ୍ତୁ ପ୍ରେମରେ ପଡ଼ିବା ଲାଗିତ ଆଉ ସରକାରୀ ରୁଲ୍‌ବୁକରେ ଉଚିତ ଭଳି ନିର୍ଦ୍ଧାରିତ ବୟସ ସୀମା ନାହିଁ । ଏ ମହିଳାଙ୍କ ନାମ ଲାଲ କୁଅଁର । ତାଙ୍କୁ ଏକାଥରକେ କରିଦେଲେ ଇମ୍ତିୟାଜ ବେଗମ୍ । ତାପରେ ଯାହା କଲେ ତାହା ଅତିଶୟ ହାସ୍ୟାସ୍ପଦ ।

ଲାଲକୁଅଁରର ଏକ ଭାଇ ସାରଙ୍ଗୀ ବାଦକ । ସେ ହୋଇଗଲା ମୁଲତାନର ଗଭର୍ଣ୍ଣର । ଖବନ୍ତୁ ମୁଲତାନ୍ ମୋଗଲ ସାମ୍ରାଜ୍ୟର ଦ୍ୱାର ପରି । ସେଠାରୁ ଇରାନର ଆକ୍ରମଣ ଓ ଆଫଗାନ୍ ଡକାୟତ ଉଭୟ ସମ୍ଭାଳିବାକୁ ହେବ । ଏଣୁ ସାରଙ୍ଗୀ ବାଦକ ସେଠି ଯେଉଁ ରାଗ ପ୍ରସ୍ତୁତ କରିଥିବେ ତା ଅନୁମେୟ ।

ବାଦଶାହ ଓ ଲାଲକୁଅଁର ପ୍ରକାଶ୍ୟ ରାସ୍ତାରେ ମଦ୍ୟପାନ କରୁଥିଲେ । ମନେହୁଏ ଆଜିକାଲିର ଗ୍ସ ଦୋକାନ ପରି ସେତେବେଳେ ଦିଲ୍ଲୀରେ ଯତ୍ର ତତ୍ର ମୈଖାନା ବା ମଦ ଦୋକାନ । ଏବଂ ରାସ୍ତାରେ ଠିଆହୋଇ ଟେକ୍ କରି ଏକ ପାତ୍ର ମାରିଦେଇ ହେଉଥିଲା । ସେହିପରି ଦୋକାନ ଦୋକାନ ବୁଲି ଆପଣ ଘରକୁ ଫେରି ପାରନ୍ତି ବା ନର୍ଦ୍ଦମାରେ ଗଡ଼ିପାରନ୍ତି; ଯେପରି ରୁଚି । ସାଧାରଣତଃ ସମ୍ଭ୍ରାନ୍ତ ଲୋକେ ଚାଲି କରି ଯାଉନଥିଲେ । ସହର ଭିତରେ ଯାନ ଥିଲା ପାଲିଙ୍କି ବା ସୁସଜ୍ଜିତ ବଳଦଗାଡ଼ି ଯାହାକୁ ରଥ ମଧ୍ୟ କୁହାଯାଉଥିଲା । ହଜୁର ବାଦଶାହ ସଲାମତ ମଧ୍ୟ ତାଙ୍କ ପିଆରୀ ଲାଲକୁଅଁରକୁ ବଗଲଦବା କରି ଏହି ଦୋକାନ ରାଉଣ୍ଡରେ ବାହାରୁଥିଲେ । ସେ ସମୟରେ ଅମୀର ଉମ୍ରା ଓ ଅନ୍ୟାନ୍ୟ ଭଦ୍ରଲୋକ ବାଦଶାହ ରାଉଣ୍ଡରେ ଥିଲାବେଳେ ଘରୁ ବାହାରନ୍ତି ନାହିଁ । ତେବେ ରାସ୍ତାର ଲୋଫର ଶ୍ରେଣୀର ମଉଚ୍ଛବ କାରଣ ବାଦଶାହଙ୍କର ଦରିଆଦିଲ ଝଇରତ୍ ଯୋଗୁଁ କେହି ଭୁଷାର୍ତ୍ତି ରହନ୍ତି ନାହିଁ । ବାଦ୍‌ଶାହ ଦିନେ ଶାହି ବୈଲ୍‌ଗାଡ଼ି (ବଳଦଗାଡ଼ି) ରେ ରାଉଣ୍ଡ ଲାଗି ବାହାରିଛନ୍ତି । ସାଙ୍ଗରେ ଅବଶ୍ୟ ଲାଲକୁଅଁର । କିଛି ସମୟ ପରେ ବାଦଶାହ ବେଏକ୍ତିୟାର । ପ୍ରାୟ ବେହୋଶ । ଗାଡ଼ିବାଲା ମଧ୍ୟ ପ୍ରଚୁର ଚଢ଼େଇଛି । କୌଣସି ମତେ ବାଦଶାହ ଓ ଲାଲକୁଅଁରକୁ ଗାଡିରେ ଭର୍ତ୍ତିକରି ଲାଲକିଲ୍ଲା ଚାଲିଲା । ତା ମଧ୍ୟରେ ଗାଡ଼ିବାଲାର ମଧ୍ୟ ହୋଶ୍ ଗୁମ୍ । କିନ୍ତୁ ବଳଦ ଦୁଇଟା ଉତ୍କୃଷ୍ଟ ଓ ପ୍ରଶିକ୍ଷିତ । ସେ ବାଟ ଠିକ୍ ଚିହ୍ନନ୍ତି । ଠିକ୍ ଲାଲକିଲ୍ଲା ଭିତରକୁ ଗଲେ ଓ ଶାହିମହଲ ଆଗରେ ଠିଆହେଲେ । ଲାଲକୁଅଁରର କିଛିଟା ହୋଶ ଥିଲା । ଏଣୁ ସେ କୌଣସି ପ୍ରକାରେ ଟଳି ଟଳି ଭିତରକୁ ଗଲା । ବାଦଶାହଙ୍କ କଥା ଆଉ କେହି ଭାବି ନାହାନ୍ତି । ତାପରେ ବଳଦ ଦୁଇଟା ଆପେ ଆପେ ବୈଲ୍‌ଖାନା (ଗୁହାଳ) ଆଡ଼େ ଗଲେ ।

ହଠାତ୍ ଖୋଜା ପଡ଼ିଲା ବାଦଶାହ କାହାନ୍ତି । ଏ ଅତି ବିପଜ୍ଜନକ ପରିସ୍ଥିତି । କାରଣ ଘଟଣା ଯଦି ପ୍ରକାଶ ହୋଇଯାଏ ତେବେ କୌଣସି ତୈମୁର ବଂଶଜ କୁଆଡ଼ୁ ଭାଗ୍ୟ ପରୀକ୍ଷା ଲାଗି ବାହାରି ପଡ଼ିପାରେ ଓ ନିଜକୁ ସମ୍ରାଟ ଘୋଷଣା କରିଦେଇ ପାରେ । ଫଳ ଅତକମ୍‌ରେ ଗୃହଯୁଦ୍ଧ ଓ ଅବ୍ୟବସ୍ଥା । ହଠାତ୍ କୌଣସି ବୁଦ୍ଧିମାନ ଥାଳି ହଜିଲେ ମାଠିଆ ଅଣ୍ଡାଳିବା ପଦ୍ଧତିରେ ବୈଲ୍‌ଖାନା ଦେଖିବାକୁ ଗଲା ଏବଂ ବୈଲଗାଡି ଭିତରେ ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବାଙ୍କୁ

ଚଢ଼ି ପଡ଼ିଥିବା ଅବସ୍ଥାରେ କଲା । ଏ ଯାତ୍ରା ଦିଲ୍ଲୀ ସେହି ଦୁର୍ଭାଗ୍ୟରୁ ରକ୍ଷା ପାଇଗଲା ।

ଭଲଟାୟାର୍ କହିଛନ୍ତି ଯେ ଇତିହାସର ପୁନରାବୃତ୍ତି ହୁଏ । କିନ୍ତୁ ପ୍ରଥମ ଥର ତାହା ଟ୍ରାଜେଡି ଓ ଦ୍ୱିତୀୟ ଥର ତାହା ଫାର୍ସ । ଅନାରକଲୀ ଟ୍ରାଜେଡ଼ି ଓ ଲାଲକୁଅଁର ଫାର୍ସ । ତାହେଲେ ବିବି ମୁବାରକା ? ସେ ଏ ସବୁ ଉପରେ । ସେ ହେଲେ ରବୀନ୍ଦ୍ରନାଥଙ୍କ ଭାଷାରେ :

ତୁମି ରବେ ନୀରବେ ହୃଦୟେ ମମ
ନିଭୃତ ନିବିଡ଼ ପୂର୍ଣ୍ଣିମା ନିଶିଥିନୀ ସମ
ମମ ଜୀବନ ଯୌବନ, ମମ ଅଖିଲ ଭୁବନ
ତୁମି ଭରିବେ ଗୌରବେ ନିଶିଥିନୀ ସମ



# ଅର୍ଥନୀତି ଓ ଆଲାଉଦ୍ଦିନ୍

ଇତିହାସରେ ଯଦର ବସ୍ତ୍ରା ଛୁଞ୍ଚିଦେଲେ ଗଳିର ସଂଖ୍ୟା ଅନେକ । ବାରାଣସୀ ନଗରୀଠାରୁ ମଧ୍ୟ ବେଶି । ଆଜି ମୋର ଇଚ୍ଛା ଖିଲଜୀ ବଂଶ ନାମକ ରାଜପଥରୁ ବାହାରି ଥିବା ଗଳି ଭିତରେ ପଶିବା । ପଶିବା ମାତ୍ରେ ହିଁ ସ୍ୱନାମଧନ୍ୟ ଆଲ୍ଲାଉଦ୍ଦିନ୍ ଖିଲଜୀଙ୍କୁ ଭେଟିବାକୁ ପଡ଼େ, ତେବେ ସେ ଚୋଦାମରଦି ପଦ୍ମିନୀ କାହାଣୀ ପେଶ୍ କରିବାର କୌଣସି ମତ୍‌ଲବ ମୋର ନାହିଁ । ଏ ମହାଶୟଙ୍କର ଅନ୍ୟାନ୍ୟ କୀର୍ତ୍ତି ମଧ୍ୟ କମ୍ ରୋଚକ ନୁହେଁ । ଆଲାଉଦ୍ଦିନ୍ ଖିଲଜୀ ସମ୍ରାଟ୍ ଜଲାଲୁଦ୍ଦିନ୍‌ଙ୍କର ଜାମାତା । ଅନ୍ୟାନ୍ୟ ସୂତ୍ରରୁ ଜଣାଯାଏ ଯେ ଆଲାଉଦ୍ଦିନ୍ ଦୁଃସାହସୀ ଓ କୁଶଳ ସୈନିକ ଥିଲେ । କିନ୍ତୁ ଏପରି ସୈନିକ ସେ ଯୁଗରେ ଯଥେଷ୍ଟ ଥିଲେ । ଯୁଦ୍ଧରେ ପ୍ରତିପକ୍ଷର ଆକ୍ରମଣ ଅପେକ୍ଷା ସ୍ତ୍ରୀ ଓ ଶାଶୁଙ୍କର ବାକ୍ୟବାଣରେ ସେ ବେଶି ଜର୍ଜରିତ ହେଉଥିଲେ । ଶେଷରେ ବିରକ୍ତ ହୋଇ ଭାଗ୍ୟ ପରୀକ୍ଷା ଲଟେରୀ ଲଗାଇ ଦେଲେ—ଦେବଗିରି ଅଭିଯାନ । ଲୁଟ୍‌ରେ କଳ୍ପନାତୀତ ଧନରତ୍ନ ମିଳିଲା । ତା ହେଲା ଆଉ ଏକ ସମସ୍ୟା । ଏ ଲୁଟ୍ ମାଲ ରାଜକୋଷରେ ଦିଆଯିବ କି ନାହିଁ ? ଯଦି ଦିଆଯାଏ, କେତେ ଦିଆଯିବ ? ଆଲାଉଦ୍ଦିନ୍‌ଙ୍କର ଚିନ୍ତାଧାରା ମୌଳିକ ଥିବାରୁ ସେ ଏ ସମସ୍ୟାର ଏକ ମୌଳିକ ସମାଧାନ ବାହାର କଲେ । ସମ୍ରାଟ ଜଲାଲୁଦ୍ଦିନ୍‌ଙ୍କୁ ସାଡ଼ମ୍ବରେ ଦାଓ୍ୱତ୍ କଲେ ଏବଂ···ଖତମ୍ । ବର୍ତ୍ତମାନ ସେ ଆଲାଉଦ୍ଦିନ୍ ଖିଲଜୀ ସୁଲତାନ୍-ଏ-ହିନ୍ଦ୍ ।

ସୁଲ୍‌ତାନ୍ ହେବା ପରେ ତାଙ୍କର ମୌଳିକତା ନୂଆ ନୂଆ ଭଙ୍ଗୀରେ ପ୍ରକାଶମାନ ହେଲା । ମଦ ଖାଇବାରେ ଆଗରୁ ଥିବା ସବୁ ରେକର୍ଡ୍ ସେ ଭାଙ୍ଗିବାରେ ଲାଗିଲେ । ଏପରି ଲୋକର ତ ସଙ୍ଗୀ ଅଭାବ ହୁଅନ୍ତି ନାହିଁ, ଆଉ ବିଶେଷକରି ସେ ଯେତେବେଳେ ବାଦଶାହ । ଏ ପ୍ରକାର ମାଲ୍ ଯେ ଉଚ୍ଚଚିନ୍ତା ଓ ମହତ୍ତ୍ୱ ଆକାଂକ୍ଷାର ପରିପୋଷକ ଏକଥା ଅଜଣା ନୁହେଁ । କେଉଁ ଏକ ବିଶେଷ ମାନସିକ ଅବସ୍ଥାରେ ସେ ଘୋଷଣା କଲେ ଯେ ତାଙ୍କର ଦୁଇଟି କର୍ମ କରିବାର ଅଛି—(୧) ପୃଥିବୀ ଜୟ କରିବାକୁ ହେବ, ଓ (୨) ସମସ୍ତ ଜଗତକୁ ଏକ ନୂତନ ଧର୍ମରେ ଦୀକ୍ଷିତ କରିବାକୁ ହେବ ।

ହୁଲସ୍ଥୁଲ୍ କାଣ୍ଡ । ବାଦ୍‌ଶାହ୍ ଅତ୍ୟଧିକ ମଦ୍ୟପାନ କଲେ ବା ଦେଶ ବିଜୟର ଅଭିଳାଷ ପୋଷଣ କଲେ କାହାର କିଛି କହିବାର ନ ଥିଲା । ଏହା ରାଜୋଚିତ କର୍ମ ଓ ବାସନା । କିନ୍ତୁ ନୂତନ ଧର୍ମ ? ତୋବା ତୋବା । ମୁଲ୍ଲା ମହଲରେ ସୃଷ୍ଟି ହୋଇଥିବା ପ୍ରଚଣ୍ଡ ବିକ୍ଷୋଭ କ୍ରମେ ଜନତା ମଧ୍ୟକୁ ବ୍ୟାପିଗଲା । ରାଜାଙ୍କର ଇହକାଳ ଉପରେ ଅଧିକାର ଥାଇପାରେ, ମାତ୍ର ପରକାଳ ଉପରେ ହସ୍ତକ୍ଷେପ ଅସହ୍ୟ, ବିଶେଷକରି ସେମାନଙ୍କ ପକ୍ଷରେ ଯେଉଁମାନେ ଅନ୍ୟର ପରକାଳ ଉପରେ ନିର୍ଭର କରି ନିଜର ଇହକାଳ ଚଳାନ୍ତି ।

ସେତେବେଳେ ଦିଲ୍ଲୀର କୋତ୍‌ୱାଲ୍ (ସର୍ବୋଚ୍ଚ ପୋଲିସ୍ ଅଫିସର) ବୃଦ୍ଧ ଆଲାଉଲମୁଲ୍‌କ୍ । ଭଦ୍ରଲୋକ ଅତିରିକ୍ତ ମୋଟା ହୋଇଥିବାରୁ ଜଣେ ନ ଧରିଲେ ଉଠି ବସି ପାରୁ ନ ଥିଲେ, ଏଣୁ ଦରବାରରୁ ଛୁଟି ପାଇଥିଲେ । କେବଳ ବିଶେଷ ଦରକାର ହେଲେ ଆସୁଥିଲେ । କିନ୍ତୁ ତାଙ୍କର ଚକ୍ଷୁକର୍ଣ୍ଣ ସଜାଗ । ଜନତାର ନାଡ଼ୀ ଉପରେ ସବୁବେଳେ ଟିପ ରଖିଥାନ୍ତି । ସେ ସମ୍ରାଟଙ୍କୁ ସାବଧାନ କରିଦେଲେ—

(୧) ଖବରଦାର୍, ଧର୍ମ ସାଙ୍ଗରେ ଲାଗ ନାହିଁ, ସମ୍ଭାଳି ପାରିବ ନାହିଁ ।

(୨) ପୃଥିବୀ ଜୟର ଇଚ୍ଛା ସାଧୁ, କିନ୍ତୁ ତା ଆଗରୁ କେତେକ ଗୁରୁତର ସମସ୍ୟାର ସମାଧାନ ଆବଶ୍ୟକ । ପ୍ରଥମେ ବିଦ୍ରୋହୀ ଜମିଦାର ଓ ସେନାପତିମାନଙ୍କୁ ସାବାଡ଼ କରିବାକୁ ହେବ । ତା'ପରେ ଏହି ବାରମ୍ବାର ଘଟୁଥିବା ମଙ୍ଗୋଲ୍ ଆକ୍ରମଣକୁ ରୋକିବା ଦରକାର ।

ସମ୍ରାଟ୍ କେତେଟା ଆକାଶରେ ଉଡ଼ିବା ଛାଡ଼ି ମାଟିକୁ ଆସିଲେ । ଦୁଇଟି ଘଟଣା ଦ୍ୱାରା ଆଲାଉଲ୍‌ମୁଲକ୍‌ଙ୍କର ଚେତାବନୀର ସତ୍ୟତା ପ୍ରମାଣିତ ହେଲା । ଆଲାଉଦ୍ଦିନ୍‌ଙ୍କୁ ହତ୍ୟା କରିବାର ଏକ ଉଦ୍ୟମ ହେଲା ଏବଂ ମଙ୍ଗୋଲ୍‌ମାନେ ଦିଲ୍ଲୀର ଖୁବ୍ ନିକଟକୁ ଚାଲି ଆସିଥିଲେ । ଆଲାଉଦ୍ଦିନ ଏକ ଅତି ଆଧୁନିକ ବ୍ୟବସ୍ଥା ଗ୍ରହଣ କଲେ । ସମୁଦାୟ ଅବସ୍ଥା ପର୍ଯ୍ୟାଲୋଚନା କରି ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧରେ ଏକ ରିପୋର୍ଟ ଦେବା ପାଇଁ କମିଟିଟିଏ ଗଠନ କଲେ । ମୁଁ ଜାଣିବାରେ ଭାରତର ଇତିହାସରେ ଏହା ସର୍ବପ୍ରଥମ କମିଟି । ଆଗରୁ ଯଦି କମିଟି ବସିଥାଏ ତାର କୌଣସି ଇତିହାସ ନାହିଁ । କିନ୍ତୁ ତ, ଏ ନଶ୍ୱର ସଂସାରରେ ଇତିହାସ ଲେଖିବା ବିଷୟରେ ହିନ୍ଦୁମାନେ ଅତ୍ୟନ୍ତ ଢିଲା ଥିଲେ । ଆମର ମାଦଳା ପାଞ୍ଜି ଓ ଆସାମର ବୁରୁଞ୍ଜି ଏହାର ବ୍ୟତିକ୍ରମ । ଯଥା ସମୟରେ କମିଟି ଏକ ସାରଗର୍ଭକ ରିପୋର୍ଟ ପେଶ୍ କଲେ । ଅତି ଦୁଃଖର କଥା, ସେ ରିପୋର୍ଟର ନକଲ ନାହିଁ, ତେବେ କମିଟିର ସୁପାରିଶ ସମ୍ବନ୍ଧୀୟ ତଥ୍ୟ ଇତିହାସରୁ ବିଶେଷ କରି ଜିୟାଉଦ୍ଦିନ୍ ବରାନୀଙ୍କର ତାରିଖ୍-ଇ-ଫିରୋଜସାହିରୁ ମିଳେ । କମିଟିର ସୁପାରିଶ୍ ହେଲା

ଯେ ସୁଲତାନ୍ ବ୍ୟକ୍ତିଗତ ଭାବରେ ରାଜ୍ୟର ଶାସନ ବ୍ୟବସ୍ଥାରେ ବେଶୀ ଅଂଶ ଗ୍ରହଣ କରିବା ଆବଶ୍ୟକ। ଅର୍ଥାତ୍ ସୁଖ ଓ ସୁବିଧାଙ୍କର ପରିମାଣ ଓ ସଂଖ୍ୟା ହ୍ରାସ ପାଇବା ଦରକାର। ଅବଶ୍ୟ ସମ୍ରାଟ ବୃଦ୍ଧବୃଦ୍ଧ ହୁଅନ୍ତୁ ବୋଲି କହିବାର ମୂର୍ଖତା କେହି କରି ନ ଥିଲେ। ତାଛଡ଼ା କମିଟି ନିମ୍ନୋକ୍ତ ନିର୍ଦ୍ଦିଷ୍ଟ ସୁପାରିଶମାନ କରିଥିଲେ—

(୧) ମଦ୍ୟପାନର ବିଶେଷ ପ୍ରଚଳନ ହେତୁ ଲୋକଙ୍କ ମୁଣ୍ଡ ଖରାପ ହୋଇଯାଉଛି। ଫଳତଃ ସେମାନେ କାହାକୁ ମାନୁନାହାନ୍ତି ଓ ଅଯଥା ବକ୍‌ବକ୍ କରୁଛନ୍ତି।

(୨) ଉଚ୍ଚ ଅଧିକାରୀବର୍ଗ, ଅର୍ଥାତ୍ ଅମୀର୍-ଉମରାଙ୍କ ଭିତରେ ବହୁତ ବେଶି ବୈବାହିକ ସମ୍ପର୍କ ହେଉଥିବାରୁ ସମସ୍ତେ ସମସ୍ତଙ୍କ କୁଟୁମ୍ବ ହୋଇ-ଯାଉଛନ୍ତି। ସେମାନେ ଦଳବଦ୍ଧ ହୋଇ ସମ୍ରାଟଙ୍କୁ ମାନୁନାହାନ୍ତି।

(୩) ଜନତାର ଆର୍ଥିକ ଅବସ୍ଥା ବେଶୀ ସ୍ୱଚ୍ଛଳ ହୋଇଯିବାରୁ ସେମାନଙ୍କ ମନରେ ଗର୍ବ ହେଉଛି ଓ ସେମାନେ ବିଦ୍ରୋହ କରୁଛନ୍ତି।

ପ୍ରଥମ ଓ ତୃତୀୟ ସୁପାରିଶ୍ ଉପରେ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା। ଦ୍ୱିତୀୟ ସୁପାରିଶ ଉପରେ କାର୍ଯ୍ୟାନୁଷ୍ଠାନ ବୋଧହୁଏ ସମ୍ଭବ ହୋଇ ପାରି ନ ଥିଲା। ଆସ୍ତେ ଆସ୍ତେ ଜନସାଧାରଣଙ୍କଠାରୁ ଟଙ୍କା ପଇସା, ସୁନା ଇତ୍ୟାଦି କାଢ଼ି ନିଆଗଲା। ଉଦ୍ଦେଶ୍ୟ ହେଲା ଯେ ସେମାନେ ସଂସାର ଚଳାଇବାରେ ବ୍ୟସ୍ତ ରହିଲେ ଆଉ କୌଣସି ଗଣ୍ଡଗୋଳ ପାଇଁ ସମୟ ପାଇବେ ନାହିଁ। କିନ୍ତୁ ଏ କଟକଣାରୁ ହିନ୍ଦୁ ବ୍ୟବସାୟୀ ଗୋଷ୍ଠୀକୁ ଛାଡ଼ ଦିଆଯାଇଥିଲା। ସେତେବେଳେ ଦିଲ୍ଲୀ ଓ ଉତ୍ତର ଭାରତର ପ୍ରାୟ ସମସ୍ତ ବ୍ୟବସାୟ ମୁଲ୍‌ତାନି ଓ ସାହାମାନଙ୍କ ହାତରେ। ଉଭୟ ହିନ୍ଦୁ। ମୁଲତାନିମାନେ ନାନାସ୍ଥାନରୁ ଖାଦ୍ୟସାମଗ୍ରୀ, ଲୁଗାପଟା ଓ ଅନ୍ୟାନ୍ୟ ଜିନିଷ ଆମଦାନି କରୁଥିଲେ। ସାହାମାନେ ମହାଜନ। ଏମାନେ ବ୍ୟବସାୟଲାଗି ପୁଞ୍ଜି ଯୋଗାଉଥିଲେ। ଏମାନଙ୍କ ପାଖରୁ ଟଙ୍କା ପଇସା ବା ଓ୍ୱାର୍କିଂ କ୍ୟାପିଟାଲ କାଢ଼ିନେଲେ ସାରା ଦିଲ୍ଲୀ ଯେ ଟୋ ଟୋ ଉପାସରେ ମରିଯିବ ଏକଥା ଦରବାରୀଙ୍କ ପରି ସ୍ପଷ୍ଟ। ପୁଣି ବିଚରା ହିନ୍ଦୁ ବ୍ୟବସାୟୀର କୌଣସି ରାଜନୈତିକ ଅଭିଳାଷ ନ ଥିଲା। ଏଣୁ ସମ୍ରାଟଙ୍କ ପକ୍ଷରେ ସମ୍ପୂର୍ଣ୍ଣ ନିରାପଦ।

ଏହାପରେ ଆଉ ଏକ ବୈପ୍ଳବିକ ପଦକ୍ଷେପ—ଜମିଦାରୀ ଉଚ୍ଛେଦ। ତାର ପ୍ରଧାନ ଉଦ୍ଦେଶ୍ୟ ହେଲା ବିଦ୍ରୋହ ଦମନ ଓ ବିଦ୍ରୋହ କରିବା ଅସମ୍ଭବ କରିଦେବା। ଆଲାଉଦ୍ଦିନ ଠିକ୍ ବୁଝିଥିଲେ ଯେ ସାଧାରଣ ପ୍ରଜା ବିଦ୍ରୋହ କରନ୍ତି ନାହିଁ। ତାଙ୍କର ସାମାନ୍ୟ ସ୍ୱାର୍ଥ, ସାମାନ୍ୟ ସ୍ୱାର୍ଥ। ମଫସଲର ଜମିଦାରମାନେ ହିଁ ଏଥିରେ ମାତନ୍ତି କାରଣ ତାଙ୍କର ଅର୍ଥବଳ ଓ ଲୋକବଳ ଉଭୟ ଅଛି। ସାଧାରଣ ପ୍ରଜା ତାଙ୍କର

ବିରୁଦ୍ଧାଚରଣ କରିପାରିବେ ନାହିଁ । ଏହି ଜମିଦାର ଶ୍ରେଣୀର ମେରୁଦଣ୍ଡ ଭାଙ୍ଗିଦେଲେ ସମ୍ରାଟ୍ ନିରାପଦ । ଏତଏବ ସ୍ଥିର ହେଲା ଯେ ରୟତମାନେ ସରକାରଙ୍କୁ ଖଜଣା ଦେବେ । ଏଥିଲାଗି ସରକାରୀ କର୍ମଚାରୀ ମଧ୍ୟ ନିଯୁକ୍ତ ହେଲେ । ଜମିଦାରମାନଙ୍କର ଖଜଣା ଆଦାୟ କରିବା କ୍ଷମତା ରହିଲା ନାହିଁ । ଆଗରୁ ରାଜାମାନେ ଦେଇଥିବା ଜାଗୀର୍ ସବୁ ଖାସ କରାଗଲା । ଆଗରୁ ଜମିଦାରମାନେ ଅନନ୍ୟୋପାୟ ନ ହେବା ପର୍ଯ୍ୟନ୍ତ ରାଜକୋଷରେ ଖଜଣା ଜମା କରୁ ନଥିଲେ । ପରିବର୍ତ୍ତିତ ବ୍ୟବସ୍ଥାଯୋଗୁଁ କିଛି ପରିମାଣରେ ତୋଷରପାତ ହେବା ସତ୍ତ୍ୱେ ରାଜକୋଷକୁ ଯଥେଷ୍ଟ ବେଶି ରେକଡ ଅର୍ଥାତ୍ କ୍ୟାଶ ଆସିଲା ।

ତା'ପରେ ଆହୁରି କେତେକ ପଦକ୍ଷେପ ନିଆଗଲା । ସମ୍ରାଟଙ୍କ ବଳ ତାଙ୍କର ସେନା । ସେନାବାହିନୀ ସନ୍ତୁଷ୍ଟ ନ ରହିଲେ ସମ୍ରାଟ ନିରାପଦ ନୁହନ୍ତି । ଜଣେ ସିପାହୀଙ୍କୁ କେତେ ଦରମା ଦିଆଯିବ ତାହା ଅବଶ୍ୟ ରାଜକୋଷର ଅବସ୍ଥା ଉପରେ ନିର୍ଭର କରେ । ଦରମା ନିର୍ଦ୍ଧାରିତ ହେବା ପରେ ସେଥିରେ ଚଳିବା ପାଇଁ ଦରଦାମ କିପରି ହେବା ଦରକାର ତାହା ବିଚାର କରାଗଲା । ଉଦ୍ଦେଶ୍ୟ ହେଲା, ଦରମା ସୈନିକ ପରିବାର ଚଳିବାପାଇଁ ଯଥେଷ୍ଟ ହେବ, କିନ୍ତୁ ସେଥିରୁ କିଛି ବଳୁ ନଥିବ । ଚଳି ନ ପାରିଲେ ସେ ବିଦ୍ରୋହ କରିପାରେ । ଟଙ୍କା ଜମାକଲେ ସେ ଚାକିରି ଛାଡ଼ିଦେଇପାରେ ଓ ସ୍ୱାଧୀନ ଜୀବନଯାପନ କରିବାକୁ ଇଚ୍ଛାକରିପାରେ, ଅର୍ଥାତ୍ ଅମାନିଆ ହୋଇପାରେ । ଏଣୁ ଦରଦାମର ଓ ଦରମାର ଅତି ସୂକ୍ଷ୍ମ ସମନ୍ୱୟ ଆବଶ୍ୟକ ।

ଆଲାଉଦ୍ଦିନଙ୍କ ସମୟର ଦରମାହାର ସମ୍ବନ୍ଧୀୟ ତଥ୍ୟ ମୋ ପାଖରେ ନାହିଁ, ତେବେ ଅନ୍ୟ ସମୟର ତଥ୍ୟ ଉପରେ ଭିତ୍ତିକରି କିଛି ଆଲୋଚନା କରାଯାଉ । ଜଣେ ସୈନିକକୁ କେତେ ଦରମା ଦେବା ଉଚିତ ଏ ବିଷୟରେ ଜାହାଙ୍ଗୀର ଯୁବରାଜ ଥିବା ସମୟରେ ତାଙ୍କ ପିତା ଆକବରଙ୍କ ସହିତ କିଛି କିଛି ପତ୍ରବିନିମୟ ହୋଇଥିଲା, ଆଜିକାଲି ଅର୍ଥବିଭାଗ ସହିତ ଯେପରି ହୁଏ । ସେଥିରୁ ଜଣାପଡେ ଯେ ଜାହାଙ୍ଗୀର ତାଙ୍କ ସୱାର (ଅଶ୍ୱାରୋହୀ)ମାନଙ୍କୁ ମାସକୁ କୋଡିଏ ଟଙ୍କା ବେତନ ଦେଉଥିଲେ ଯାହାକି ଆକବର (ଅର୍ଥାତ୍ ତୋଡରମଲ୍ଲଙ୍କର ଅର୍ଥବିଭାଗ) ପନ୍ଦର ଟଙ୍କାକୁ କମାଇଦେବାକୁ ଚାହିଁଥିଲେ । ସେ ସମୟରେ ଟଙ୍କାକୁ ଅଢ଼େଇମହଣ ଅର୍ଥାତ୍ ଶହେ ସେର (ଏକ କ୍ୱିଣ୍ଟାଲରୁ କିଛି କମ୍) ଗହମ ମିଳୁଥିଲା । ଏ ବର୍ଷ ଗହମର ଖରିଦ ମୂଲ୍ୟ କ୍ୱିଣ୍ଟାଲପିଛା ପ୍ରାୟ ଏକଶହ ଷାଠିଏ ଟଙ୍କା । ଏଣୁ ଶହେ କ୍ୱିଣ୍ଟାଲ୍ ଦାମ୍ ହେଲା ପ୍ରାୟ ଦେଢଶହ ଟଙ୍କା । ତାହେଲେ ଜଣେ ସୱାର୍‌ର ଦରମା ହେଲା ଆଜିର ଟଙ୍କାରେ ମାସକୁ ପ୍ରାୟ ତିନିହଜାର ଟଙ୍କା ଯାହାକୁ ଟ ୨୨୫୦ଙ୍କାକୁ କମାଇ ଦେବାର ପ୍ରସ୍ତାବ ଥିଲା ।

ବାସ୍ତବିକ କିନ୍ତୁ ଏ ଦରମା ଯେତେ ପର୍ଯ୍ୟାପ୍ତ ଜଣାପଡ଼ୁଛି ତାହା ନଥିଲା । ସଓ୍ବାରକୁ ନିଜର ଘୋଡ଼ା ଓ ନିଜର ଅସ୍ତ୍ର ନେଇ ହାଜର ହେବାକୁ ପଡ଼ୁଥିଲା । ଘୋଡ଼ା ଓ ହତିଆରର ଖର୍ଚ୍ଚ ବୁଝ ହଜାର ଉପରେ । ସେ ସମୟରେ ଫ୍ରି ରେସନ୍ କି ଫ୍ରି ଡ୍ରେସ୍ ନ ଥିଲା । ଏ ଦରମା ସୃତରାଂ ଖୁବ୍ ବେଶି ନଥିଲା ଓ ଜାହାଙ୍ଗୀରଙ୍କ ଆପତ୍ତି ଯଥାର୍ଥ ଥିଲା । ଏ ଦରମାରେ ଚଳିଯାଇ ହେବ, ଆଉ ବେଶି କିଛି ନୁହେଁ । ଅବଶ୍ୟ ସେ ସମୟରେ ଲୋକେ ଅର୍ଥନୈତିକ କାରଣରୁ ସେନାରେ ଯୋଗ ଦେଉଥିଲେ । ପ୍ରସିଦ୍ଧ ଯୋଦ୍ଧା ଜାତିମାନେ ସାଧାରଣତଃ ଅତ୍ୟନ୍ତ ଅନୁର୍ବର ଅଞ୍ଚଳର ବାସିନ୍ଦା । କେତେଲୋକ ପ୍ରତିବର୍ଷ ବାହାର ନଗଲେ ସେ ସବୁ ଜାଗାରେ ଦୁର୍ଭିକ୍ଷ ପଡ଼ିଯିବ । ପୁଣି ସେନାରେ ରହିଲେ ଆଇନ ସଙ୍ଗତଭାବେ କିଛି ଉପାୟୁତିର ସୁବିଧା ଥିଲା ।

ଦରମା ତ ସ୍ଥିର ହୋଇଗଲା, କିନ୍ତୁ ଦରଦାମ କଣ୍ଟ୍ରୋଲ ନ ହେଲେ ତ ସବୁ ଭୁଷୁଡ଼ିଯିବ । ସେ ସମୟରେ ବଂଜାରା ନାମକ ଏକ ଜାତି ଥିଲେ । ଏମାନେ ମଧ୍ୟ ହିନ୍ଦୁ । ବଂଜାରାମାନେ ଯୋଡ଼ିଆ ବଳଦ ବେପାରୀ । ସମଗ୍ର ଉତ୍ତର ଭାରତର ପଣ୍ୟବହନ ବ୍ୟବସ୍ଥା ଉପରେ ଏମାନଙ୍କର ଏକଚାଟିଆ ଅଧିକାର । ଆଲାଉଦ୍ଦିନ ଏମାନଙ୍କ ଉପରେ ଗ୍ରୁପ ପକାଇଲେ । ତା'ଛଡ଼ା ଦେଶରେ ଶାନ୍ତି ଓ ସ୍ଥିରତା ବଜାୟ ରହିବା ଏମାନଙ୍କର ସ୍ୱାର୍ଥର ଅନୁକୂଳ କାରଣ ବାଟଘାଟରେ ଜିନିଷପତ୍ର ଉପରେ ଏମାନଙ୍କର ଲାଭକ୍ଷତି ନିର୍ଭର କରୁଥିଲା । ଠିକ୍ ସମୟରେ ସହରମାନଙ୍କରେ ଖାଦ୍ୟଦ୍ରବ୍ୟ ଆଣି ପହଞ୍ଚାଇବାର ଦାୟିତ୍ୱ ଏମାନଙ୍କୁ ଦିଆଗଲା । ତା'ପରେ ସେମାନଙ୍କୁ ସରକାରୀ ଏଜେଣ୍ଟଭାବରେ କୃଷକଠାରୁ କିଣିବାର କ୍ଷମତା ମଧ୍ୟ ଦିଆଗଲା । ଏମାନେ ହିଁ ସାଧାରଣ ବଣ୍ଟନ ବ୍ୟବସ୍ଥାର ପ୍ରଥମ ଘଟକ । ସେ ସମୟର ସମସ୍ୟା ମଧ୍ୟ ଅନେକଟା ଆଜିକାଲିର ସମସ୍ୟା ପରି । ମୁଦ୍ରାସ୍ଫୀତି, ପୁଞ୍ଜି ଲଗାଣ, ସରକାରୀ ବିତରଣ ବ୍ୟବସ୍ଥା ଆଜିପରି ସେ ସମୟର ସମସ୍ୟା ମଧ୍ୟ ଥିଲା । ସେ ସମୟର କାର୍ଯ୍ୟପ୍ରଣାଳୀ ଆଜିଠାରୁ ବେଶ୍ ପୃଥକ ନୁହେଁ, ଖାଲି ଯାହା ସ୍ଥଳବିଶେଷରେ ଟେକ୍‌ନୋଲଜିର ପ୍ରଭେଦ ।

ଆଲାଉଦ୍ଦିନ୍ ବୋଧହୁଏ ସୁଲତାନ୍ ରାଜତ୍ୱର ବା ପଠାନ୍ ରାଜତ୍ୱର ସର୍ବଶ୍ରେଷ୍ଠ ଶାସକ । ସେ ଠିକ୍ ବୁଝିଥିଲେ ଯେ ଥରେ ଆକ୍ରମଣ କରି ଲୁଟ୍‌ପାଟ କରିନେବା ଓ ସାମ୍ରାଜ୍ୟ ଚଳାଇବା ଅଲଗା ଅଲଗା କଥା । ପ୍ରଥମ କାର୍ଯ୍ୟ ପାଇଁ ଏକ ଦକ୍ଷ ସେନା ହିଁ ଯଥେଷ୍ଟ, କିନ୍ତୁ ସାମ୍ରାଜ୍ୟଲାଗି ଆବଶ୍ୟକ ଏକ ସୁଦୃଢ଼ ଅର୍ଥନୈତିକ ମୂଳଦୁଆ । ତାଙ୍କର ପରବର୍ତ୍ତୀ ସମ୍ରାଟ ଓ ସେମାନଙ୍କର ସାମନ୍ତମାନଙ୍କର ଶତ ଅପଚେଷ୍ଟା ସତ୍ତ୍ୱେ ମୁଲ୍‌ତାନ, ସାହା ଓ ବଂଜାରମାନଙ୍କୁ ନେଇ ଆଲାଉଦ୍ଦିନ ଯେଉଁ ଅର୍ଥନୈତିକ ସୌଧ ଗଢ଼ିଥିଲେ ତାହା ବାବରଙ୍କ ସମୟ ପର୍ଯ୍ୟନ୍ତ ଓ ତାପରେ ବି ଥିଲା । ଏହା ହିଁ ବାବରଙ୍କୁ ଭାରତବର୍ଷ

ପ୍ରତି ଆକୃଷ୍ଟ କରିଥିଲା । ବାବର ବି ବୁଝିଥିଲେ ଯେ ଭାରତବର୍ଷର ସୁଦୃଢ଼ ଅର୍ଥନୈତିକ ମୂଳଦୁଆ ଉପରେ ସାମ୍ରାଜ୍ୟ ଗଢ଼ାଯାଇ ପାରିବ ।

ଫରାସୀ ଭାଷାରେ ପ୍ରବାଦଟିଏ ଅଛି ଯେ ଯେତେ ପରିବର୍ତ୍ତନ ହୁଏ ସେତିକି ସବୁ ଆଗଭଳି ରହିଯାଏ (More things change, more they remain the same) । କଥାଟା ଆଦୌ ମିଥ୍ୟା ନୁହେଁ ।



# ଚିଲିୟାଁୱାଲା ଯୁଦ୍ଧ ଓ
# ଇତିହାସ ଅଧ୍ୟୟନ

ଭାରତର ଇତିହାସକୁ ଯେପରି ଆମ ପାଖରେ ଉପସ୍ଥିତ କରାଯାଏ, ତା ବିଷୟରେ ମୋର କେତେକ ଗୁରୁତର ଆପତ୍ତି ରହିଛି । ଯଦିଓ ସମସ୍ତେ କହନ୍ତି ଯେ ଇତିହାସ ନିରପେକ୍ଷ ହେବା ଉଚିତ । କିନ୍ତୁ କଣ ସତରେ ତାହୁଏ ? ପ୍ରଥମ କଥାହେଲା, ଇତିହାସ ଲେଖୁଛି କିଏ ? ଯେତେ ଯାହା କହନ୍ତୁ ଇତିହାସ ମୂଳ ବିଜୟୀର ଇତିହାସ । ଏବଂ ଯେ ହାରେ ତାର ତ ମୋଟାମୋଟି ସମୂଳ ବିନାଶ । ଏଣୁ ପରାସ୍ତର ନିଜ ପକ୍ଷର କଥା କହିବାର ଅବକାଶ ପ୍ରାୟ ନାହିଁ । ଇତିହାସ ଅଧିକାଂଶ କ୍ଷେତ୍ରରେ ବିଜେତାର ଇତିହାସ । ଗୋଟିଏ ଇଂରାଜୀ କଥା ପଢିଥିଲି । କାହାର ଲେଖା ମନେ ନାହିଁ । ସେଥିରେ ଏକ ନିଷ୍ଠୁର ସତ୍ୟ ଉଦ୍‌ଘୋଷିତ ହୋଇଥିଲା । ଉଦ୍ଧୃତ ତଳେ ଦେଲି ।

"Treachery is always a failure. For if it succeeds, who will dare to call it treachery ?"

"ବିଶ୍ୱାସ ଘାତକତା ସବୁବେଳେ ଅସଫଳ । କାରଣ ଯଦି ସଫଳ ହୋଇଯାଏ, ତାକୁ ବିଶ୍ୱାସ ଘାତକତା ବୋଲି କହିବାର ସାହସ କାହାର ?"

ମୋଟକଥା ହେଲା ଇତିହାସ ଜୟୀର ଇତିହାସ । ଏଣୁ ମହାଭାରତର ପ୍ରଥମ ନାମ କୁଆଡ଼େ ଥିଲା ଜୟ । ବିଜୟୀ ମଧ୍ୟ ସବୁବେଳେ ବିଜୟୀ ନୁହଁନ୍ତି । ଅନେକ ଥର ହାରେ ମଧ୍ୟ । କେବଳ ଶେଷ ଯୁଦ୍ଧରେ ବିଜୟୀ ହିଁ ବିଜୟୀ ହୁଏ । ଏଣୁ ବିଜେତାର ପ୍ରୋପାଗଣ୍ଡା ତନ୍ତ୍ର ଲାଗିଯାଏ ଇତିହାସ ରଚନା କରିବାରେ । ଉଦ୍ଦେଶ୍ୟ ପରାଜିତର ମନୋବଳ ଭାଙ୍ଗି ଦେବା ଯେପରି ସେ ନିଜ ପରାଜୟକୁ ଶେଷ ପରାଜୟ ବୋଲି ମାନିନେବ । ଏହା ଆର୍ଯ୍ୟ କରିଛନ୍ତି ଅସୁରଙ୍କ ବିରୁଦ୍ଧରେ । ମୁସଲମାନ କରିଛନ୍ତି କାଫେର ଅର୍ଥାତ ଅଣ ମୁସଲମାନଙ୍କ

ବିରୁଦ୍ଧରେ ଏବଂ ଇଂରେଜ କରିଛନ୍ତି ତାଙ୍କ ଜାତିଙ୍କ ବିରୁଦ୍ଧରେ । ଆମକୁ କୁହାଯାଇଛି ଯେ ଭାରତବାସୀ ସଦା ସର୍ବଦା ବିଦେଶୀ ଆକ୍ରମଣକାରୀଙ୍କ ଠାରୁ ପରାଜିତ ହୋଇଛନ୍ତି । ଯେପରି ଏହାହିଁ ବିଧି ନିର୍ଦ୍ଦିଷ୍ଟ ହିଁ ଜାତିର ଉତ୍ଥାନ ପତନ ହେଉଛି । ଭାରତରେ ଥିବା ସାମ୍ରାଜ୍ୟରେ ମଧ୍ୟ ଏସିଆ ଅନେକ ସମୟରେ ସାମିଲ ହୋଇଛି । ନହେଲେ ତୁର୍କିସ୍ଥାନର ଅନେକ ଅଞ୍ଚଳକୁ ସପ୍ତ ସିନ୍ଧୁରେ ବାହ୍ଲିକ କୁହାଯାଇ ନଥାନ୍ତା । ଏଇଠି ପରାଜିତ ଜାତିର ନେତା ଓ ବୁଦ୍ଧିଜୀବୀ ଗଣଙ୍କର କର୍ତ୍ତବ୍ୟ ହେଲା, ସେହି ଜାତିସ୍ମୃତିକୁ ଜାଗ୍ରତ ରଖିବା, ଯେପରିକି ଜାତି ବର୍ତ୍ତମାନର ପରାଜୟକୁ ଶେଷ ପରାଜୟ ବୋଲି ସ୍ୱୀକାର କରିନଦିଏ । ଅପ୍ରାସଙ୍ଗିକ ହେଲେ ମଧ୍ୟ ଏହିଠାରେ ଭାରତ ଓ ଚୀନ ମଧ୍ୟରେ ପାର୍ଥକ୍ୟ ଦେଖାଯାଇ ପାରେ । ଚୀନ ମଧ୍ୟ ବହୁକାଳ ଧରି ବିଦେଶୀ ଶାସନରେ ରହିଛି । କିନ୍ତୁ ଚୀନର ବୁଦ୍ଧିଜୀବୀ ଗଣ ସବୁବେଳେ ଗୋଟିଏ ଭାବଧାରା ବଞ୍ଚାଇ ରଖିପାରିଥିଲେ । ଲୋକଙ୍କର ବିଶ୍ୱାସ ଥିଲା ଯେ ଦିନେ ନା ଦିନେ ଏହି ବିଦେଶୀ ସାମ୍ରାଜ୍ୟ, ତା ମଙ୍ଗୋଲ ହେଉ ବା ମାଞ୍ଚୁ ହେଉ, ଧ୍ୱଂସ ହେବ ଏବଂ ତା ସ୍ଥାନ ଏକ ଖାଣ୍ଟି ଚୀନା ରାଜବଂଶ ଗ୍ରହଣ କରିବ । "କାଳୋହ୍ୟୟଂ ନିରବଧି ବିପୁଳାଶ୍ଚ ପୃଥ୍ୱୀ" । ଦୁଃଖର କଥା ଆମେ ଏହି ପବିତ୍ର କର୍ତ୍ତବ୍ୟ ପାଳନରେ ଅସଫଳ ହିଁ ହୋଇଛୁ ।

ଏହିଠାରେ ମୁଁ ଏପରି ଏକ ଯୁଦ୍ଧ ବିଷୟରେ ଆଲୋଚନା କରିବାକୁ ଯାଉଛି, ଯେଉଁଥିରେ କେବଳ ଇଂରେଜ ମାନେ ହାରିଥିଲେ ତା ନୁହେଁ, ସେଥିର ଇଂରେଜ ଜେନେରାଲ ମାନେ ଅତି ଅପାରଗତାର ପରିଚୟ ଦେଇଥିଲେ । ଏହା ଚାର୍ଲସ୍ୱାଲ ଯୁଦ୍ଧ । ଆପଣ ମାନଙ୍କ ଭିତରୁ ଅନେକ Lord Tennysonଙ୍କର ଇଂରାଜୀ କବିତା "Charge of the Light Brigade" ପଢ଼ିଥିବେ । ଏହା ଘଟିଥିଲା କ୍ରିମିଆ, 1851 ସାଲରେ ରୁଷିଆ ବିରୁଦ୍ଧରେ । ସେ କବିତାର ପ୍ରସିଦ୍ଧ ପଙ୍କ୍ତି ହୁଏତ ଆପଣଙ୍କର ମନେଥିବ— "Thier's not to reason why,

Their's not to make reply

Their's but to do and die."

ଏହି Charge of the Light Brigade ଇଂରେଜମାନଙ୍କର ରଣ କୌଶଳରେ ଚରମ ଅପାରଗତାର ପରିଚୟ । ହାରିବାର ନୁହେଁ । ହାରିବା ଓ ରଣକୌଶଳ ଭିନ୍ନ ଭିନ୍ନ ବୃକ୍ଷର ଫଳ । ଲର୍ଡ ଲୁକାନ ( Lord Lucan ) ( କ୍ରିମିଆ ଯୁଦ୍ଧରେ ଇଂରେଜ ସେନାପତି ) ଏହା ପରେ ବଡ଼ ମନମରା ହୋଇଯାଇଥିଲେ । ସ୍ୱାଭାବିକ ମଧ୍ୟ । ଜେନେରାଲ ଏଥିରେ ଲର୍ଡ ଲୁକାନଙ୍କୁ ବୁଝାଇବାକୁ ଚେଷ୍ଟା କଲେ ଯେ ଯୁଦ୍ଧରେ କେତେବେଳେ ଏପରି ବିପର୍ଯ୍ୟୟ ହୋଇଥାଏ । ଉଦାହରଣ ସ୍ୱରୂପ ଜେନେରାଲ କହିଲେ ଯେ ଚାର୍ଲସ୍ୱାଲ ତୁଳନାରେ ଲାଇଟ୍ ବ୍ରିଗେଡ୍ ବିପର୍ଯ୍ୟୟ କିଛି ନୁହେଁ । ଏଣୁ ଚାର୍ଲସ୍ୱାଲରେ ଇଂରେଜଙ୍କର ଘୋର ବିପର୍ଯ୍ୟୟ ହୋଇଥିଲା ।

କିନ୍ତୁ ଇଂରେଜ ଐତିହାସିକ ଏହାକୁ ଚାପି ଦେଇଛନ୍ତି ଓ ଆମେ ମଧ୍ୟ ବିଶେଷ ଏ ବିଷୟରେ ଜାଣିବାକୁ ଚେଷ୍ଟା କରୁନାହୁଁ ।

ଶିଖ ସେନା ଝେଲମ ନଦୀ କୂଳରେ ଚିଲିୟାଁ ୱାଲାରେ ଛାଉଣୀ ପକାଇଛନ୍ତି । ଜାନୁଆରୀ ୧୩, ୧୮୪୯ । ସମୟଟା ୧୮୪୫-୪୬ର ଇଂରେଜ ଶିଖ ଯୁଦ୍ଧ । ଅଲିୱାଲ ତଥା ଫିରୋଜଶାହରେ ( ୨୨ ଡିସେମ୍ବର ୧୮୪୫ ) ଇଂରେଜ ସେନା ବେଶ ମାଡ଼ ଶିଖ ମାନଙ୍କ ହାତରୁ ଖାଇଛନ୍ତି । ବ୍ରିଟିଶ୍ ରକ୍ଷା ପାଇଗଲେ ବାହୁବଳରୁ ନୁହେଁ, ଲାଞ୍ଚବଳରୁ । ଠିକ୍ ସମୟରେ ଜଣେ ଶିଖ ସେନାପତି ତେଜ ସିଂହ ଆକ୍ରମଣରୁ ବିରତ ହେଲେ । କାରଣ ଅନୁମେୟ । ଏଥରକ ଶିଖ୍ ପକ୍ଷର ସେନାପତି ଶେରସିଂହ । ଶେର ଅର୍ଥାତ ସିଂହ । ସେ ସିଂହ ଶିକାରକୁ ଅପେକ୍ଷା କଲାପରି ନିଜର ସେନାକୁ ନଦୀକୂଳର ଜଙ୍ଗଲରେ ଲୁଚାଇ ରଖିଛନ୍ତି । ଇଂରେଜତରଫର ସେନାପତି ଲୋର୍ଡ଼ ଜଙ୍ଗିଲାଟ (Commander-in-chief) ସାର୍ ହ୍ୟୁଗ ଗୋଫ୍ । ବ୍ରିଟିଶ ସେନା ପ୍ରାୟ ଦିନ ଦୁଇଟା ବେଳେ ପହଞ୍ଚିଲା । ପୁରା ଆଡ଼କୁ ତଲାଶି ନନେଇ ସେଇଠି ଛାଉଣି ପକାଇବାର ଆଦେଶ ଦିଆଗଲା । ଛାଉଣିର ସମ୍ମୁଖରୁ ଶେରସିଂହଙ୍କର ତୋପର ଲାଇନରେ ପଡ଼ୁଥିଲା । ଏଣୁ ଶିଖ୍ ତୋପ ଗୋଲାବାରି ଆରମ୍ଭ କରିଦେଲେ । "କାଲା ଆଦମୀ" ମାନଙ୍କର ଏପରି ବେଆଦବୀ ଦେଖି ଜଙ୍ଗିଲାଟ ବଗି ଖପ୍ପା । ସେ ଆକ୍ରମଣରେ ଆଦେଶ ଦେଇଦେଲେ । ବ୍ରିଟିଶ ସେନା ଜଙ୍ଗଲ ଭିତରକୁ ପଶିଗଲା । ତାପରେ ସେନାପତିଙ୍କର ଆଉ କୌଣସି କର୍ତ୍ତୃତ୍ୱ ରହି ପାରିଲା ନାହିଁ । ବ୍ରିଗେଡ଼ିଅର ପେନକ୍ୱିକଙ୍କ ପାଖରେ ତିନୋଟି ବାଟାଲିଅନ ଥିଲା । ୨୪ନମ୍ବର ପଲଟନ ଥିଲେ ଗୋରା ପଦାତିକ ଏବଂ ୨୫ ନମ୍ବର ଓ ୪୫ ନମ୍ବର ପଦାତିକ ପଲଟନ ଥିଲେ ଦେଶୀ ସିପାହୀ । ୨୪ ନମ୍ବର ପଲଟନ. ୨୫ ଓ ୪୫ ଠାରୁ ଶୀଘ୍ର ଆଗକୁ ଚାଲିଗଲା । ଜଙ୍ଗଲରୁ ବାହାରି ଦେଖିଲେ କେତୋଟି ଛୋଟ ହ୍ରଦ । ତା ପଛରେ ଶିଖ ସେନା, ପଦାତିକ, ଘୋଡ଼ା ସୱାର ଓ ଗୋଲନ୍ଦାଜ ( ତୋପ ) ଛକି ରହିଛନ୍ତି । ଏପରି ଅବସ୍ଥାରେ ନିଜର ସହାୟକ ସେନା ଆସିବା ଆଗରୁ, ୨୪ ପଦାତିକ ଚାର୍ଜ କରି ଦେଲା । ଉଦ୍ଦେଶ୍ୟ ଶିଖ୍ ତୋପ ଦଖଲ କରିନେବା । ପ୍ରଥମେ ତୋପରୁ ଗ୍ରେପଶଟ୍ ବୃଷ୍ଟି । ତା ପଛେ ପଛେ ଶିଖ ଘୋଡ଼ାସୱାର ଆକ୍ରମଣ । ଗୋରାତକ ଛତଭଙ୍ଗ ଦେଲେ । ତାଙ୍କ ଦେଖା ଦେଖି ଅନ୍ୟମାନେ ମଧ୍ୟ । ବ୍ରିଗେଡ଼ିଅର ଓ ତାଙ୍କ ପୁଅ ମଧ୍ୟ ଏଥିରେ ପ୍ରାଣ ହରାଇଲେ । ୨୪ ନମ୍ବରର ୨୯ଜଣ ଅଫିସରଙ୍କ ମଧ୍ୟରୁ ୧୩ଜଣ ମୃତ ଓ ୧୦ଜଣ ଆହତ । ଏଣେ ଆଉଜଣେ ବ୍ରିଟିଶ୍ ସେନାପତି ବ୍ରିଗେଡ଼ିଅର ପୋପ୍ ଶିଖ ଘୋଡ଼ାସୱାର ଆକ୍ରମଣ ସମ୍ବନ୍ଧରେ ଆଦେଶ ଦେବାରେ ଗୋଳମାଳ କରିବାରୁ ବିନାଯୁଦ୍ଧରେ ତାଙ୍କ ବ୍ରିଗେଡ଼ ଛତଭଙ୍ଗ ଦେଲା ।

ଏହାର ଫଳ ବ୍ରିଟେନରେ ଦେଖାଗଲେ । ବ୍ରିଟେନରେ କ୍ଷମତାଧୀନ ଲୋକମାନେ ଭାବି ମଧ୍ୟ ପାରିଲେ ନାହିଁ ଯେ ଏହି କାଲାଆଦମୀ ମାନେ ଇଂରେଜ ସେନାଙ୍କୁ

ଗ୍ରେକ ନେବେ । ନେପୋଲିୟନଙ୍କୁ ଓ୍ୱାଟରଲୁରେ ହରାଇଥିବା ଡ୍ୟୁକ୍ ଅଫ ଉଏଲିଂଟନ ନିଜେ ଭାରତ ଯିବାକୁ ଚାହୁଁଥିଲେ । ତେବେ ଏ ଯୁଦ୍ଧରେ ଦେଖାଗଲା ଯେ ବ୍ରିଟିଶ ରଣକୌଶଳ ଯେପରି କିଛି ନୁହେଁ । ସେ ସମୟରେ ଅସ୍ତ୍ରଶସ୍ତ୍ର ଦିଗରୁ ମଧ୍ୟ ଭାରତୀୟ ଓ ବ୍ରିଟିଶଙ୍କ ଭିତରେ ବେଶି ପ୍ରଭେଦ ନଥିଲା । କାରଣ ବହୁ ୟୁରୋପୀୟ ସେନାପତି ଓ କାରିଗର ଭାରତୀୟ ରାଜାମାନଙ୍କ ପାଖେ କାମ କରୁଥିଲେ । ବିଶେଷ କରି ରଣଜିତ୍ ସିଂହ ତ ତାଙ୍କ ସେନାଙ୍କୁ ଅତି ଉତ୍ତମ ଭାବେ ଗଢିଥିଲେ ଏବଂ ରଣ କୌଶଳରେ ଇଂରେଜ ସେନାଠାରୁ ଶିଖ ସେନା କମ୍ ନଥିଲା । ତେବେ ଇଂରେଜ ଜିତିଲେ କାହିଁକି ? ପଲାସୀ ପରଠାରୁ ବାରମ୍ବାର ଗୋଟିଏ କଥା ଦେଖାଯାଇଛି । ଇଂରେଜ ମାନେ ଭାରତୀୟଙ୍କ ବିଶ୍ୱାସଘାତକତା କିଣି ପାରିଛନ୍ତି । ଦ୍ୱିତୀୟ ସମସ୍ୟା ହେଲା ଯେ ଭାରତୀୟ ମାନେ କୂଟନୀତିରେ ଅପାରଗତାର ପରିଚୟ ଦେଇଛନ୍ତି ଯାହାକି କୌଟିଲ୍ୟଙ୍କ ଦାୟାଦମାନଙ୍କ ପକ୍ଷରେ ପରମ ପରିତାପର ବିଷୟ ।

ଏଥର ଦେଖାଯାଉ ଇଂରେଜମାନେ କି କି ଭୁଲ କରିଥିଲେ ।

୧ । ଭଲଭାବରେ ପର୍ଯ୍ୟବେକ୍ଷଣ ନକରି ଛାଉଣି ପକାଇବା ।

୨ । ଦିନ ୨ଟାବେଳେ ଅଜଣା ସ୍ଥାନରେ ଆକ୍ରମଣରେ ଆଦେଶ ଦେବା, ଯେତେବେଳେ ସୂର୍ଯ୍ୟାସ୍ତକୁ ତିନିଘଣ୍ଟା ଅଛିକି ନାହିଁ, ଏବଂ ଚାରିଆଡ଼େ ଘନ ଜଙ୍ଗଲ ।

୩ । ସେନା ଉପରେ ସେନାପତି ମାନେ ନିୟନ୍ତ୍ରଣ ହରାଇ ଦେବା ।

ଏହି ଭୁଲ୍ କୌଣସି ଜୁନିୟର ଅଫିସର କରିନାହିଁ । ଖୋଦ ଜେନେରାଲଙ୍କର ଆଦେଶ । ଏଭଳି ଆପାରଗତା ସତ୍ତ୍ୱେ ଇଂରେଜ ଭାରତ ଜିଣିଲେ କିପରି ଭାବି ଆଶ୍ଚର୍ଯ୍ୟ ହେବାକୁ ହୁଏ । ଭାରତୀୟଙ୍କର ପରାଜୟର କାରଣ ଅନେକ । କିନ୍ତୁ ତାହା ଯୁଦ୍ଧକ୍ଷେତ୍ରରେ ଅପାରଗତା ନୁହେଁ । ପ୍ରଧାନ କାରଣ ହେଲା ନିଜ ରାଜାଙ୍କ ପ୍ରତି ନିଷ୍ଠା ପରାୟଣ ଆନୁଗତ୍ୟର ଅଭାବ । ଦେଶ କଥା କହୁନାହିଁ କାରଣ ସେ ସମୟରେ ଦେଶାତ୍ମବୋଧ ଭାବନାଟା ପ୍ରାଚ୍ୟ ଦେଶ ମାନଙ୍କରେ ସ୍ପଷ୍ଟ ହୋଇ ନଥିଲା । ଯେତେବେଳେ ଭାରତୀୟ ରାଜନୈତିକ ପରିସର ଅତ୍ୟନ୍ତ ସଙ୍କୀର୍ଣ୍ଣ ଥିଲା । ଯଦିଚ "ନିମକ୍ ଖାଇବା କଥାଟାର ମହତ୍ତ୍ୱ ଦିଆ ହେଉଥିଲା, କିନ୍ତୁ ତାହା ନମାନିବା ଏବଂ ନିଜ ସ୍ୱାର୍ଥକୁ ସର୍ବୋପରି ଦେଖିବା ସାଧାରଣ କଥା ହୋଇଯାଇଥିଲା । ଇଂରେଜମାନେ ସିରାଜଦୌଲାଙ୍କୁ ଜିଣିଛନ୍ତି ଅସୀବଳରେ ଯେତେ ନୁହେଁ, ଲକ୍ଷବଳରେ ତାଠାରୁ ବେଶୀ । ପଲାସୀର ଯୁଦ୍ଧ ପରେ ଲୋକମୁଖରେ ଏକ ଗୀତ ପ୍ରଚଳିତ ଥିଲା, ଯାହାକି ପଲାସୀ ଯୁଦ୍ଧ ବିଷୟରେ ଟିକିଏ ଭିନ୍ନ ଦୃଷ୍ଟିକୋଣ ଦେଖାଏ ।

ଗ୍ରେଟ୍ ଗ୍ରେଟ୍ ତେଲେଙ୍ଗା ଗୁଲି ଲାଲ କୁର୍ତ୍ତି ଗାୟେ,
ହାଁଟୁ ଗେଡ଼େ ମାର୍‌ଛେ ତୀର ମୀରମଦନେର୍ ଗାୟେ
ପଡ଼େ ଯାୟ ମୀରମଦନ, ଖାଡ଼ା ମୋହନ ଲାଲ
ଜାଫର ଅଲିର ବେଇମାନିତେ, ନବାବେର୍ ହଲ କାଲ୍ ।

ତା ପରେ ଘୃଣ୍ୟ କାହାଣୀ ଯଥା ନନ୍ଦକୁମାରଙ୍କ ଫାଶୀ ଇତ୍ୟାଦି ତ ଇତିହାସରେ ବେଶ୍ ପ୍ରସିଦ୍ଧ । ସେ ସମୟର ଇଂରେଜ କର୍ତ୍ତାମାନେ କମ୍ ଲାଞ୍ଚଖୋର ଓ ଲମ୍ପଟ ନଥିଲେ । କିନ୍ତୁ ଗୋଟିଏ ଜିନିଷ ସେମାନଙ୍କ ପାଖେ ଥିଲା । ତା ହେଲା ଦେଶାତ୍ମବୋଧ । ସେମାନେ ଥିଲେ ସାର୍ ଫ୍ରାନ୍‌ସିସ୍ ଡ୍ରେକ୍‌ଙ୍କ ପରି ଜଳଦସ୍ୟୁଙ୍କ ଉତ୍ତରାଧିକାରୀ । ଯଦିଚ ନୈତିକତାର ଧାର ଧାରୁନଥିଲେ, ଇଂଲଣ୍ଡ ଲାଗି କିନ୍ତୁ ଭଲ ମନ୍ଦ ସବୁ କରିବାକୁ ପ୍ରସ୍ତୁତ ଥିଲେ ।

ଏଣେ ସାଧାରଣ ଇତିହାସ, ଯାହାକି ବିଶେଷ କରି ଇଂରେଜ ଐତିହାସିକଙ୍କ ମୂଳଦୂଆ ଉପରେ ପ୍ରତିଷ୍ଠିତ, ଆମର ଅବସ୍ଥାକୁ ବିକୃତ କରି ଦେଖାଇଛି । ସତରେ କଣ ଅବସ୍ଥା ଏପରି ଖରାପ ଥିଲା ? ମୋର ସନ୍ଦେହ ହୁଏ । ପ୍ରଥମ ଜିନିଷ ହେଲା, ହିନ୍ଦୁ ମୁସଲିମ୍ ବିଦ୍ୱେଷ ବିଶେଷ ନଥିଲା । ଉପରେ ଉଦ୍ଧୃତ ହୋଇଥିବା ଲୋକଗୀତରୁ ଜଣାପଡିବ ଯେ ନବାବ ସିରାଜଦ୍ଦୌଲାଙ୍କର ଦୁଇଜଣ ବିଶ୍ୱସ୍ତ ଏବଂ ନିଷ୍ଠାପର ସେନାପତି ହେଲେ ମୀର ମଦନ ଓ ମୋହନଲାଲ । ଜଣେ ହିନ୍ଦୁ ଓ ଜଣେ ମୁସଲମାନ, ଏବଂ ବିଶ୍ୱାସଘାତକ ମୀରଜାଫର ତ ନବାବଙ୍କର ସମଧର୍ମୀ । ଏହି ସମୟର ଅର୍ଥାତ ଆଉରଙ୍ଗଜେବ ଓ ଇଂରେଜଙ୍କର ମଧ୍ୟବର୍ତ୍ତୀ ସମୟର ଦୁଇଜଣ ମହାନୁଭବଙ୍କ ପ୍ରତି ମୋର ଭକ୍ତି ରହିଛି । ଜଣେ ହେଲେ ପେଶଓ୍ୱା ବାଜିରାଓ ପ୍ରଥମ ଏବଂ ଅନ୍ୟ ଜଣକ ହେଲେ ମହାରାଜା ରଣଜିତ ସିଂହ । ରଣଜିତ ସିଂହଙ୍କର ଦରବାରରେ ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟାନ, ସମସ୍ତ ଗୁଣୀଜନଙ୍କର ଆଦର ଥିଲା । ଦିଓ୍ୱାନ୍ ଗୋଦରମଲ, ଜେନେରାଲ ଭେଞ୍ଚୁରା, ହରିସିଂହ ନଲଓ୍ୱା ଓ ଅନେକ ମୁସଲମାନ ସେନାପତିମାନେ ଶିଖ ସାମ୍ରାଜ୍ୟକୁ ଠିଆ କରିଥିଲେ । ରଣଜିତ ସିଂହଙ୍କ ରାଜସଭା ଓ ସେନା ସମସ୍ତଙ୍କ ଲାଗି ଖୋଲା ଥିଲା । ଚିଲିଆଁଓ୍ୱାଲା ବେଳକୁ ଆଉ ହରିସିଂହ ନଲଓ୍ୱା ବା ଦିଓ୍ୱାନ ଗୋଦରମଲ ନଥିଲେ । କିନ୍ତୁ ତାଙ୍କ ଶିଷ୍ୟ ଶେରସିଂହଙ୍କର ଯୁଦ୍ଧ କୌଶଳ ବିଷୟରେ ଆଗରୁ ବର୍ଣ୍ଣନା ହୋଇଛି ।

ପେଶଓ୍ୱା ବାଜିରାଓଙ୍କର ଗୋଲନ୍ଦାଜ ବାହିନୀ ଅତି ଶକ୍ତିଶାଳୀ ଥିଲା । ତାର କମାଣ୍ଡର ଥିଲେ ଇବ୍ରାହିମ ଖାଁ ଗର୍ଦ୍ଦୀ । ବାଜିରାଓଙ୍କର ପ୍ରେୟସୀ ମସ୍ତାନି ନାମ୍ନୀ ଏକ ମୁସଲିମ ମହିଳା ଥିଲେ । କେବଳ ଧର୍ମ ଭିନ୍ନ ଥିବାରୁ ମହାରାଣୀ ହୋଇ ପାରିନଥିଲେ । କିନ୍ତୁ ସେ ବାଜିରାଓଙ୍କର ପ୍ରକୃତ ସଙ୍ଗିନୀ ଥିଲେ ଏବଂ ବାଜିରାଓଙ୍କର ମୃତ୍ୟୁ ସମ୍ବାଦ

ଶୁଣିବା କ୍ଷଣି ପ୍ରାଣ ହରାଇଥିଲେ । ଏତିକି ଉଦାହରଣ ଯଥେଷ୍ଟ । ଆଉ ଶେଷରେ ୧୮୫୭ର ହିନ୍ଦୁ ମୁସଲମାନ ଏକତାର ଅଗ୍ନିଗର୍ଭ ନିଦର୍ଶନ । ତୃତୀୟ ପାନିପତ ଯୁଦ୍ଧରେ ଅହମଦଶାହ ଅବଦାଲୀଙ୍କ ଠାରୁ ମରାଠା ମାନଙ୍କର ପରାଜୟକୁ ଇଂରେଜ ଐତିହାସିକ ଓ ତାଙ୍କ ଭାରତୀୟ ଚେଲାମାନେ ଖୁବ ବଡ଼କରି ଦେଖାଇବାର ଚେଷ୍ଟା କରିଛନ୍ତି । "ପାନିପତର ଯୁଦ୍ଧକ୍ଷେତ୍ରରେ ମରାଠା ସୂର୍ଯ୍ୟ ଚିରକାଳ ଲାଗି ଅସ୍ତ ହୋଇଗଲା ।" ଫଳତଃ ଭାରତୀୟ ଜନମାନସରେ ରହିଯାଇଛି ଯେ ପାନିପତର ଯୁଦ୍ଧ ଭାରତୀୟ ଇତିହାସକୁ ସବୁବେଳେ ନୂଆ ମୋଡ଼ ଦେଇଆସିଛି ।

ମୋ ମତରେ ପାନିପତର ଯୁଦ୍ଧ ଗୁଡ଼ିକୁ ଅଯଥା ଗୁରୁତ୍ୱ ଇତିହାସରେ ଦିଆଯାଇଛି । ଭାରତୀୟ ଇତିହାସରେ ପ୍ରଥମ ପାନିପତ ଯୁଦ୍ଧର ସ୍ଥାନ ଅବଶ୍ୟ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ମୋ ମତରେ ଭାରତର ଇତିହାସ ପାଇଁ ୧୧୯୨ର ତରାଇନ୍‌ର ଯୁଦ୍ଧ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ, କାରଣ ଏହାପରେ ଦିଲ୍ଲୀରେ ପ୍ରଥମ ମୁସଲିମ୍ ରାଜତ୍ୱ ସ୍ଥାପିତ ହେଲା । ଦ୍ୱିତୀୟ ପାନିପତ ଯୁଦ୍ଧ ହିମୁଙ୍କ ବିରୁଦ୍ଧରେ । ହିମୁ ମୋଗଲ ଦୁର୍ବଳତାର ସୁଯୋଗ ପାଇ ନିଜକୁ ବିକ୍ରମାଦିତ୍ୟ ଘୋଷଣା କରିଥିଲେ ଠିକ୍ । କିନ୍ତୁ ସେ ଥିଲେ ଆଦିଲ୍ ଶାହ ସୁର୍‌ଙ୍କର ସେନାପତି । ଅନେକ ଐତିହାସିକଙ୍କ ମତ ଯେ ବାଲାଜୀରାଓ ପେଶୱା, ସଦାଶିବ ରାଓ ଭାଉ ବିଶ୍ୱାସରାଓ ଇତ୍ୟାଦି ପ୍ରଧାନ ମରାଠା ନେତୃଗଣଙ୍କର ମୃତ୍ୟୁରେ ମରାଠାଶକ୍ତି ନେତୃତ୍ୱହୀନ ହୋଇଗଲା । କଥାଟା କେତେକାଂଶରେ ସତ । କିନ୍ତୁ ତାପରେ ପ୍ରାୟ ପଚାଶବର୍ଷ କାଳ ମରାଠା ଶକ୍ତି ଭାରତର ଇତିହାସରେ ଅତି ମହତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲା । ଆହମଦଶାହ ଅବଦାଲି ଯୁଦ୍ଧରେ ଜିତି ମଧ୍ୟ ଭାରତରେ ରହି ପାରିନଥିଲେ । ମରାଠା ହାରିଲେ ଇଂରେଜଙ୍କ ଠାରୁ ଏବଂ ତା ସହିତ ତୃତୀୟ ପାନିପତର କୌଣସି ସମ୍ପର୍କ ନାହିଁ । ଏହା ନିଶ୍ଚିତ ଯେ ପାନିପତର ଦାରୁଣ କ୍ଷତି ସତ୍ତ୍ୱେ ମରାଠା-ମାନଙ୍କର ଏକ ଅନ୍ତର୍ନିହିତ ଶକ୍ତି ଥିଲା ଯେ ସେମାନେ ପୁଣି ଠିଆହୋଇପାରିଲେ । ମରାଠା ଶକ୍ତିର ପ୍ରକୃତ ଟ୍ରାଜେଡ଼ି ଅନ୍ୟତ୍ର । ତାହା ଟାଜେଡ଼ି, କାରଣ ଏଥିରେ ମନୁଷ୍ୟର ହାତ ନାହିଁ । ମରାଠା ଇତିହାସରେ ( ଭାରତ ଇତିହାସରେ ମଧ୍ୟ ) ତିନିଜଣ ଯୁଗଜନ୍ମା ବ୍ୟକ୍ତି ହୋଇଛନ୍ତି । ଛତ୍ରପତି ଶିବାଜୀ, ପେଶୱା ବାଜିରାଓ ପ୍ରଥମ ଓ ମହାଦଜୀ ସିନ୍ଧିଆ । ଏମାନଙ୍କୁ ଭଗବାନ ଦୀର୍ଘାୟୁ କରିନଥିଲେ । ଏମାନେ ସୃଷ୍ଟି କର୍ମିତ କରିଥିଲେ, କିନ୍ତୁ ପାଳନ ଯାହାକୁ ଇଂରାଜୀରେ Consolidation କହନ୍ତି, କରିବାକୁ ସମୟ ପାଇଲେ ନାହିଁ ।

ଇତିହାସ ଲେଖିବାର ନିରପେକ୍ଷ ଦୃଷ୍ଟିଭଂଗୀ ( ଇଂରାଜୀରେ Objectivity ) ଅତି ଆବଶ୍ୟକ ଜିନିଷ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଉପାଦାନ Objective ନୁହେଁ । ଧରନ୍ତୁ ଆମର ପୁରାଣସବୁ । ତାକୁ ଇତିହାସ ବୋଲି

ନଥିଲେ ମଧ୍ୟ ଇତିହାସ ଭିତ୍ତିକ ବା Proto-history ତ ଧରିବେ । ସେ ସମୟର ଗୋଟିଏ ଗୋଟିଏ ମୁଦ୍ଧର ସୈନ୍ୟସଂଖ୍ୟା କୋଟି କୋଟି । ହୁଏତ ସେ ସମୟରେ ଲୋକସଂଖ୍ୟାହିଁ କୋଟିଏ ନଥିବ । ତାପରେ ମୁସଲମାନ ସମସ୍ୟାର ସମସ୍ୟା ତ ଆଗରୁ ଆଲୋଚନା ହୋଇଛି । ଏଣୁ ଏଠି ବୁଦ୍ଧିଜୀବୀମାନଙ୍କ ପକ୍ଷରେ ବଡ଼ ସମସ୍ୟା ନିଜର ନିରପେକ୍ଷତା ( objectivity ) ରକ୍ଷା କରିବେ ନା ଦେଶର ହିତରେ ଯାହା ହେବ ତା କହିବେ । ପୁଣି ଦେଶର ହିତ କିଏ କହିବ ? ସରକାର, ବିରୋଧି ଦଳ ନା ବିବେକ ?

ଏହି ବିଷୟରେ ଚୀନର ପଣ୍ଡିତଶ୍ରେଣୀ ନମସ୍ୟ । ଆଜି ନୁହେଁ, ଶହେହବର୍ଷ ହେଲ ନୁହେଁ । ପ୍ରାୟ ଦୁଇହଜାର ବର୍ଷ ଧରି ଚୀନର ଜାତୀୟ ଭାବଧାରାକୁ ବଞ୍ଚାଇ ରଖିଛନ୍ତି । ପୃଥିବୀରେ ଚୀନର ସ୍ଥାନ ବିଷୟରେ କୌଣସି ଦ୍ୱିମତ ନାହିଁ । ଚୀନ ପୃଥିବୀରେ କେନ୍ଦ୍ରଦେଶ । (ଚୁଂକୁଓ) ସଭ୍ୟତାର ଉତ୍ସ । ସାମୟିକ ଭାବେ ପରାଧୀନ ହୋଇପାରେ । ଦେଶରେ ମୁହଯୁଦ୍ଧ ଯୋଗୁଁ ଚରମ ବିଶୃଙ୍ଖଳା ଦେଖା ଦେଇପାରେ । ଦେଶରେ ନାନା ପ୍ରକାର ବିପତ୍ତି ଓ ଅରାଜକତା ହୋଇପାରେ । କିନ୍ତୁ ରାଜ ପ୍ରତିଷ୍ଠା ହେବ ଏବଂ ଚୀନରେ ଏକ ପ୍ରକୃତ ସ୍ୱଦେଶୀ ଶାସନ ହେବ । ସେମାନେ ହାନ୍, ଟାଙ୍ଗ୍ ବା ମିଙ୍ଗ୍ ରାଜବଂଶ ସାଥିରେ ଚୀନର ଜନସାଧାରଣଙ୍କୁ ଏକାତ୍ମବୋଧ କରିବାକୁ ଉତ୍ସାହିତ କରିଛନ୍ତି ଏବଂ ବହୁଳ ପରିମାଣରେ ସଫଳ ହୋଇଛନ୍ତି । ସେମାନେ ଚୀନକୁ ଏପରି ଏକ ଏକତା ସୂତ୍ରରେ ବାନ୍ଧିବାରେ ସକ୍ଷମ ହୋଇଛନ୍ତି ଯାହା ଅନ୍ୟମାନଙ୍କ ଅନୁକରଣୀୟ । ଆମ ପାଖରେ ମଧ୍ୟ କଞ୍ଚାମାଲ ଅଛି । ଏ ଜନପ୍ରୀତି ଅନୁଭବ କଲି ଆସାମରେ । ଗୋଟିଏ ପୂଜା ଲାଗି ସଂକଳ୍ପ ମନ୍ତ୍ରରେ ଆସିଲା "ଜମ୍ବୁଦ୍ୱୀପେ, ଭରତ୍ୱେ ଖଣ୍ଡେ, ଲୋହିତ୍ୟ ତୀରେ ··· ।" ସ୍ନାନ ମନ୍ତ୍ରରେ ମଧ୍ୟ ଗଙ୍ଗା, ଗୋଦାବରୀ, ନର୍ମଦା, ସିନ୍ଧୁ, କାବେରୀ । କିନ୍ତୁ ଏହା କେବଳ ସଂସ୍କୃତ ମନ୍ତ୍ରରେ ରହିଯାଇଛି । ତୀର୍ଥଯାତ୍ରା ମଧ୍ୟ ଏହି ଉଦ୍ଦେଶ୍ୟରେ ବ୍ୟବହାର କରିହେବ । ଗୋଟିଏ କୁମ୍ଭ ସ୍ନାନରେ ଲକ୍ଷ ଲକ୍ଷ ଲୋକ ସଙ୍ଗମରେ ବୁଡ଼ିକରେ ଗାଧୋଉଛନ୍ତି । କିନ୍ତୁ ଆମେ ଶିକ୍ଷିତ ସମ୍ପ୍ରଦାୟ କଣ ଏହି ଏକାତ୍ମବୋଧ ଜନମାନସରେ ପ୍ରତିଫଳିତ କରିପାରିଛୁ ? ଖାଲି ସାମ୍ପ୍ରଦାୟିକ ଏକତାହିଁ ନୁହେଁ । ଭାରତୀୟ ଜନମାନସରୁ ପରାଧୀନତାର ଗ୍ଲାନି ନିଷ୍କାସନ କରିବାକୁ ହେବ । ଏଥିଲାଗି ଚଲୟାଁୱାଲା ପରି ଇତିହାସ ଖୋଜିଲେ ବହୁ ମସଲା ମିଳିବ । ମୁଁ ସ୍ୱାଧୀନତା ପୂର୍ବର ଦେଶୀୟ ରାଜ୍ୟ ସବୁ ଦେଖିଛି । ସେଠି ଅନ୍ୟାୟ ଅତ୍ୟାଚାର ବିଷୟରେ ଢେର ଲେଖା ହୋଇଛି । କିନ୍ତୁ ଇଂରାଜୀରେ ଗୋଟିଏ କଥାଅଛି, "Give the devil his due." ପ୍ରଥମ କଥା ହେଲ କୌଣସି ଦେଶୀୟ ରାଜ୍ୟରେ ହିନ୍ଦୁ ମୁସଲମାନ ସମସ୍ୟା ପ୍ରାୟ ନ ଥିଲ । ହାଇଦ୍ରାବାଦରେ ଏହି ସମସ୍ୟା ଦେଖା ଦେଲା ୧୯୪୭ ପରେ ଯେତେବେଳେ ଷ୍ଟେଟମାନଙ୍କ ଅସ୍ତିତ୍ୱ ଶଙ୍କାକୁଳ ହୋଇଗଲା । ସାଧାରଣତଃ ଅଦିବାସୀମାନେ ଭଲରେ ଥିଲେ । ଗଡ଼ଜାତ କଥା ମାନଙ୍କରେ ଅନେକ ସମ୍ପର୍କ ଆଦିବାସୀ

ମେଳ ହୋଇଛି । ଯଦି ଷ୍ଟେଟରେ କେବେ ହୋଇଛି, ତାହେଲେ ଷ୍ଟେଟ କୋର୍ଟ ଅଫ୍ ଓ୍ୱାର୍ଡସ ଥିବା ସମୟରେ । ସାମ୍ପ୍ରଦାୟିକ ଦଙ୍ଗା ତ ବ୍ରିଟିଶ ଜିଲ୍ଲା ମାନଙ୍କରେ ପ୍ରାୟ ହେଉଥିଲା । ଏଥିରୁ କ'ଣ କିଛି ଅର୍ଥ ବାହାର କରିହେବନାହିଁ ? ଭାରତୀୟ ରାଜାଙ୍କର ଶାସନର ଆଉଯାହା ଦୁର୍ଗୁଣ ଥାଉ, ସାମ୍ପ୍ରଦାୟିକ ଶାନ୍ତି ଓ ଆଦିବାସୀଙ୍କ ପ୍ରତି ନ୍ୟାୟ ତ ଦେଇଥିଲେ । ଏଥିରେ ତ ଅଧିକମ୍‌ରେ କଳାଲୋକେ ସଫଳ ହୋଇଥିଲେ ।

ରୋମାନ୍ କାଥଲିକ୍ ଧର୍ମରେ ଗୋଟିଏ ପ୍ରଥା ଅଛି । କାହାକୁ ସେଣ୍ଟ ବୋଲି ସ୍ୱୀକାର କଲା ଆଗରୁ ଏକ ବିରାଟ ଏନ୍‌କ୍ୱାୟାରି ହୁଏ । ଏଥିରେ ଜଣେ ରହନ୍ତି, Devil's advocate. ସେ ପ୍ରାର୍ଥୀଙ୍କୁ କାହିଁକି ଏ ପଦବୀ ନ ଦିଆଯିବ ସେଥିଲାଗି ସମସ୍ତ ପ୍ରମାଣ ସଂଗ୍ରହ କରନ୍ତି ଓ ତା ଉପରେ ମକଦ୍ଦମା ଲଢନ୍ତି । ଆମର ମଧ୍ୟ ଇତିହାସର ସ୍ୱୀକୃତ ତଥ୍ୟ ସବୁକୁ ଡେଭିଲ୍‌ସ୍ ଆଡ୍‌ଭୋକେଟ୍ ଦୃଷ୍ଟିରୁ ଦେଖିବାର ସମୟ ହୋଇଛି ।



# ଟୋପି

ଆମେ କଲେଜରେ ପଢୁଥିଲା ବେଳେ କଟକର ମୁସଲମାନ ସମାଜ ବିକ୍ଷୁବ୍ଧ ହୋଇ ଉଠିଥିଲା । ଆମେ ଶୁଣୁଥିଲୁ ଯେ କଟକର ମୁସଲମାନ ସମ୍ପ୍ରଦାୟ ଦୁଇ ଦଳରେ ବିଭକ୍ତ । ଗୋଲଟୋପି ଓ ଲମ୍ବାଟୋପି । ଅବଶ୍ୟ ଆମର ପରିଚିତ ମୁସଲମାନମାନେ ସାଧାରଣତଃ ଟୋପି ପିନ୍ଧୁ ନଥିବାରୁ ଆମେ ତାର ବିଶେଷ ପାର୍ଥକ୍ୟ ଜାଣି ପାରୁନଥିଲୁ । ପରେ ଜାଣିଲୁ ଯେ ଏ ଗୋଲ୍‌ଟୋପି ଲମ୍ବାଟୋପି କଥାଟା ସାଧାରଣ ଲୋକେ ବ୍ୟବହାର କରନ୍ତି । କିନ୍ତୁ ଜାଣିବା ବାଲା ଲୋକେ କହନ୍ତି ଯେ ଏ ଗୋଲଟୋପି ବାଲା ହେଲେ ଦେଓବନ୍ଦି ଓ ଲମ୍ବାଟୋପିବାଲା ହେଲେ ଆଜମ୍‌ଗଡ଼ି । ଆମ ପକ୍ଷରେ ଉଭୟ ନାମ ଅତ୍ୟନ୍ତ ଅପରିଚିତ । ଏଣୁ ତା ବିଷୟରେ ବିଶେଷ କୌତୂହଳ ନଥିଲା ।

ପରେ କପାଳର ଗର୍ଦ୍ଦିଶରେ ମୋତେ ବି ଟୋପି ପିନ୍ଧିବାକୁ ପଡ଼ିଲା । ଏବଂ ସେଥିରେ ଅତି ସ୍ପଷ୍ଟ ହୋଇଗଲା ଯେ ଅଧିକାଂଶ କ୍ଷେତ୍ରରେ ଶିର ଅପେକ୍ଷା ଶିରସ୍ତ୍ରାଣ ବେଶି ମହତ୍ତ୍ୱପୂର୍ଣ୍ଣ । କାରଣ ତା ଦ୍ୱାରା ତୁମର ଜାତି, ଗୋତ୍ର ଅର୍ଥାତ୍ ସାମାଜିକ ସ୍ଥାନ ତତ୍‌କ୍ଷଣାତ୍ ନିର୍ଦ୍ଦିଷ୍ଟ ହୋଇଯାଏ । କବିବର ରାଧାନାଥ ଲେଖିଛନ୍ତି "ଲାଲ ପଗଡ଼ିକି ନଡରଇ କିଏ ?" ଯଦି ଆପଣ ପାରାଟ୍ରୁପ ରେଜିମେଣ୍ଟର ବେରେ ପିନ୍ଧିଛନ୍ତି ତାହା ହେଲେ ଅନ୍ୟଜଣେ ପାରାର ସୈନିକ ତତ୍‌କ୍ଷଣାତ୍ ଆପଣଙ୍କୁ ଭାଇ ବୋଲି ଧରିନେବ । ଟୋପିରେ ବି କେତେ ଜାତି ବିଚାର । ଟୋପିର ଦୁଇଟା କାମ । ସାଙ୍ଗେ ସାଙ୍ଗେ ମେଳ ଓ ପ୍ରଭେଦ । ତା ଆଉ ବେଶି ବୁଝାଇବା ଦରକାର ନାହିଁ । ଟୋପିର ଏପରି କିଛି କମିଆ ନଥିଲେ ଗାନ୍ଧିଜୀ କାହିଁକି ନିଜ ନାଁକୁ ଟୋପି ସଙ୍ଗେ ଯୋଡ଼ିଥାନ୍ତେ ?

ପିଲାଦିନୁ ବାପ୍ପା ଉତ୍ତମ ମଧ୍ୟମ କରିହୋଇ ଗୋଟାଏ କଥା ଏ କର୍ଣ୍ଣିହୋପମ ଶତ୍ରୁ ମୁଣ୍ଡରେ ପୂରାଇ ଦିଆଯାଇଛି ଯେ "ହିରଣ୍ୟମୟେଣ ପାତ୍ରେଣ ସତ୍ୟସ୍ୟା ପିହିତମ୍ ମୁଖମ୍" । ଏଣୁ ସତ୍ୟ କେଉଁଠି ଲୁକ୍କାୟିତ ତାହା ବିନା ଗବେଷଣାରେ ଜାଣିବା ସମ୍ଭବ ନୁହେଁ । ମୁଁ ଭାବିଲି ଯେ ଟୋପିର ଏତେ ମହତ୍ତ୍ୱ ହେଲା କିପରି ? ଏବଂ ପଗଡ଼ି ଓ ଟୋପି ଏବଂ ସାହେବି ହ୍ୟାଟ ମଧ୍ୟରେ କି ସମ୍ପର୍କ ଓ କି ପ୍ରଭେଦ । ଏଥିଲାଗି କିଞ୍ଚିତ ଇତିହାସ, ଭୂଗୋଳ ଓ ସମାଜଶାସ୍ତ୍ରର ଆଲୋଚନା ଅପରିହାର୍ଯ୍ୟ ।

ଆମ ଦେଶରେ ବୋଧହୁଏ ଟୋପି ନଥିଲା । କିନ୍ତୁ ପଗଡ଼ି ବା ଉଷ୍ଣୀଷ ନିଶ୍ଚୟ ଥିଲା । ଭାରତର ଅଧିକାଂଶ ଅଞ୍ଚଳରେ ପ୍ରଚଣ୍ଡ ଖରା ଓ ଅନେକ ସମୟରେ ବେଶ୍ ଶୀତ । ଏଥିରୁ ମୁଣ୍ଡକୁ ବଞ୍ଚାଇବା ନିହାତି ଆବଶ୍ୟକ । ଏବଂ ଏହା ଲମ୍ବା କନା ହୋଇଥିବାରୁ ଅନେକ ଦରକାରରେ ଲାଗିପାରେ । ତା ଛଡ଼ା ମୁଣ୍ଡକୁ ଠେଙ୍ଗା ଶର ଖଣ୍ଡା ଇତ୍ୟାଦିର ଆଘାତରୁ କିଛି ସୁରକ୍ଷା ଦେଇପାରେ । ଥଣ୍ଡା ଥିଲେ କାନ ଦୁଇଟାକୁ ଘୋଡ଼ାଇ ଦିଆଯାଇ ପାରେ । ଧୂଳି ଉଡ଼ୁଥିଲେ ପଛର ଅଂଶଟାକୁ ଖୋଲି ମୁହଁ ଓ ନାକ ଉପରେ ବାନ୍ଧିଦେଲେ ଧୂଳି ପଶି କାଶର କଷ୍ଟରୁ ରକ୍ଷା ମିଳେ ଇତ୍ୟାଦି ଇତ୍ୟାଦି । ଏଣୁ ଓଡ଼ିଆରେ ମଧ୍ୟ ଗୋଟିଏ ଢଗ ଅଛି ।

"ମୁଣ୍ଡରେ ଠେକା ପାଦରେ ତେଲ
ବଇଦ ସଙ୍ଗେ କରିବ ଗେଲ ।"

ଅର୍ଥାତ ପଗଡ଼ି ବାନ୍ଧିବାଟା ସ୍ୱାସ୍ଥ୍ୟରକ୍ଷାର ଏକ ପ୍ରଥମ ନିୟମ । ତା ଛଡ଼ା ଆଉ ଏକ ପ୍ରଧାନ କାରଣ ମଧ୍ୟ ଅଛି । ଚନ୍ଦାମୁଣ୍ଡ ଓ ପାଚିଲା ବାଳ ଲୁଚାଇବାର ଏହାଠାରୁ ବଳି ପ୍ରଶସ୍ତ ପନ୍ଥା ଆଉ କଣ ? ଏବଂ କିଏ ଏହାର ବିଜ୍ଞାପନ ଦେବାକୁ ଚାହେଁ । ଏଣୁ ପଗଡ଼ିଟା ପୁରୁଷତ୍ୱ ସହିତ ଜଡ଼ିତ ହୋଇଗଲା । ଏବଂ ମୋ ମତରେ ତାଠାରୁ ବଳି ସୁନ୍ଦର ଶିରଭୂଷଣ ଆଉ ନାହିଁ । ଏବଂ ପ୍ରକୃତରେ ଏହା ଅଶ୍ୱାରୋହୀର ଯୋଗ୍ୟ ମସ୍ତକାଭରଣ । ଆପଣ ଯଦି ରାଷ୍ଟ୍ରପତିଙ୍କ ଅଙ୍ଗରକ୍ଷକମାନଙ୍କର ପରେଡ୍ ଦେଖିଛନ୍ତି, ତା ହେଲେ ବୁଝି ପାରୁଥିବେ । ସବୁ ହେଲେ ମଧ୍ୟ ପଗଡ଼ିଟା ବାହାରେ ମାନେ ଖୋଲା ଆକାଶତଳେ ଏବଂ ପ୍ରଶସ୍ତ ବିରାଟ ଦରବାର୍ ହଲ୍‌ରେ ମଧ୍ୟ ଚଳିବ । କିନ୍ତୁ ଘର ଭିତରେ ମାନେ ନାହିଁ । ଏଣୁ ଘରକୁ ଆସିଲେ ପଗଡି କାଢିଦେବା ବିଧି । କିନ୍ତୁ ଉତ୍ତର ଭାରତରେ ଗୋଟିଏ ମାନ୍ୟତା ଥିଲା ଯେ ଖୋଲା ମୁଣ୍ଡରେ ବଡ଼ମାନଙ୍କୁ ଦେଖାଦେବା ଅତ୍ୟନ୍ତ ବେଆଦବ । ଏହି କାରଣରୁ ହିଁ ଉତ୍ତର ଭାରତରେ ସ୍ତ୍ରୀ ମାନଙ୍କର ଓଢଣା ଦେବା ପ୍ରଥା ।

ଏଣୁ ଘର ଭିତରେ ମୁଣ୍ଡକୁ ଘୋଡ଼େଇବାକୁ ଟୋପିର ଆବିଷ୍କାର । ଆଗରୁ କହିଛି ଯେ ଆମ ଦେଶରେ ଟୋପି ନଥିଲା । କଥାଟା ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଆମ ଦେଶର ବର୍ଷା ବହୁଳ ଅଞ୍ଚଳରେ ପଗଡ଼ିଟା ମୋଟେ କାର୍ଯ୍ୟକାରୀ ନୁହେଁ । ଏଣୁ ସେମାନେ ଖରାବର୍ଷା ଉଭୟରୁ ନିଜକୁ ରକ୍ଷା କରିବାକୁ ଏକ ହ୍ୟାଟ ଭଳିଆ ଜିନିଷ ଆବିଷ୍କାର କରିଥିଲେ । କିନ୍ତୁ ତା ମଧ୍ୟ ବାହାରେ ବ୍ୟବହାର କରିବା ଲାଗି । ସେ ସବୁ ଯାଗାରେ ଘରଭିତରେ ଖୋଲା ମୁଣ୍ଡରେ ରହିବାହିଁ ପ୍ରଥା ।

ମୁସଲମାନ ବା ଆଫ୍‌ଗାନ୍ ମାନେ ଯେତେବେଳେ ଭାରତକୁ ଆସିଲେ ସେମାନେ ମଧ୍ୟ ପଗଡି ବାନ୍ଧୁଥିଲେ । କିନ୍ତୁ ତାଙ୍କ ପଗଡ଼ି ହେଲା ଅନ୍ୟରକମ ।

ପ୍ରଥମେ ଏକ ସୂଚୀପଗ ବା କୋନ୍‌କାଲ ଟୋପି ପିନ୍ଧା ହେଉଥିଲା, ଯାହାର ନାମ ଥିଲା କୁଲ୍ଲା । ତା ଉପରେ ପଗଡ଼ି ବନ୍ଧା ହେଉଥିଲା । ପରେ ଏହାଥିରେ ହିଁ ଘରେ ପିନ୍ଧିବା ପାଇଁ ନାନା ରକମର ଟୋପି ବାହାରିଲା ଓ ଧୀରେ ଧୀରେ ଚଳନ୍ତି ହୋଇଗଲେ । ପରନ୍ତୁ କେତେକ ବିଶେଷ ଶ୍ରେଣୀ ଓ ଜାତି ମଧ୍ୟରେ ହିଁ ହେଉଥିଲା ଏବଂ ଉତ୍ତର ଭାରତରେ ସାଧାରଣ ହିନ୍ଦୁ ମୁସଲମାନ ଟୋପି ହିଁ ପିନ୍ଧିଲେ । କିନ୍ତୁ ତାର ପ୍ରକାର ଅସଂଖ୍ୟ ।

ମୁଁ ଯେତେବେଳେ ପିଲାଦିନେ ଉତ୍ତର ପ୍ରଦେଶ (ସେ ସମୟର ଯୁକ୍ତ ପ୍ରଦେଶ)ରେ ଥିଲି ଅନେକ ରକମର ଟୋପି ଦେଖିବାକୁ ମିଳୁଥିଲା । ପ୍ରଥମ ହେଲା କଳାରଙ୍ଗର ଫେଲ୍‌ଟରେ ତିଆରି ହୋଇଥିବା ଏକ ଗୋଲ ଟୋପି । ଏହା ସାଧାରଣତଃ ହିନ୍ଦୁ ବ୍ୟବସାୟୀ ଶ୍ରେଣୀରେ ଦେଖାଯାଉ ଥିଲା । ତା ଛଡ଼ା ଫେଲ୍‌ଟର ଆଉ ଏକ ପ୍ରକାର କଳାଟୋପି ଥିଲା ଯାହା ଗାନ୍ଧି ଟୋପି ଭଳି ଚପି ଦେଲେ ସମାନ ହୋଇ ଯାଉଥିଲା । ଏହି ଟୋପି ଅମଲାବର୍ଗ କାୟସ୍ଥ ମାନଙ୍କ ଭିତରେ ବେଶି ଥିଲା । ମୁସଲ ମାନଙ୍କ ଭିତରେ ଖଦଡ଼ରେ ଚିକନ କାମ କରାହୋଇଥିବା ଦୁପଲ୍ଲି ଟୋପି ବେଶି ଚଳୁଥିଲା । ଯେଉଁମାନେ ବେଶି ମୁସଲମାନ ରାଜଭକ୍ତିରେ ଥିଲେ, ସେମାନେ ଟ୍ୟାସେଲ୍ ଲଗିଥିବା ନାଲିରଙ୍ଗର ଫେଜ୍ ଟୋପି ବା କଳା ଚମଡ଼ା ବା ଭେଲଭେଟର ଲମ୍ବା ଟୋପି ପିନ୍ଧୁଥିଲେ ଯାହା କାଳକ୍ରମେ ଜିନ୍ନା କ୍ୟାପ ବୋଲି ପ୍ରସିଦ୍ଧ ହୋଇଥିଲା । ଏଠି ଫେଜ୍ କ୍ୟାପର କିଛିଏ ଇତିହାସ ବର୍ଣ୍ଣନା କରାଯାଉ । ଏ ଟୋପି ପ୍ରଥମେ ସର୍ ସୈୟଦ ଅହମଦ ଚଳାଇଲେ । ସେ ମୁସଲମାନ ମାନଙ୍କ ମଧ୍ୟରେ ଇଂରେଜୀ ଶିକ୍ଷା ବିସ୍ତାରର ଚେଷ୍ଟାକଲେ ଏବଂ ତା ଦ୍ୱାରା ମୁଲ୍ଲା ସମ୍ପ୍ରଦାୟର ଅତିରିକ୍ତ ଚକ୍ଷୁଶୂଳ ହୋଇଥିଲେ । ମୁଲ୍ଲା ଶ୍ରେଣୀ ତାଙ୍କୁ ବିଧର୍ମୀ କହିବାକୁ ମଧ୍ୟ ପଶ୍ଚାତ୍‌ପଦ ହୋଇନାହିଁ । ତାଙ୍କଲାଗି ମୁଲ୍ଲାମାନେ ଏକ ଅଦ୍ଭୁତ ନାମ କରଣ ସୃଷ୍ଟି କଲେ । "ନୈଚରୀ" ଅର୍ଥାତ ସେ ନେଚର (Nature)କୁ ମାନୁଥିଲେ । ଅର୍ଥାତ୍ ମୁସଲମାନମାନଙ୍କୁ ବିଜ୍ଞାନ ଚର୍ଚ୍ଚା କରିବାକୁ ପ୍ରବର୍ତ୍ତାଉଥିଲେ । କାଳକ୍ରମେ ଏହା ଆଲିଗଡ଼ ମାର୍କା ମୁସଲିମ୍ ମାନଙ୍କର ଚିହ୍ନ ହୋଇଗଲା । ଏବଂ ଏମାନଙ୍କ ଭିତରୁ ଅନେକ ଯେ ଅତ୍ୟନ୍ତ କଟ୍ଟର ମୁସଲମାନ ଥିଲେ ତା ନିଃସନ୍ଦେହ । କିନ୍ତୁ ଅଧିକାଂଶ ଭଦ୍ର ଶିକ୍ଷିତ ଲୋକ ଗୋଟିଏ ଛୋଟିଆ ଟୋପି ପିନ୍ଧୁଥିଲେ । ତାହା ଶେରଓ୍ୱାନର କନାରେ ହେଉଥିଲା ଏବଂ ପ୍ରତ୍ୟେକ ଶେରଓ୍ୱାନର ମ୍ୟାଚ କରି ଟୋପ ଥିଲା । ଏହି ଟୋପି ତିଆରରେ ଠିକ୍ ଗାନ୍ଧି ଟୋପି ପରି ।

କେବଳ ଗାନ୍ଧି ଟୋପି ଧଳା ଖଦଡ଼ରେ ହେଉଥିଲା । ଏବଂ ତା ସବୁ ରଙ୍ଗ ସାଙ୍ଗେ ମ୍ୟାଚ କରେ ବୋଲି ଧରାଯାଉଥିଲା । ଏଣୁ ସେ ସମୟରେ ଖାଲି ମୁଣ୍ଡ ଗଣତି ନୁହେଁ, ମୁଣ୍ଡ ଚିହ୍ନଟ ମଧ୍ୟ ହୋଇ ଯାଉଥିଲା । କିଏ କଂଗ୍ରେସୀ, କିଏ ଲିଗ, କିଏ କାୟସ୍ଥ, କିଏ ବଣିଆ ଚାହିଁଦେଲେ ହିଁ ଜଣା ପଡିଯାଉଥିଲା । ଏଣୁ ପ୍ରତ୍ୟେକର ସ୍ଥାନ ଓ ପଦ ମର୍ଯ୍ୟାଦା ଠିକ୍ । ଏହାର ଖିଲାପ କଲେ ସାମାଜିକ ଶାସ୍ତି ଭୋଗିବାକୁ ହେଉଥିଲା ।

ଟୋପି ଓ ପଗଡ଼ିର ଗୋଟେ ସାଲିସ ମଧ୍ୟ ଦେଖାଯାଉଥିଲା । ତା ଏକ ଶ୍ରେଷ୍ଠ ପଗଡ଼ି ଯାହା ଆଗରୁ ରେଡ଼ିମେଡ଼୍ ବନ୍ଧା ହୋଇ ମିଳୁଥିଲା ଏବଂ ତାକୁ ଟୋପି ପରି ପିନ୍ଧି ଓ କାଢି ହେଉଥିଲା । ଆଗେ ଅନେକ ଓକିଲ ମୁକ୍ତାର ଏହି ପ୍ରକାର ପଗଡ଼ି ପିନ୍ଧୁଥିଲେ ଯାହାର ନାମ ଥିଲା ଶମ୍ଲା । ତା ଛଡ଼ା ଏପରି ରେଡିମେଡ୍ ପଗଡ଼ିର ଚଳ ମହାରାଷ୍ଟ୍ର ଓ ମହୀଶୂରରେ ମଧ୍ୟ ଥିଲା । କିନ୍ତୁ ଖାଣ୍ଟି ପଗଡ଼ି ଦେଖିଲେ କହିହେଉଥିଲା ଯେ ସେ ହୁଏତ ଶିଖ୍ ବା ପଠାନ ନହେଲେ କୌଣସି ନେବର ଷ୍ଟେଟର କର୍ମଚାରୀ ଏବଂ ପ୍ରତ୍ୟେକଙ୍କୁ ପଗଡ଼ି ଦେଖି ଚିହ୍ନି ମଧ୍ୟ ହେଉଥିଲା ।

ଏମାନଙ୍କଠୁ ଆଉ ଏକ ଶ୍ରେଣୀର ଅଲଗା ଲୋକ ଥିଲେ ଯେଉଁମାନଙ୍କୁ କୁହାଯାଉଥିଲା ମଡର୍ଣ୍ଣ । ଅର୍ଥାତ ଏପରି ଭାରତୀୟ ଥିଲେ ଯେଉଁମାନେ ଅନେକଟା ପାଶ୍ଚାତ୍ୟ ଜୀବନ ପ୍ରଣାଳୀ ଗ୍ରହଣ କରି ନେଇଥିଲେ । ସେମାନେ ସାଧାରଣତଃ ବାରିଷ୍ଟର, ବଡ଼ ଡ଼ାକ୍ତର ବା କଭେନେଣ୍ଟେଡ୍ ସର୍ଭିସର ଭାରତୀୟ ଅଫିସର । ଏମାନେ ସାଧାରଣତଃ ପାଶ୍ଚାତ୍ୟ ପୋଷାକ ପିନ୍ଧୁଥିଲେ ଓ ଶିଖ୍ ହୋଇ ନଥିଲେ ମୁଣ୍ଡରେ ପାଶ୍ଚାତ୍ୟ କାଇଦାମାଫିକ ହ୍ୟାଟ୍ ପିନ୍ଧୁଥିଲେ । ଏହି ପୋଷାକ ଓ ଶିରାଭରଣ ଶାସକ ଗୋଷ୍ଠୀର ହୋଇ ଥିବାରୁ ଅସଂଖ୍ୟ କୁତ୍ସା ସତ୍ତ୍ୱ ବହୁ ପରିମାଣରେ ଅନୁକରଣ କରାହେଉଥିଲା । ଫଳତଃ ମଧ୍ୟବିତ୍ତ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀ ପୁରୁଷଙ୍କ ଭିତରେ ଲୁଗାପଟାର ଏକ ଅଦ୍ଭୁତ୍ ସମନ୍ୱୟ ଦେଖିବାକୁ ମିଳୁଥିଲା । ଅନେକ ସମୟରେ ଏହା ଏପରି ଅଦ୍ଭୁତ୍ ଯେ ହାସ୍ୟ ସମ୍ବରଣ କରିବା କଷ୍ଟ । ସେତେବେଳର ମାଡ୍ରାସି ହେଡ୍‌କ୍ଲର୍କଙ୍କର ପୋଷାକ ଥିଲା ମୁଣ୍ଡରେ ମହୀଶୂର ପଗଡ଼ି, କୋର୍ଟ, ସାର୍ଟ ଓ ନେକଟାଇ । ସାର୍ଟଟା ଧୋତିଭିତରେ ଖୋସା ଓ ଗୋଡ଼ରେ ଚଟି । ଉତ୍ତରଭାରତର ହିନ୍ଦୁ ମୁସଲମାନ କିରାଣୀଙ୍କ ଡ୍ରେସ ଥିଲା ଧଳା ପାଇଜାମା, ଧଳା ବା ରଙ୍ଗୀନ ସାର୍ଟ, ଯାହାର କଲର ବୋତାମ ବନ୍ଦ କରା ହେଉଥିଲା ଏବଂ ତା ସହିତ କୋଟ ଏବଂ ମୁଣ୍ଡରେ ଶ୍ରେଷ୍ଠ କଳା ଟୋପି । ଚଟି ପିନ୍ଧିବାଟା ବେଆଦବି ବୋଲି ଧରାଯାଉଥିଲା ଏବଂ ଲୋକେ ସାଧାରଣତଃ ହାଫ୍‌ଶୁ ପିନ୍ଧୁଥିଲେ । ସେ ଡ୍ରେସ ସେପରି ଶିକ୍ଷିତ ଭାରତର ପ୍ରତୀକ । ଇଂରେଜୀ ପୋଷାକ ପିନ୍ଧିବାକୁ ଇଚ୍ଛା, କିନ୍ତୁ ପୁରାପୁରି ଇଂରେଜ ହେବାର ସାହସର ଅଭାବ । ଏଣୁ ନିଜ ଐତିହ୍ୟ ପ୍ରତି ଏକ ତାଚ୍ଛଲ୍ୟ ଭାବ ଏବଂ ଅନୁକରଣ ପୁରା କରିବାର ସାହସର ଅଭାବ ହେତୁ ଏକ ମାନସିକ ସମନ୍ୱୟର ଅଭାବ ଦେଖାଯାଉଥିଲା ।

ଏଥିରୁ ଅବଶ୍ୟ ଗୋଟିଏ କଥା ବାହାରିଲା । ଶିରରେ ଆଚ୍ଛାଦନ କେବଳ ତାର ବ୍ୟବହାରିକତା ଲାଗି ପିନ୍ଧାଯାଏ ନାହିଁ । ଏହା ଏକ ପ୍ରତୀକ ଓ ଶିରସ୍ତ୍ରାଣ ବଦଳାଇବା ଅନେକ ସମୟରେ ଶିର ବଦଳାଇବା ସଙ୍ଗେ ସମାନ । ଲାଲା ହରି ଦୟାଲ ଟୋପି କାଢି ଫେଲଟ ହ୍ୟାଟ ପିନ୍ଧି ହୋଇଗଲେ L. H. Dyal, Esqr । ଏହା କେବଳ ଟୋପି ବଦଳାଇବା ନୁହେଁ । ସମସ୍ତ ସଭ୍ୟତା ଓ ଐତିହ୍ୟ ବଦଳିଗଲା । ଏହା କଣ ପୁନର୍ଜନ୍ମର

କାମ ? ଅଥଚ କ ପୀଡ଼ାଦାୟକ ପଦ୍ଧତିରେ ସମ୍ପନ୍ନ ହେଲା ! ମୁଁ ସମାଜଶାସ୍ତ୍ର ପଣ୍ଡିତ ଗଣଙ୍କୁ ଅନୁରୋଧ କରୁଛି ଏ ବିଷୟରେ କିଛିତ ଗବେଷଣା କରିବାକୁ । ବର୍ତ୍ତମାନ ସମାଜରେ ଯେଉଁ ସଙ୍ଘାତ ଦେଖାଯାଉଛି ତା କେତେ ପରିମାଣର ଟୋପି ପରି ସରଳ ଓ ଶସ୍ତା ଅନ୍ୟ ଦୁନିଆରୁ କିଛି ସମସ୍ତ ଲଗି ଖସି ଯିବାର ରାସ୍ତାର ଅଭାବ ଦାୟୀ । ଏଥିରେ ଆଉ କିଛି ହେଉ ନହେଉ କେତେଜଣଙ୍କୁ ଡକ୍ଟରେଟ ତ ମିଳିଯିବ ।

ବର୍ତ୍ତମାନ ସେହି ଗୋଲଟୋପି ଓ ଲମ୍ବାଟୋପି କଥାକୁ ଫେରି ଆସିବା । ପରେ କାର୍ଯ୍ୟ କ୍ଷେତ୍ରରେ ଜାଣିଲି ଯେ ଦେଓବନ୍ଦରେ ଏକ ପୃଥିବୀ ପ୍ରସିଦ୍ଧ ଇସଲାମୀ ବିଦ୍ୟାଚର୍ଚ୍ଚାର ଅନୁଷ୍ଠାନ ଅଛି ଯେଉଁଠାକୁ ସାରା ଇସଲାମୀ ଦୁନିଆର ଛାତ୍ର ଆସିଥାଆନ୍ତି । ସେହିପରି ଆଜମଗଡ଼ ଏତେ ପ୍ରସିଦ୍ଧ ନହେଲେ ମଧ୍ୟ ଇସଲାମୀ ବିଦ୍ୟାଚର୍ଚ୍ଚାର ଏକ କେନ୍ଦ୍ର । ଏବଂ ଏହି ଦୁଇସ୍ଥାନର ସୁପଣ୍ଡିତ ମୌଲନା ମାନଙ୍କର ଧାର୍ମିକ ସିଦ୍ଧାନ୍ତ ସମ୍ବନ୍ଧରେ ଅନେକ ମତଭେଦ ଏବଂ ତାଙ୍କର ଖଣ୍ଡନ ମଣ୍ଡନ ଶାସ୍ତ୍ରଲାପ ବୁଝିବା ମୋ ପକ୍ଷରେ ଓ କଟକର ସାଧାରଣ ମୁସଲମାନ ପକ୍ଷରେ ଅସମ୍ଭବ । ଏଣୁ ସେ ସମସ୍ତ କଥାଟାକୁ ଏକ ପ୍ରତୀକରେ ସମଷ୍ଟିଭୂତ କଲି ଗୋଲଟୋପି ଓ ଲମ୍ବାଟୋପି । ପଣ୍ଡିତ, ପାଠକ ବର୍ଗ, ମୂରୁକିହସା ଦିଅନ୍ତୁ ନାହିଁ । ଗୋଟେ ଜାତି ଯୁଦ୍ଧ କରେ ତାର ପତାକାର ସମ୍ମାନ ପାଇଁ । କେତେ ସହସ୍ର ଅକାତରେ ପ୍ରାଣଦେଇ ଦିଅନ୍ତି । କିନ୍ତୁ ସେ ପତାକାର କନାର ଦାମ୍ ପାଞ୍ଚଟଙ୍କା ମାତ୍ର । କଣ ସେମାନଙ୍କ ଜୀବନ ଏତେ ଶସ୍ତା ନା ପତାକା ଏକ ଅମୂଲ୍ୟ ବାସ୍ତବତାର ପ୍ରତୀକ ? ଏଣୁ ପ୍ରତୀକ ତାର ସମ୍ମାନର ହକ୍‌ଦାର ।

ସେହି ଗୋଲ ଲମ୍ବା ଟୋପି ଝଗଡ଼ା ସମ୍ବନ୍ଧରେ ଏକ ଆମୋଦଜନକ କଥା ମନେ ପଡ଼ିଲା । ସେମିନାରୀ ସ୍କୁଲଠାରୁ ମଙ୍ଗଳାବାଗ ଆସିବା ରାସ୍ତାରେ ସେ ସମୟରେ ଆଲୁଅର କୌଣସି ବନ୍ଦୋବସ୍ତ ନଥିଲା । ଏବଂ ସେ ରାସ୍ତାରେ ପଡୁଥିଲା ମୁସଲମ୍ କବର ସ୍ଥାନ ଓ ତାର କିଛି ପରେ ଛେଳି କଟା ହେବା କଂସେଇଖାନା । ଅନ୍ଧାରରାତିରେ ଏପଟକୁ ଯିବାଲାଗି କାହାର ଆଗ୍ରହ ନ ଥିଲା । ହଠାତ୍ ଏକ ଗୁଜବ ଶୁଣାଗଲା ଯେ ଠିକ୍ ରାତି ଦଶ ଟା ବେଳକୁ ସେ ରାସ୍ତାରେ ଏକ ଅଦ୍ଭୁତ୍ ଦୃଶ୍ୟ ଦେଖିବାକୁ ମିଳୁଛି । ଏକ ମୂର୍ତ୍ତି କବର ସ୍ଥାନ ଓ ଛେଳିହଣାଘର ମଝିରାସ୍ତାରେ ବୁଲୁଛି । ସେ ମୂର୍ତ୍ତି ଗୋଟେ ଡେଙ୍ଗା ଲୋକ ପରି । ଫକିର ପରି ଡ୍ରେସ ମୁଣ୍ଡରେ ଟୋପି କି ପଗଡ଼ି ଜାଣି ହେଉନାହିଁ । ସେ ମୂର୍ତ୍ତି ବେକରେ ଦୁଇଟି ତବଲା ଝୁଲଇଛି ଓ ତାକୁ ବଜାଉଛି ଏବଂ ତାଳ ଦେଇ ନାଚୁଛି । ବହୁଲୋକ ଏହାକୁ ଦେଖିବାର କୁହାଯାଉଛି । କିନ୍ତୁ କୌଣସି ଦେଖିଥିବା ଲୋକ ସହିତ ସାକ୍ଷାତ ପରିଚୟ ହୋଇପାରିନାହିଁ । କେତେକ ଲୋକ କହୁଛନ୍ତି ଏହା ଖବିସ ( ଅର୍ଥାତ୍ ମିଆଁ ଭୂତ ), କେତେକ କହୁଛନ୍ତି ତକାଯୁତ ଏବଂ ଆଉ କେତେକ ମଧ୍ୟ କହୁଛନ୍ତି ଏହା ସି,ଆଇ,ଡି ।

ହେ ସୁଶୀଳ ପାଠକ, ଆପଣ ଏହା ମଧ୍ୟରୁ ହିରଣ୍ମୟ ପାତ୍ରର ମୁଖ ଉନ୍ମୋଚନ କଲେକି ? ଦେଖନ୍ତୁ ଏଠି କି ପ୍ରତୀକ । ଜନତା ତାର ଭୟର କାରଣ ସବୁ ଏକତ୍ରିତ କରି ଏକ କାଳ୍ପନିକ ମୂର୍ତ୍ତି ଗଠନ କରିଛି । ଲୋକେ ଡରନ୍ତି ଭୂତକୁ, ଚୋର, ଡକାୟତକୁ । ପୁଲିସ ମଧ୍ୟ ଭୟର କାରଣ । କିନ୍ତୁ ଏଥିରେ ସେମାନେ ନେଇଛନ୍ତି ପୁଲିସର ସେହି ଶାଖାକୁ ଯାହା ଗୋପନୀୟ କାର୍ଯ୍ୟ କରୁଥିବାରୁ ଭୂତ ସାଙ୍ଗେ ମଧ୍ୟ ସାମିଲ । ଏଣୁ ଏହି ସବୁ ଭୟକୁ ପୁଂଜୀଭୂତ କରି ସୃଷ୍ଟି ହୋଇଛି ଏକ ପ୍ରତୀକ । ଧରନ୍ତୁ ତାକୁ ନାଁ ଦେଲୁ ଭୟଦେବତା । ଏହି ଅପଦେବତା ସଙ୍ଗେ ସାରା ଜୀବନଟା ଲଢିଯିବାକୁ ହେବ ।



# ଲୈଲି ଓ ରାଧା - ଏକ ବିଶ୍ଳେଷଣ

ଲୈଲି ମଜନୁ କଥାଟା ହିନ୍ଦି ଚଳଚିତ୍ର ଦୟାରୁ ଆପଣ ନିଶ୍ଚୟ ଶୁଣିଥିବେ । ତା ସାଥିରେ ନିଶ୍ଚୟ ଭାବି ନେଇଥିବେ ଯେ ଏହା ମଧ୍ୟ ଏକ ଚିର ପରିଚିତ ପ୍ରେମିକ ପ୍ରେମିକା କାହାଣୀ । ସନାତନ ପଦ୍ଧତିରେ ଏହି କାହାଣୀର ପରିଶେଷ ବିବାହ ବା ମୃତ୍ୟୁ ( ଅନେକ ରସିକଙ୍କ ମତରେ ଉଭୟ ମୋଟା ମୋଟି ଏକା ଜିନିଷ ) । ଲୈଲି ମଜନୁର କାହାଣୀ ଦୁଇଧାଡ଼ିରେ ଶେଷ କରିଯାଇପାରେ । ମଜନୁର ପ୍ରକୃତ ନାମ କୈସ । ସେ ଲୈଲିକୁ ପ୍ରେମ କରୁଥିଲା । ଲୈଲିର ବିବାହ କୌଣସି ସୁଲତାନ ସହିତ ହୋଇଗଲା । ଫଳରେ କୈସ୍ ପାଗଳ ହୋଇଗଲା । ସେହି ଦିନଠାରୁ ତାର ନାମ ହୋଇଗଲା ମଜନୁ ଅର୍ଥାତ ପାଗଳ । ଲୈଲିକୁ ତାର ସ୍ୱାମୀ ପାଖକୁ ଓଟରେ ବସାଇ ନେଇଗଲେ । ମଜନୁ ପାଗଳ ହୋଇ ମରୁଭୂମିରେ ବୁଲୁଥିଲା ଓ ଓଟର କାରାଭାନ୍ ଦେଖିଲେ ସେଠି ତାର ଲୈଲିକୁ ଖୋଜୁଥିଲା ଏବଂ ଶେଷରେ ଦିନେ ସେହି ମରୁଭୂମିରେ ଇହଲୀଳା ସାଙ୍ଗ କଲା । ଗୋଟିଏ କିମ୍ବଦନ୍ତୀ ଅଛି ଯେ ଲୈଲି କାଳି ଥିଲା, କିନ୍ତୁ ସୁନ୍ଦରୀ ଅବଶ୍ୟ ଥିଲା ତା ନହେଲେ ସୁଲତାନ ବାଦଶାହ କାହିଁକି ତାକୁ ଲେଡ଼ି ଲେଡ଼ି ବାହା ହୋଇଥାନ୍ତେ ? ସେତେବେଳେ ମଧ୍ୟ ପ୍ରାଚ୍ୟର ଅଧିକାଂଶ ସୁଲତାନ ସୁନ୍ଦରୀ ସଂଗ୍ରହ କରୁଥିଲେ । ଆଜିକାଲିର ଲୋକେ ଡ଼ାକ ଟିକଟ ସଂଗ୍ରହ କଲାଭଳି । ଆପଣେ ଜାଣନ୍ତି ଯେ ଡାକଟିକଟ ସଂଗ୍ରହକାରୀ ମାନେ ଅନ୍ତର୍ଦେଶୀୟ ପତ୍ର ସଂଗ୍ରହ କରନ୍ତି ନାହିଁ । ଏଣୁ ଏହା ନିର୍ବିବାଦ ଯେ ଲୈଲି ଅସାଧାରଣ ସୁନ୍ଦରୀ ଥିଲା । କିନ୍ତୁ ଲୈଲିର ସାର୍ଥକତା ସାଧାରଣ ନାରୀଠାରୁ ଅନେକ ଉପରେ । କାରଣ ତାର ସୌନ୍ଦର୍ଯ୍ୟ ନାରୀ ବିଶେଷର ସୌନ୍ଦର୍ଯ୍ୟହିଁ ନୁହେଁ ତାହା ଏକ ନୂତନ ସଂସାର, ଏକ ନୂତନ ଜୀବନ । ଏହି ଲୈଲିକୁ ଚିହ୍ନିବାର ସବୁଠାରୁ ପ୍ରଶସ୍ତ ମାଧ୍ୟମ ସାହିତ୍ୟ । ସାହିତ୍ୟ ଦିଏ ଆମକୁ ଅନେକ ନୂତନ ଚକ୍ଷୁ । ଟିକିଏ ଚେଷ୍ଟା କଲେ କବି ବା ଲେଖକଙ୍କର ଅନ୍ତର୍ଦୃଷ୍ଟିରୁ କିଛିଟା ଆମେ ମଧ୍ୟ ପାଇଯାଉ ଏବଂ ତା ଦ୍ୱାରା କେତେକ ପରିମାଣରେ ତ୍ରିକାଳଦର୍ଶୀ ହୋଇଯାଉ ।

ପ୍ରକୃତରେ ଅସଲ ଲୋକ ହେଲା ମଜନୁ । କାରଣ ଲୈଲିକୁ ଆମେ ପାଉ ଏକ ଲକ୍ଷ୍ୟ, ଏକ ଧ୍ୟେୟ ହିସାବରେ । କିନ୍ତୁ ଯେ ତାକୁ ଧ୍ୟାନ କରୁଛି, ଯେ ସେ ଲକ୍ଷ୍ୟ ପଛରେ ଛୁଟିଛି, ସେ ପାଗଳ ହୋଇପାରେ, କିନ୍ତୁ ଲକ୍ଷ୍ୟ ଅପେକ୍ଷା ବେଶି ମହତ୍ତ୍ୱପୂର୍ଣ୍ଣ ।

କାରଣ ସେ ମାନବୀୟ, ସେ ଗତିଶୀଳ ଅର୍ଥାତ Dynamic । ପ୍ରତି ଯୁଗରେ କେତେ ମଜନୁ ସୃଷ୍ଟି ହୋଇଛନ୍ତି ଏବଂ ସେମାନେ ସେହିପରି ଲୈଲି ମଧ୍ୟ ପାଇଛନ୍ତି । ଏ ବିଷୟରେ ଉର୍ଦ୍ଦୁରେ ଏକ ଆପ୍ତବାକ୍ୟ ଅଛି—

"ମଜନୁକେ ଦମ୍‌କା ରୈନକ ମୁଦନ୍ତ ହୁଇ ସିଧାରେ
ଅବ କୈଁୟା ନଜଦ୍‌କେ ବଗୋଲେ ମହମିଲକୋ ଢୁଁଢତେ ହେଁ ।

ଅର୍ଥ—କେଉଁ କାଳୁତ ମଜନୁ ତାର ଶେଷ ନିଶ୍ୱାସ ତ୍ୟାଗ କଲାଣି । କିନ୍ତୁ ଏ ପର୍ଯ୍ୟନ୍ତ କାହିଁକି ମରୁଭୂମିର ଝଡ଼ ଓଟର ହାଉଦା ଖୋଜି ବୁଲୁଛି ?

ଏହାର ବ୍ୟାଖ୍ୟା ଆବଶ୍ୟକ । ଆଗରୁ କହିଛି ଯେ କୈସ ଲୈଲି ବିରହରେ ପାଗଳ ହୋଇଯାଇଥିଲା । ଲୈଲିକୁ ଓଟର ବନ୍ଦ ହାଉଦାରେ ବସାଇ ସୁଲତାନର ଅନ୍ତଃପୁରକୁ ନେଇଗଲେ । ପାଗଳ ମଜନୁ ନଜଦ (ଇରାକର ଏକ ଅଞ୍ଚଳ) ମରୁଭୂମିରେ ପ୍ରତି କାରାବାନ୍‌ରେ ତାର ଲୈଲିକୁ ଖୋଜିବୁଲୁଥିଲା । ମଜନୁର ପାର୍ଥିବ ମୃତ୍ୟୁ ପରେ ମଧ୍ୟ ମଜନୁର ନିଶ୍ୱାସ ଝଡ଼ ହୋଇ ସେହି ସନ୍ଧାନରେ ଲାଗିଛି । ଅର୍ଥାତ ଲୈଲିର ବିରହ ବେଦନା ଓ ତା ସହିତ ମିଳନର ତୃଷ୍ଣା କୌଣସି ପାର୍ଥିବ ମଜନୁ ଉପରେ ନିର୍ଭରଶୀଳ ନୁହେଁ । ଏ ସଧାନ ଚିରନ୍ତନ । କିନ୍ତୁ କାହାର ଓ କାହିଁକି ?

ମଜନୁ ଚିରନ୍ତନ ବିଦ୍ରୋହୀ । ମଜନୁ ତାର ଭାଗ୍ୟଦତ୍ତ ଅବସ୍ଥାକୁ ସ୍ୱୀକାର କରିବାକୁ ରାଜିନୁହେଁ । ସେ ମଧ୍ୟ ଲୈଲିକୁ ଭୁଲିଯାଇ ଅନ୍ୟ ଏକ ସ୍ତ୍ରୀଲୋକ ସହିତ ଘର ସଂସାର କରିପାରିଥାନ୍ତା । ତାଦ୍ୱାରା ହୁଏତ କିଛି ସୁଖ ସ୍ୱାଚ୍ଛନ୍ଦ୍ୟ, କିଛି ଶାନ୍ତି ମଧ୍ୟ ଯୋଗାଡ଼ କରି ପାରିଥାନ୍ତା । କିନ୍ତୁ ସେଥିଲାଗି ପ୍ରଥମ ସର୍ତ୍ତ ହେଲା ଭାଗ୍ୟଠାରେ ଆତ୍ମ-ସମର୍ପଣ । ଏହା କେତେକ ମନୁଷ୍ୟଙ୍କ ପକ୍ଷରେ ସମ୍ଭବ ନୁହେଁ । ଗ୍ରୀକ୍ ପୁରାଣର ପ୍ରମେଥିୟସକୁ କେହି ନିଆଁ ଚୋରି କରିବାକୁ ବାଧ୍ୟ କରି ନଥିଲା । କିନ୍ତୁ ଭାଗ୍ୟ ସହିତ ସଂଘର୍ଷ କରିବା ଏବଂ ତା ଉପରେ ବିଜୟ ପାଇବାର ଅର୍ଥ ହେଲା ମନୁଷ୍ୟର ସ୍ୱାଧୀନତା ଘୋଷଣା । ସେ ଅବସ୍ଥାର ଦାସ ନୁହେଁ । ଏଣୁ ଲୈଲିର ସନ୍ଧାନ ଏକ ନାରୀ ବିଶେଷର ସନ୍ଧାନ ନୁହେଁ । ତା ମଜନୁର ସ୍ୱତନ୍ତ୍ରତାର ସନ୍ଧାନ । ଲୈଲିର ପ୍ରେମ ବଳରେ ସେ ନିଜକୁ ପାରିପାର୍ଶ୍ୱିକ ଅବସ୍ଥାର ବନ୍ଧନରୁ ମୁକ୍ତ କରିବାର ଚେଷ୍ଟା କରୁଛି । ଲୈଲି ନଥିଲେ ମଧ୍ୟ ସେ ଚେଷ୍ଟାର ଶେଷ ନାହିଁ ।

ଏ ଭାବଧାରା ମଧ୍ୟପ୍ରାଚ୍ୟରେ ନିଜକୁ ସୁଫୀମତ ମାଧ୍ୟମରେ ପ୍ରକାଶ କଲା । ପ୍ରଥମ ସୁଫୀ ମନସୁର । ସେ ଘୋଷଣା କଲେ 'ଅନଲହକ୍' ଅର୍ଥାତ ମୁଁ ସତ୍ୟ । ଏପରି ବୈପ୍ଳବିକ ଭାବଧାରା ମୁଲ୍ଲା ପ୍ରତି ଅସହ୍ୟ । ମନସୁରଙ୍କୁ ଅଶେଷ ଯନ୍ତ୍ରଣା ଭୋଗ କରାଇ

ଯାଇଲି ପରେ ପ୍ରାଣଦଣ୍ଡ ଦିଆଗଲା । କିନ୍ତୁ ମୁଲ୍ଲା ସୁଫୀ ମତକୁ ପ୍ରାଣଦଣ୍ଡ ଦେଇ ପାରିଲେ ନାହିଁ । ଆଉରଙ୍ଗଜେବ ସୁଫୀ ମତର ଘୋର ବିରୋଧୀ ଥିଲେ । ପ୍ରଥମ କାରଣ ଏହା ମୁଲ୍ଲା ପ୍ରବର୍ତ୍ତିତ ଇସଲାମ୍‌ର ସ୍ୱରୂପକୁ ବିନା ପ୍ରଶ୍ନରେ ମାନିବାକୁ ପ୍ରସ୍ତୁତ ନଥିଲା, ଏବଂ ତା ଠାରୁ ବଡ଼ କାରଣ ଯେଉଁ ଜ୍ୟେଷ୍ଠଭ୍ରାତା ଦାରାଶିକୋହଙ୍କୁ ହତ୍ୟା କରି ସେ ସିଂହାସନରେ ବସିଥିଲେ ସେହି ଦାରା ଥିଲେ ସୁଫୀ ମତ ଅନୁଯାୟୀ । ଆଉରଙ୍ଗଜେବ ସେ ସମୟର ପ୍ରଧାନ ସୁଫୀ ସାଧକ ସରମଦଙ୍କୁ ମୃତ୍ୟୁଦଣ୍ଡ ଦେଇଥିଲେ ।

ସୁଫୀ ମତରେ ଲୈଲି ପରମାତ୍ମା ଓ ମଜନୁ ଜୀବାତ୍ମା । ମରୁଭୂମି ଇହସଂସାର ଯାହା ମଧ୍ୟରେ ମଜନୁ ଅର୍ଥାତ୍ ଜୀବାତ୍ମା ଲୈଲି ରୂପୀ ପରମାତ୍ମାଙ୍କୁ ଖୋଜି ବୁଲୁଥାଏ । ଭାରତୀୟ ଭକ୍ତିବାଦରେ ଭଗବାନ ପ୍ରେମିକ, ଭକ୍ତ ପ୍ରେମିକା । ଅନ୍ତତଃ ବୈଷ୍ଣବ ଭକ୍ତିବାଦରେ ସୁଫୀମତ ଭାରତକୁ ଆସି ଏଠାର ଜଳବାୟୁରେ ଖୁବ୍ ପରିପୁଷ୍ଟ ହେଲା । ତାର କେତେକ ଭାରତୀୟକରଣ ମଧ୍ୟ ହେଲା । ଲୈଲିର ନୂତନ ନାମ ହେଲା ପଦ୍ମାବତୀ । ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ । ମଲିକ୍ ମହମ୍ମଦ ଜାୟସୀ ହିନ୍ଦୀର ମହାକବି । ତୁଳସୀ ଦାସଙ୍କ ପୂର୍ବସୂରୀ । ଏହାଙ୍କ ମହାକାବ୍ୟ 'ପଦମାବତ୍'ର ନାୟିକା ପଦ୍ମାବତୀ ସେହିପରି ପରମାତ୍ମାଙ୍କ ପ୍ରତୀକ ।

ତେବେ ଭାବିବାର କଥା ଏପରି ସାଧୁସନ୍ଥମାନେ ଶରୀରଗତ ପାର୍ଥିବ ପ୍ରେମ ନେଇ ଏତେ ଲେଖାଲେଖି କରିଛନ୍ତି କାହିଁକି ? ଇସଲାମରୁ କିଛି ଉଦାହରଣ ଦେଲି । ବୈଷ୍ଣବ ଭକ୍ତକବିଙ୍କ ବିଷୟରେ କହିବା ଅନାବଶ୍ୟକ । ପାଠକ ତା ଭଲଭାବରେ ଜାଣନ୍ତି । ତେବେ ସମସ୍ତ ଦାର୍ଶନିକ ଓ ଧାର୍ମିକ ଚୋପା ଛଡ଼ାଇ ଦେଲେ ପ୍ରକୃତ ମଞ୍ଜିଟି କଣ ? ମୋର କ୍ଷୁଦ୍ର ବୁଦ୍ଧିରେ ଅନ୍ଧାର ସନାତନ ହିନ୍ଦୀଦର୍ଶନ ପନ୍ଥାରେ ଯେଉଁ ଲିଙ୍କ୍‌ଟି ଧରି ପାରିଛି ତା ଆପଣଙ୍କର ସେବାରେ ନିବେଦନ କଲି । ଭଗବଦ୍ ଭକ୍ତିର ସ୍ୱରୂପ କଥାରେ ପ୍ରକାଶ କରିବା ବୋଧହୁଏ ଅସମ୍ଭବ । କାରଣ ସେ ସ୍ତରର ବାସ୍ତବତା ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ । ଆପଣ କହିବେ ଏ ଅମୃତା ଠିକ ପରି ମିଠା । କିନ୍ତୁ ଯେ ଜୀବନରେ କେବେ ମିଠା ଖାଇନାହିଁ ତାକୁ ତ ଆମ୍ବର ମିଠା ବୁଝାଇ ପାରିବେ ନାହିଁ । ଏଣୁ ଏସବୁ କେବଳ ତୁଳନା ଦ୍ୱାରା ହିଁ ବୁଝାଯାଇ ପାରିବ । ଠିକ୍ ଏହି କାରଣରୁ ଭାଷା ପୂର୍ଣ୍ଣ ଅର୍ଥ ବୁଝାଇବାରେ ଅକ୍ଷମ । ଅତଏବ ତୁଳନା ପାଇଁ ଏକ ମାନବୀୟ ସମ୍ପର୍କକୁ ରୂପକଭାବେ ଗ୍ରହଣ କରାଯାଏ । ଏଥିଲାଗି ହୁଏତ ନାରୀ ଓ ପୁରୁଷର ପ୍ରେମ ବା ମାତା ଓ ସନ୍ତାନର ପ୍ରେମ । ବାତ୍ସଲ୍ୟ ରସର ପ୍ରଧାନ ପ୍ରତୀକ ରୂପେ ଯଶୋଦା, ଦୁର୍ଗା ଓ ମେରୀ । ଏହା ମାଧ୍ୟମରେ ଯେଉଁ ମହତ୍ ଲୋକକୁ ଉଠିବାର ସୋପାନ ମିଳିଯାଏ ତାହା ଅବର୍ଣ୍ଣନୀୟ ! ବଙ୍ଗଳାର ଉତ୍ତମ ଶ୍ୟାମାସଙ୍ଗୀତ, ସୁର ଦାସଙ୍କ ଭଜନ ଇତ୍ୟାଦି ଶ୍ରୋତାକୁ କେଉଁ ଦିବ୍ୟ ଲୋକକୁ ଉଠାଇନିଏ । 'କୋଇଲି ଲୋ ପୁତ୍ର ମୋର

ମଥୁରାକୁ ଗଲ ।'—ଏହାର ଆବେଦନ ମଧ୍ୟ ଅତି ଶକ୍ତିଶାଳୀ । ରୋମାନ୍ କ୍ୟାଥଲିକ ପ୍ରାର୍ଥନା AVE MARIAର ଅର୍ଥ ବୁଝିଲେ ଲୋକ କାନ୍ଦି ପକାଇବ ।

କିନ୍ତୁ ଏହା ମଧ୍ୟ ଯଥେଷ୍ଟ ହୁଏ ନାହିଁ । ଏହାଠାରୁ ମଧ୍ୟ ଗଭୀର ନାରୀ ଓ ପୁରୁଷର ପ୍ରେମ । ସଚରାଚର ଏହାହିଁ ଭକ୍ତିର ଭାଷା ରୂପେ ଗୃହୀତ ହୋଇଛି । ସେହି ଅସୀମ ଓ ଅନନ୍ତ ତୃଷ୍ଣା, ଆତ୍ମାର ପରମାତ୍ମା ସହିତ ମିଳନର ବ୍ୟାକୁଳତା ବୁଝାଇବାକୁ ହେଲେ ନାରୀ ପୁରୁଷର ପ୍ରେମର ମାଧ୍ୟମରେ କେତେଟା ଆଭାସ ଦେଇହେବ । ବିଦ୍ୟାପତିଙ୍କ ରାଧା ଏହି ଆକାଂକ୍ଷା, ଏହି ତୃଷ୍ଣାକୁ ପ୍ରକାଶ କରିଛନ୍ତି, "ଜନମ ଅବଧି ହମ ରୂପ ନିହାରଲ, ନୈନ ନ ତିରପିତ ଭେଲ ।" କାରଣ ସେ ରୂପ ଅନନ୍ତ ଏବଂ ତାକୁ ଦେଖିବାର ତୃଷ୍ଣା ମଧ୍ୟ ଅନନ୍ତ । ସାଧାରଣତଃ ଏହି ସନ୍ଧାନ ଚାଲିବ ଅନନ୍ତ କାଳ ପାଇଁ । କିନ୍ତୁ କୌଣସି କୌଣସି ଭାଗ୍ୟବାନ ( ବା ଭାଗ୍ୟବତୀ ) ଏପରି ଏକ ଅଭିଜ୍ଞତା ଲାଭ କରିବାକୁ ସମର୍ଥ ହୁଅନ୍ତି ଯାହାପରେ ଅନ୍ୟସମସ୍ତ ଅଭିଜ୍ଞତା ଅର୍ଥହୀନ ଓ ଅବାନ୍ତର । ସେହି ବିଦ୍ୟାପତିଙ୍କ ଭାଷାରେ :

"ଆଜୁ ରଜନୀ ହମ ଭାଗେ ଗମାଓଲୁଁ
ପେଖଲୁଁ ପ୍ରିୟାମୁଖ ଚନ୍ଦା
ଜୀବନ ଯୌବନ ସଫଲ କରି ମାନଲୁଁ
ଦଶ ଦିଶ ଭେଲ ନିରଦନ୍ଦା"

ଯେତେବେଳେ ସେ ପରମଲଗ୍ନ ଉପସ୍ଥିତ ହୁଏ, ସଂସାରରେ କୌଣସି ଠାରେ କୌଣସି ଦ୍ୱନ୍ଦ୍ୱ ବା ଦ୍ୱୈତ ରହି ନପାରେ । ଏଣୁ ଦଶଦିଶ ଭେଲ ନିରଦନ୍ଦା, ଅର୍ଥାତ୍ ନିର୍ଦ୍ୱନ୍ଦ୍ୱ । ଏହା ପରମ ଅଦ୍ୱୈତ । ଏହାହିଁ ସୁଫୀର ଅନଲ ହକ୍ । ଫାରସୀ ସୁଫୀ ମହାଜନଙ୍କ ଉକ୍ତି ।

ମନ୍ ତୁ ଶୁଦମ୍ ତୁ ମନ୍ ଶୁଦୀ
ମନ୍ ତନ୍ ଶୁଦମ୍ ତୁ ଜାଁ ଶୁଦୀ

ଅର୍ଥାତ—ତୁ ଓ ମୁଁ ଅଭିନ୍ନ । ତୁ, ମୁଁ ଓ ମୁଁ, ତୁ । ମୁଁ ଶରୀର ଓ ତୁ ପ୍ରାଣ । ଏହାପରେ ସ୍ପଷ୍ଟ ଯେ ଅନ୍ୟ ସବୁ ଅଭିଜ୍ଞତା, ସାମାଜିକ ଜୀବନର ଅନ୍ୟାନ୍ୟ ସମ୍ପର୍କ ଅବାନ୍ତର । ଏଣୁ ଜଗନ୍ନାଥ ଦାସ ଗୋପୀ ଗଣଙ୍କ ମୁହଁରେ କୁହାଇଛନ୍ତି

ଆଉ କି ଗୋପପୁର ଯିବୁଁ ।
ପତି ତନୟୁ ଆଦୋରିବୁଁ

ଆମ୍ଭର ନାହିଁ ତେଣେ ଆଶା
ତୋ ନାମ କଣ୍ଟକୁଁ ଭରସା ।

ପାର୍ଥିବ ପ୍ରେମ ନିଶ୍ଚୟ ସେହି ଅମୃତର ଆସ୍ୱାଦନ ନୁହେଁ । କିନ୍ତୁ କେତେକାଂଶ ସମଧର୍ମୀ । ଦର୍ପଣରେ ପ୍ରତିବିମ୍ବ ବାସ୍ତବତା ନୁହେଁ, ତଥାପି ବାସ୍ତବତା ସମ୍ପର୍କରେ ଏକ ଧାରଣା ତ ଦିଏ । ପାର୍ଥିବ ପ୍ରେମକୁ ସୁଫୀ ମାନେ ଇଶକ୍ ମଜାଜୀ ବୋଲି କହନ୍ତି । ଯଦିଓ ଏହା ଇଶ୍କ୍ ହକିକୀ ଅର୍ଥାତ୍ ଈଶ୍ୱରୀୟ ପ୍ରେମ ନୁହେଁ, ତଥାପି ସାଦୃଶ୍ୟ ଅଛି । ପୁଣି ସତ୍ୟ ମଧ୍ୟ ପ୍ରକାଶମାଧ୍ୟମର ଆବଶ୍ୟକତା ଓ ଦ୍ରଷ୍ଟାର ସୀମିତ ଶକ୍ତି ଲାଗି ନିଜକୁ ଆବରଣରେ ରଖିବାକୁ ବାଧ୍ୟ ହୁଏ । କାରଣ ସତ୍ୟକୁ ପ୍ରତ୍ୟକ୍ଷ କରିବାର ଶକ୍ତି ଅତି ବିରଳ । ଏଣୁ ତାହା ଆଂଶିକ ଭାବରେ ହିଁ ପ୍ରକାଶମାନ ହୁଏ । ଋଷି ମଧ୍ୟ ଉପନିଷଦରେ କହିଛନ୍ତି ।

"ପୂଷନ୍ନ କର୍ଷେ ଯମ ସୂର୍ଯ୍ୟ ପ୍ରାଜପତ୍ୟ ବ୍ୟୂହ ରଶ୍ମୀନ୍ ।
ସମୂହ ତେଜୋ, ଯତ୍ତେ ରୂପଂ କଲ୍ୟାଣତମଂ
ତତ୍ତେ ପଶ୍ୟାମି
ଯୋହସାବସୌ ପୁରୁଷଃ ସୋହମସ୍ମି ।

ଅର୍ଥ—ହେ ପୂଷନ୍ (ସୂର୍ଯ୍ୟ ବା ବ୍ରହ୍ମ) । ତୁମ୍ଭେ ତୁମର ତେଜ ସମ୍ବରଣ କର । ତୁମର କଲ୍ୟାଣତମ ସୁଶୋଭନ ରୂପ ଦେଖାଅ । ମୁଁ ଅନୁଭବ କରେଁ ଯେ ତୁମ ମଧ୍ୟରେ ଥିବା ପୁରୁଷ ସହିତ ମୁଁ ଅଭିନ୍ନ ।

ଏ ସମସ୍ତ କଥା ମଧ୍ୟରେ ମାଳାରେ ଥିବା ସୂତା ପରି ଏକ ଯୋଗସୂତ୍ର ଲକ୍ଷ୍ୟ କରାଯାଏ । ତାହା ପ୍ରେମାସ୍ପଦ ସାଥିରେ ଏକାତ୍ମବୋଧ । ମନୁଷ୍ୟ ସଂସାରରେ ନିଜର ଅବସ୍ଥିତି ସମ୍ବନ୍ଧରେ ଅତ୍ୟନ୍ତ ଅସନ୍ତୁଷ୍ଟ । ସେ ଏକମାତ୍ର ପ୍ରାଣୀ ଯେ ନିଜର ମରଣ ସମ୍ବନ୍ଧରେ ସଚେତନ । ଏହି ଭୟଙ୍କର ଜ୍ଞାନ ତାକୁ ନିଜର ଭାଗ୍ୟ ବିରୁଦ୍ଧରେ ବିଦ୍ରୋହ କରିବାକୁ ବାଧ୍ୟ କରେ । ମାନବ ସବୁବେଳେ ପ୍ରଶ୍ନ କରିଆସିଛି ମୁଁ କିଏ ? ଏଠାକୁ କାହିଁକି ଆସିଲି ? ଯଦି ମୃତ୍ୟୁ ହିଁ ଚରମ ସତ୍ୟ ତାହେଲେ ତ ହେବାଟା, ଥିବାଟା ହିଁ ପରମ ଜଞ୍ଜାଳ । ଏଣୁ ମାନବ ମୃତ୍ୟୁକୁ ଚରମ ସତ୍ୟ ବୋଲି ଗ୍ରହଣ କରି ପାରିବ ନାହିଁ । ଅତଏବ ମୃତ୍ୟୁ ସଂଜୀବନୀର ସନ୍ଧାନ ଚିରକାଳ ଚାଲିଥିବ । ଏହାର ପ୍ରଥମ ପଦକ୍ଷେପ ହେଲା ନିଜର କ୍ଷୁଦ୍ରତାକୁ ଜୟ କରିବାର ଚେଷ୍ଟା । ମନୁଷ୍ୟ ନିଜ ଅଭିଜ୍ଞତାରୁ ବୁଝି ପାରିଛି ଯେ କ୍ଷୁଦ୍ରର ଧ୍ୱଂସ ଅବଶ୍ୟମ୍ଭାବୀ । ଏଣୁ ମୃତ୍ୟୁଞ୍ଜୟ ହେବାକୁ ହେଲେ ଏହି କ୍ଷୁଦ୍ରତାର ନାଗପାଶରୁ ନିଜକୁ ମୁକ୍ତ କରିବାକୁ ହେବ । ତାର ଉପାୟ ନିଜର ଏକ ବୃହତ୍ତର, ମହତ୍ତର ସତ୍ତା ସଙ୍ଗେ ଏକାତ୍ମବୋଧ ଆଣିବା ।

ସମସ୍ତ ମାନବିକ ପ୍ରଚେଷ୍ଟାର ବୀଜମନ୍ତ୍ର ହେଲା ମାନବ ଜୀବନର କ୍ଷୁଦ୍ରତା, ତୁଚ୍ଛତାକୁ ଜୟକରି ତାର ବନ୍ଧନରୁ ମୁକ୍ତ ହୋଇ ଏକ ଉଚ୍ଚତର ବାସ୍ତବତା (higher reality) ସହିତ ନିଜକୁ ସଂଯୁକ୍ତ କରିନେବା । କଳା, ବିଜ୍ଞାନ ଦର୍ଶନ ସବୁଠିଁ ଏହି ତତ୍ତ୍ୱ ସ୍ପଷ୍ଟ । ଏଣୁ ସୁଫୀ ସାଧକ ମଜନୁର କଣ୍ଠରେ ବଜ୍ରଗଂଭୀର ଘୋଷଣା କରାଇଛନ୍ତି ।

"ଐ ଆଶିକାଁ, ଐ ଆଶିକାଁ ମନ୍ ଆଶିକେ ଦେୱାନା ଅମ୍,
ଐ ସାଦେକାଁ, ଐ ସାଦେକାଁ, ମନ୍ ସାଦେକେ ଦେୱାନା ଅମ୍ ।"

ଅର୍ଥ :—ହେ ପ୍ରେମିକ, ଶୁଣ ମୁଁ ସେହି ସନାତନ ପ୍ରେମିକ
ହେ ସତ୍ୟାନ୍ୱେଷୀ, ଶୁଣ ମୁଁ ସେହି ସନାତନ ସତ୍ୟସାଧକ ।

ପ୍ରିୟ ସହିତ ମିଳନ ସେହି କ୍ଷୁଦ୍ରତା, ସେହି ତୁଚ୍ଛତା ଉପରେ ବିଜୟ । ମିଳନର ଘଡ଼ି ମୁହୂର୍ତ୍ତିଟିଏ ଲାଗି ହେଲେ ମଧ୍ୟ ଏପରି ଏକ ଅନନ୍ତ ଆନନ୍ଦର ପରିଚୟ ଦିଏ, ଯାହାପରେ ବୋଧହୁଏ ସମସ୍ତ ସମୟ, ଏହି ସମୟ । ଏଣୁ ଦୀର୍ଘ ବିଚ୍ଛେଦ ମଧ୍ୟ ଅର୍ଥହୀନ । ଖାଲି ସମୟର ଭାବନା ନୁହେଁ, ପ୍ରିୟ ଛଡ଼ା ଅନ୍ୟ ସବୁ ଭାବନା ହିଁ ଅର୍ଥହୀନ । ସୁରଦାସ ଏହି କଥାଟି ଗୋପୀ ମାନଙ୍କ ଦେଇ କିପରି କୁହାଇଛନ୍ତି, ଅବଧାନ ହେଉ ।

"ଉଧୋ, ମନ ନାହିଁ ଦଶ ବିଶ୍
ଏକ ରହୋ, ସୋ ଶ୍ୟାମ ସଙ୍ଗ ଗୟୋ, ଅବ କୌନ ଉକେଶା ଈଶ୍ ।"

କୃଷ୍ଣ ଉଦ୍ଧବଙ୍କୁ ଗୋପୀ ମାନଙ୍କୁ ସାନ୍ତ୍ୱନା ଦେବାକୁ ଗୋପକୁ ପଠାଇଥିଲେ । ଉଦ୍ଧବ ଯେହେତୁ ପରମଜ୍ଞାନୀ, ଏଣୁ ସେ ଗୋପୀମାନଙ୍କୁ ଭଗବଦ୍‌ଭକ୍ତି ବିଷୟରେ ଉପଦେଶ ଦେବା ଆରମ୍ଭ କଲେ । କିନ୍ତୁ ସେ ଜାଣିଥିଲେ ଯେ ଗୋପୀମାନେ ଏପରି ଜ୍ଞାନ ପାଇ ସାରିଛନ୍ତି । ଯାହାପରେ ଉଦ୍ଧବଙ୍କ ପ୍ରବଚନ କେବଳ ପ୍ରଳାପ । ଏଣୁ ପରମ ତାଚ୍ଛଲ୍ୟ ସହକାରେ ଗୋପୀ ମାନେ କହିଛନ୍ତି "ଉଦ୍ଧବ, ଆମପାଖରେ ତ ଦଶ କୋଡ଼ିଏଟା ମନ ନାହିଁ । ମାତ୍ର ଗୋଟିଏ ଥିଲା ତା ତ ଶ୍ୟାମ ସାଙ୍ଗରେ ଯାଇଛି । ଏବେ କିଏ ଈଶ୍ୱର ଭଜନ କରିବ ?"

ଭଗବାନ ଅଛନ୍ତି କି ନାହିଁ , ଏ ତର୍କ ତ ଗୁଲିଥିବ । ହାଲି ଓଡ଼ିଆ ଶିଖିଥିବା ଜଣେ ପାଦ୍ରିସାହେବ ଲେଖିଥିଲେ "ଅଛନ୍ତି ଏପରି ଲୋକ ସଂସାର ମଧ୍ୟରେ ଯେଉଁ ମାନେ କରନ୍ତି ନାହିଁ ବିଶ୍ୱାସ ଯେ ଈଶ୍ୱର ଅଛନ୍ତି ।" ଏପରି ନାସ୍ତିକଙ୍କ ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ । ମୁଁ ଆଉ ଏ ବିଷୟରେ କଣ କହିବି ? ତେବେ ମୋର କ୍ଷୁଦ୍ର ବୁଦ୍ଧିରେ ଗୋଟିଏ କଥା ସବୁବେଳେ ମନେହୁଏ ଯେ ପୃଥିବୀର ଭିନ୍ନ ଭିନ୍ନ ସ୍ଥାନରେ

ପୃଥକ ପୃଥକ ସମୟରେ, ଭିନ୍ନ ଭିନ୍ନ ସାଂସ୍କୃତିକ ପରିବେଷରେ ଏହି ସାଧକ ମହାଜନ ଗଣ ଏକ ପ୍ରକାର କଥା କହି ଆସିଛନ୍ତି ଏବଂ ଏହା ସମସ୍ତଙ୍କ ଏକ ଷଡଯନ୍ତ୍ର ଗୁଳାଏଟି ହେବା ଅସମ୍ଭବ । ଏହି ଅଭିଜ୍ଞତା ସମଷ୍ଟି ହିଁ ନାସ୍ତିକ ନସ୍ତଣାର ଉତ୍ତର ।

ପଂଜାବରେ ଜଣେ ପ୍ରସିଦ୍ଧ ସାଧକ ହୋଇଥିଲେ ବୁଲ୍ଲେଶାହ । ପଂଜାବର ପ୍ରସିଦ୍ଧ ପ୍ରେମ କାହାଣୀ "ହିର୍ ରାଂଝା"ର ସେ ଏକ ନୂତନ ଅପୂର୍ବ ବ୍ୟାଖ୍ୟା ଦେଇଛନ୍ତି । ପ୍ରେମୀକା ହିର ତାର ସଖିଗଣଙ୍କୁ କହୁଛି "ରାଂଝା ରାଂଝା କରଦିନ ମୈ ଆପେ ରାଂଝା ହୋଇ ।"

ସମସ୍ତଙ୍କ ପଂଜାବରେ ନଦେଇ କେବଳ ଓଡ଼ିଆ ଅନୁବାଦ ହିଁ ତଳେ ଦେଉଛୁ ।

ମୁଁ ରାଂଝା ରାଂଝା କହି କହି ନିଜେ ରାଂଝା ହୋଇଗଲିଣି । ଏଣିକି ମୋତେ କେହି ହିର କହିବ ନାହିଁ । ଏଣିକି ମୋତେ କେବଳ ରାଂଝା ( ପ୍ରେମିକର ନାମ ) ବୋଲି ଡାକିବ । କାରଣ ମୁଁ ରାଂଝା ଭିତରେ ଓ ରାଂଝା ମୋ ଭିତରେ । ଆମ ଭିତରେ ଅନ୍ୟ କଳ୍ପନାର ମଧ୍ୟ ବ୍ୟବଧାନ ନାହିଁ ( ଅର୍ଥାତ ଆମେ ପରସ୍ପର କଥା ଛଡ଼ା ଅନ୍ୟକିଛି ଭାବି ମଧ୍ୟ ପାରିବୁ ନାହିଁ । )

ଏହା ପରେ ବୋଧହୁଏ କଥା କହିବା ମଧ୍ୟ ବାତୁଳତା ।



# ଶ୍ରବାଗ

ମୋଗଲ ସାମ୍ରାଜ୍ୟ ପ୍ରଥମ ପାନିପଥ ଯୁଦ୍ଧ ପରେ ସ୍ଥାପିତ ହେଲା । ତାରିଖ ୨୧ ଅପ୍ରେଲ ୧୫୨୬ ଖ୍ରୀଷ୍ଟାବ୍ଦ । ଏହି ସାମ୍ରାଜ୍ୟ ଜୀବନ୍ତ, ଅର୍ଦ୍ଧମୃତ ଓ ପ୍ରାୟ ମୃତ ଅବସ୍ଥାରେ ରହିଲା ସିପାହୀବିଦ୍ରୋହ ପର୍ଯ୍ୟନ୍ତ । ଏହାର ଆନୁଷ୍ଠାନିକ ମୃତ୍ୟୁ ହେଲା ୧ ନଭେମ୍ବର ୧୮୫୮ ଖ୍ରୀଷ୍ଟାବ୍ଦରେ ଯେଉଁଦିନ କି ମହାରାଣୀ ଭିକ୍ଟୋରିଆଙ୍କୁ ଭାରତର ସାମ୍ରାଜ୍ଞୀ ଘୋଷଣା କରାଗଲା । ଆଉରଙ୍ଗଜେବଙ୍କ ପର୍ଯ୍ୟନ୍ତ (ପ୍ରାୟ ୧୭୦୦ ଖ୍ରୀଷ୍ଟାବ୍ଦ) ଏହା ଅତି ସକ୍ଷମ ଥିଲା । ତା'ପରେ ଅବସ୍ଥା କ୍ରମେ ଖରାପରୁ ଅତି ଖରାପ ଆଡ଼କୁ ଗତି କଲା । ଶେଷ ବେଳକୁ ଏହା କେବଳ ଦିଲ୍ଲୀର ଲାଲ୍‌କିଲାରେ ହିଁ ସୀମାବଦ୍ଧ ଥିଲା । କିନ୍ତୁ କି ମରହଟ୍ଟା, କି ଇଂରେଜ କେହି ଯେତେ କ୍ଷମତାଶାଳୀ ହେଲେ ମଧ୍ୟ ମୋଗଲ ସାମ୍ରାଜ୍ୟର ଆନୁଷ୍ଠାନିକ ଆନୁଗତ୍ୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ଦୌଲତ ରାଓ ସିନ୍ଧିଆ ନିଜକୁ କେବଳ ମୋଗଲ ସମ୍ରାଟଙ୍କର ରକ୍ଷକ ବୋଲି ଘୋଷଣା କରିଥିଲେ । ନିଜକୁ ସମ୍ରାଟ ବୋଲାଇବାର ସାହସ ନଥିଲା । କମ୍ପାନୀ ଅମଳରେ ଯେତେବେଳେ କୌଣସି ଆଦେଶ ଢେଙ୍ଗୁରା ପିଟି ଘୋଷଣା କରାଯାଉଥିଲା, ସେତେବେଳେ ଢୋଲି ପ୍ରଥମେ ଗୋଟିଏ ପଦ୍ୟ ବୋଲୁଥିଲା—

ଖଲକ୍ (ସୃଷ୍ଟି) ଖୁଦାକା (ଭଗବାନଙ୍କର)
ମୁଲକ୍ ମୋଗଲ ବାଦଶାହକା
ହୁକୁମ୍ କମ୍ପାନୀ ବାହାଦୁରକା ।

ଅର୍ଥାତ୍ କ୍ଷମତା ଦଖଲ କରିଗଲେ ଆଇନର ସ୍ୱୀକୃତି ବା ବୈଧତା, ଯାହାକୁ ଇଂରାଜୀରେ Legitimacy କୁହାଯାଏ, ମିଳେନାହିଁ । ଏଣୁ ବିଦ୍ରୋହୀ ସିପାହୀମାନେ ବୃଦ୍ଧ ଓ ଅଥର୍ବ ବାହାଦୁରଶାହଙ୍କୁ ନିଜର ସମ୍ରାଟ ବୋଲି ଘୋଷଣା କରିବାକୁ ବାଧ୍ୟ ହୋଇଥିଲେ । ତା' ନ କରିଥିଲେ ସେମାନେ ନିଜକୁ ପିଣ୍ଡାରୀ ଓ ଅନ୍ୟାନ୍ୟ ଦସ୍ୟୁମାନଙ୍କଠାରୁ ଅଲଗା କରିପାରି ନ ଥାନ୍ତେ ।

ତା'ହେଲେ ଆଇନଗତ ଭାବେ ମୋଗଲ ସାମ୍ରାଜ୍ୟର ତିନିଶହ ବତିଶ ବର୍ଷର ଜୀବନକାଳ ମାନିବାକୁ ପଡ଼ିବ । ଏଥିମଧ୍ୟରୁ ପ୍ରଥମ ୧୬୫ ବର୍ଷ ଯୌବନ ଏବଂ ଶେଷ ଶହେ ବର୍ଷ ପକ୍ଷାଘାତରେ ପଙ୍ଗୁ । ତା'ହେଲେ ଏ ଦୀର୍ଘସ୍ଥାୟୀ ପ୍ରତିଷ୍ଠାନଟି ଆମକୁ ଦେଇଛି କ'ଣ ? ଗୋଟିଏ ପ୍ରଧାନ କଥା ହେଲା ଯେ ଏକ ଆଇନସଙ୍ଗତ ସରକାର ଦିଲ୍ଲୀରୁ ସାରା ଭାରତବର୍ଷରେ ଶାସନ କରିବ, ଏହି ଧାରଣାର ସ୍ୱୀକୃତି । ଏଥିଲାଗି ହିଁ ଇଂରେଜମାନେ କଲିକତାରୁ ଦିଲ୍ଲୀକୁ ରାଜଧାନୀ ଉଠାଇ ଆଣିଥିଲେ । ଇଂରେଜ କ୍ଷମତାଶାଳୀ ହୋଇପାରେ, କିନ୍ତୁ ଯେ ପର୍ଯ୍ୟନ୍ତ ସେ ଦିଲ୍ଲୀରୁ ଶାସନ ନ କରିଛି, ନିଜକୁ ସମ୍ରାଟ ବୋଲିଇ ପାରିବ ନାହିଁ । ସେପର୍ଯ୍ୟନ୍ତ ସେ ଗୋଆର ପର୍ତ୍ତୁଗୀଜ, ପଣ୍ଡିଚେରୀର ଫରାସୀଙ୍କ ସମଗୋତ୍ର । ଅର୍ଥାତ୍ ବଣିକଶ୍ରେଣୀ, ସମ୍ରାଟ ବା କ୍ଷତ୍ରିୟ ନୁହେଁ । ଇଂରେଜ ରାଜତ୍ୱ ସମୟରେ ଆଇ.ସି.ଏସ୍. ଓ ସେନାବାହିନୀର ଅଫିସରମାନଙ୍କର କମ୍ପାନୀରେ କାମ କରୁଥିବା ଇଂରେଜ ଅଫିସରମାନଙ୍କ ପ୍ରତି ଘୋର ଅବଜ୍ଞା ଓ ତାଚ୍ଛଲ୍ୟଭାବ ଥିଲା । କମ୍ପାନୀ ଅଫିସରମାନଙ୍କୁ କୁହାଯାଉଥିଲା BOXWALLAH ଅର୍ଥାତ୍ ଫେରିବାଲାର ଉନ୍ନତ ସଂସ୍କରଣ ।

ଏହା ଛଡ଼ା ମୋଗଲମାନେ ଆଉ କିଛି ଦେଇଛନ୍ତି କି ? ମୁଁ ତାଜମହଲ କଥା କହିବାକୁ ଯାଉନାହିଁ । ତେବେ ମୋଗଲ ସ୍ଥାପତ୍ୟ ଓ ତା'ର ପୂର୍ବବର୍ତ୍ତୀ ସ୍ଥାପତ୍ୟ ବିଷୟରେ କିଛି ତୁଳନାତ୍ମକ ଆଲୋଚନା ଅନିବାର୍ଯ୍ୟ । ମୋଗଲ ସ୍ଥାପତ୍ୟର ପ୍ରଥମ ଉତ୍ତମ ନିଦର୍ଶନ ହେଲା ଦିଲ୍ଲୀରେ ହୁମାୟୁନଙ୍କ କବର । ପରାକାଷ୍ଠା ଲାଲକିଲା ଓ ଦିଲ୍ଲୀର ଜୁମା ମସ୍‌ଜିଦ୍ । ଶେଷ ନିଦର୍ଶନ ହିସାବରେ ଧରାଯାଇପାରେ ସଫ୍‌ଦାରଜଙ୍ଗ୍ କବର । ତାଜମହଲର ଉଲ୍ଲେଖ ଇଚ୍ଛା କରି କରିନାହିଁ, କାରଣ ତାଜ୍, ତାଜ୍ । ତାହା ସ୍ଥାପତ୍ୟରୁ ଉଠି କବିତାରେ ପରିଣତ ହୋଇଛି । ଏଣୁ ତାହା ବିଷୟରେ ଆଲୋଚନା ଫଳପ୍ରଦ ହେବନାହିଁ । କାରଣ ତାଜମହଲ ଅନନ୍ୟ (Unique), କାହାର ନିଦର୍ଶନ (Typical) ନୁହେଁ । ପୂର୍ବବର୍ତ୍ତୀ ପଠାଣ ସ୍ଥାପତ୍ୟର ଶ୍ରେଷ୍ଠ ନିଦର୍ଶନ ହେଲା କୁତବମିନାର ହତାରେ ଥିବା ଆଲାଇ ମସଜିଦ୍‌ର ଭଗ୍ନାବଶେଷ, ଲୋଦୀ ସମ୍ରାଟମାନଙ୍କ କବର ଓ ଶେରଶାହ ସୁରୀଙ୍କ ନିର୍ମିତ ଦିଲ୍ଲୀର ପୁରୁଣା କିଲା । ଏହାକୁ ମୋଗଲ ସ୍ଥାପତ୍ୟ ସଙ୍ଗେ ତୁଳନା କଲେ ମୋଗଲ ସ୍ଥାପତ୍ୟରେ ଏକ ସୂକ୍ଷ୍ମତା (Delicacy) ଏକ ଭାରସାମ୍ୟ (Balance) ଏବଂ ଏକ ମାର୍ଜିତ ରୁଚିର ପରିଚୟ ମିଳେ । ଏବଂ ତା' ସହିତ ଏକ ସୁଦୃଢ଼ ଆତ୍ମପ୍ରତ୍ୟୟ । ସ୍ଥାପତ୍ୟରେ ଏକ ସର୍ବଭାରତୀୟ ରାଷ୍ଟ୍ରର ପ୍ରତୀକ ହେଲା ଲାଲକିଲା । ଏଣୁ ନେତାଜୀ ସୁଭାଷ ମଧ୍ୟ ଡାକ ଦେଇଥିଲେ ଲାଲକିଲାରେ ତିରଙ୍ଗା ଉଡ଼ାଇବାକୁ । ମୋର କିନ୍ତୁ ଏଠି ସ୍ଥାପତ୍ୟ ସମ୍ବନ୍ଧରେ ଆଲୋଚନା କରିବା ଉଦ୍ଦେଶ୍ୟ ନୁହେଁ, କାରଣ ମୋ ପେଟରେ ଏତେ ଇଲମ ନାହିଁ । ଚାଣକ୍ୟଙ୍କ ନୀତିଶାସ୍ତ୍ରରେ ଅଛି ଯେ, ମୂର୍ଖ କଥା ନ କହିବା ପର୍ଯ୍ୟନ୍ତ ଶୋଭାପାଏ । ଅବଶ୍ୟ ମୁଁ

ନୀରବ ହେବାକୁ ଯାଉନାହିଁ, କେବଳ ଚଳନ୍ତି କରି କଥାଟା ଠିକଏ ବୁଝେଇ ଦେଉଛି ।

ମୋଗଲମାନଙ୍କର ଆଦି ନିବାସ ହେଲା ଫର୍‌ଘେନା । ବର୍ତ୍ତମାନର ସୋଭିଏଟ ମଧ୍ୟ-ଏସିଆର ସମର କନ୍ଦ ଅଞ୍ଚଳ । ଏଠି ପ୍ରାକୃତିକ ଦୃଶ୍ୟ ଅତି ସୁନ୍ଦର । କେତେକଙ୍କ କାଶ୍ମୀର ପରି । ସାମ୍ରାଜ୍ୟ ସ୍ଥାପନ କରିବାକୁ ବାବର ଭାରତକୁ ଆସିଥିଲେ । ତେବେ ସେ ଭାରତକୁ ଭଲ ପାଇ ପାରି ନ ଥିଲେ । ତାଙ୍କର ଭାରତ ସମ୍ବନ୍ଧରେ ଅନେକ ଅଭିଯୋଗ । ଏଠି ଭଲ ଫଳ ମିଳେ ନାହିଁ । ଭଲ ମାଂସ ମିଳେ ନାହିଁ । ଭଲ ମଦ ମିଳେ ନାହିଁ । ଉତ୍ତମ ଜାତିର ଘୋଡ଼ା ଓ କୁକୁର ମଧ୍ୟ ନାହାନ୍ତି । ଇତ୍ୟାଦି । କିନ୍ତୁ ତା' ସହିତ ସ୍ୱୀକାର କରୁଛନ୍ତି ଯେ, ଏହା ବହୁତ ବଡ଼ ଓ ସମୃଦ୍ଧିଶାଳୀ ଦେଶ । ଏଠି ପ୍ରତ୍ୟେକ କାର୍ଯ୍ୟ ଲାଗି ନିପୁଣ ଓ ପ୍ରଶିକ୍ଷିତ ଜନଶକ୍ତି ପ୍ରଚୁର । ସେ ବାବର୍‌ନାମାରେ ଲେଖିଛନ୍ତି, "ତୈମୁର ଗର୍ବ କରୁଥିଲେ ଯେ ତାଙ୍କର ସମରକନ୍ଦରେ ମସ୍‌ଜିଦ ନିର୍ମାଣ କାର୍ଯ୍ୟରେ ଦୁଇଶହ ସଙ୍ଗତରାଶ୍ (ପଥର ମିସ୍ତ୍ରୀ) କାମ କରୁଥିଲେ । ଏଠି କେବଳ ଆଗ୍ରାରେ ମୋପାଙ୍କରେ ଛଅଶହଅଣୀ ସଂଗତରାଶ୍ କାମ କରନ୍ତି ।" ସାମ୍ରାଜ୍ୟ ଲାଗି ତ ମୋଗଲ ଏ ଦେଶର ହୋଇଗଲେ । କିନ୍ତୁ ଫର୍‌ଘେନାର ଘାସର ପଡ଼ିଆ, ପାହାଡ଼ି ଝରଣା, ଗୋଲାପ ଇତ୍ୟାଦି ଭୁଲି ପାରି ନ ଥିଲେ । ଏଣୁ ଏଠି ସ୍ଥାପତ୍ୟ ସାଙ୍ଗରେ ଆରମ୍ଭ କଲେ ଉପବନ ନିର୍ମାଣ । ସେଥିରେ ତାଙ୍କ ମାତୃଭୂମିକୁ ହିନ୍ଦୁସ୍ଥାନରେ ସୃଷ୍ଟି କଲେ ।

ଏହା ଆଗରୁ ଯେ ଭାରତବର୍ଷରେ କେହି ବଗିଚା କରୁ ନ ଥିଲା, ଏକଥା ନୁହେଁ । ହିନ୍ଦୁ ସମୟରେ ଅତି ସୁନ୍ଦର ଉପବନର ବର୍ଣ୍ଣନାରେ ସଂସ୍କୃତ ସାହିତ୍ୟ ଭରପୂର । ତେବେ ତାହା ଅନେକଟା ଆମ୍ବତୋଟା ପରି । ମଝିରେ ପୋଖରୀ, ତା' ଚାରିପଟେ ଫଳ ଫୁଲର ଗଛ । ଜାଇ ଯୁଇ ମଲ୍ଲୀ ମାଳତୀ ଇତ୍ୟାଦି । ସାଧାରଣତଃ ଗଛ ଉପରକୁ କୌଣସି ଲତା ମଡ଼ାଇ ଦିଆହେଉଥିଲା । ଫଳରେ ସୃଷ୍ଟି ହେଉଥିଲା କୁଞ୍ଜ । ଏହି କୁଞ୍ଜବନର ସାହିତ୍ୟିକ ମହତ୍ତ୍ୱ ବିଷୟରେ ମୁଁ ବା କ'ଣ କହିବି ? ପୋଖରୀ କୂଳରେ ପଥରବନ୍ଧା ଘାଟ । ସେଠି ବସିବାର ମଧ୍ୟ ସୁବନ୍ଦୋବସ୍ତ ଥିଲା । ବିଶେଷ କରି ସନ୍ଧ୍ୟା ବେଳେ ପାଗ ଭଲ ଥିଲେ ପୋଖରୀ ଘାଟରେ ଅତି ସୁନ୍ଦର ଗୋଷ୍ଠୀ ଜମି ପାରୁଥିଲା । ଅନେକ ସମୟରେ ପାଖରେ ଦୋଳିର ବନ୍ଦୋବସ୍ତ ଥିଲା । ମୋଟ ଉପରେ ହିନ୍ଦୁମାନଙ୍କର ବଗିଚା ଲଗାଇବାର ଏକ ସୁନିର୍ଦ୍ଦିଷ୍ଟ ବିଧି ଥିଲା ଓ ସେମାନେ ବଗିଚାର ବ୍ୟବହାର ଜାଣିଥିଲେ ।

ପଠାଣ ସୁଲ୍‌ତାନମାନଙ୍କର ହୁଏତ ଏ ଦିଗରେ ରୁଚି ବିକଶିତ ହୋଇ ନ ଥିଲା । ତାଙ୍କର ସ୍ଥାପତ୍ୟର ନିଦର୍ଶନରେ କୌଣସି ବଗିଚାର ପରିକଳ୍ପନା ଥିଲା ପରି

ମନେ ହୁଏ ନାହିଁ । କିନ୍ତୁ ମୋଗଲମାନଙ୍କ ଆସିବା ପରେ ଭାରତବର୍ଷରେ ବଗିଚା ଜମି ଉଠିଲା । ମୋଗଲମାନେ ଭାରତକୁ ଏକ ଅତି ସୁନ୍ଦର ଜିନିଷ ଆଣିଲେ । ତା' ହେଲା ଲନ୍ (Lawn) ବା କଟା ହୋଇଥିବା ଘାସ ପଡ଼ିଆ । ଏହା ଏକ ପ୍ରାକୃତିକ ଗାଲିଚାର କାମ କରେ । ଆଗରୁ କହିଛି ଯେ ମୋଗଲ ମାନଙ୍କର ମାତୃଭୂମି ଫରଘନାରେ ଘାସର ବିସ୍ତୀର୍ଣ୍ଣ ପଡ଼ିଆ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଝରଣା ପ୍ରଚୁର—କାଶ୍ମୀରର ଗୁଲମର୍ଗ ପରି । ଏହିପରି ଗୋଟିଏ ଝରଣା କୂଳରେ ତମ୍ବୁ ପକାଇ ରହିବା ମୋଗଲ ପକ୍ଷରେ ସ୍ୱର୍ଗପରି । ଘାସ ଏତିକି ଥିବ ଯେ, ଚାଲିଲେ ଗାଲିଚା ପରି ଲାଗୁଥିବ; କିନ୍ତୁ ତା'ଠାରୁ ବେଶି ନ ଥିବ । ଅବଶ୍ୟ ଫରଘନାରେ ତାକୁ କାଟିବାର ଆବଶ୍ୟକତା ନ ଥିଲା, କାରଣ ମେଣ୍ଢା ଚରି ତା'ର ଉଚ୍ଚତା ଠିକ୍ ରଖି ଦେଉଥିଲେ । ଚାରିଆଡ଼େ ଉଚ୍ଚ ଶ୍ୱେତଚୂଡ଼ ପର୍ବତମାଳା । ଏପରି ସ୍ଥାନ ପ୍ରତି ମୋଗଲମାନଙ୍କର ଅତ୍ୟନ୍ତ ଦୁର୍ବଳତା ଥିଲା । ବାବର ଏପରି ଜାଗା ଦେଖିଲେ ସାଙ୍ଗେ ସାଙ୍ଗେ ବଣଭୋଜି (Picnic) କରୁଥିଲେ । ସେଠାରେ ପ୍ରଚୁର ମଦ୍ୟପାନ ହେଉଥିଲା । ବାବରଙ୍କର ବଡ଼ ନଦୀ ପ୍ରତି ମଧ୍ୟ ଦୁର୍ବଳତା ଥିଲା । ସେ ଏପରି ନଦୀରେ ଭାଙ୍ଗମୋଦକ (ଫାର୍ସୀ-ମାଜୁନ) ଖାଇ ନୌକା ବିହାର କରିବାକୁ ବଡ ଭଲ ପାଉଥିଲେ । ଅପ୍ରାସଙ୍ଗିକ ହେଲେ ମଧ୍ୟ ପୁଣ୍ୟଭୂମି ପୁରୁଷୋତ୍ତମ କ୍ଷେତ୍ରର ଭାଙ୍ଗବିଳାସୀମାନଙ୍କର ଗୋଟିଏ ଦୃଷ୍ଟାନ୍ତ ମନେପଡ଼ିଲା । ସେମାନେ ଭାଙ୍ଗ ନିଶା ଧରିଲା ପରେ ରିକ୍ସା ଉପରେ ଶୋଇ ସମୁଦ୍ରକୂଳରେ ହାଓ୍ୱା ଖାଇବାକୁ ଭଲ ପାଆନ୍ତି । ରିକ୍ସାବାଲାକୁ ହୁକୁମ, ସେ ସମୁଦ୍ରକୂଳରେ ଦିଗବାରେଣି ଖୁଣ୍ଟିଠାରୁ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଯାଉଥିବ ଆସୁଥିବ । ଏହି ଗୋଟିଏ ଜିନିଷରେ ଅତି କମ୍‌ରେ ପୁରୀର ଭାଙ୍ଗବିଳାସୀମାନଙ୍କର ଶାହାନଶାହ ବାବରଙ୍କ ସଙ୍ଗେ ସାଦୃଶ୍ୟ ଅଛି ।

ଏଇଟା ସତକଥା ଯେ ସୈନ୍ଧବ ଗାଙ୍ଗେୟ ସମତଳ ଭୂମି ଅତ୍ୟନ୍ତ ଉର୍ବର ଓ ସମୃଦ୍ଧିଶାଳୀ ହେଲେ ମଧ୍ୟ ଏଠି ପ୍ରାକୃତିକ ଦୃଶ୍ୟର ବଡ ଅଭାବ । ଜଣେ ଲାମା ମନ୍ଦିର ଗଠନର ସ୍ଥାନ ସମ୍ପର୍କରେ ଆଲୋଚନା ଅବକାଶରେ ମୋତେ କହିଥିଲେ ଯେ ଯେଉଁଠାରେ ଏକାଠି ବଡ଼ ପର୍ବତ ଓ ବଡ଼ ପାଣି ଅର୍ଥାତ୍ ନଦୀ ହ୍ରଦ ଇତ୍ୟାଦି ଦେଖାଯାଆନ୍ତି ସେଠି ନିଶ୍ଚୟ ମନ୍ଦିର ବା ଗୈର୍‌ଷ୍ଟେନ୍ ତିଆରି କରିବାକୁ ହେବ । ଏଥିରେ ପ୍ରାକୃତିକ ସୁଷମାରେ ଏକପ୍ରକାର ସୂତ୍ର ବା ଫରମୁଲା କୁହାଯାଇଛି, ଯାହା ସୈନ୍ଧବ ଗାଙ୍ଗେୟ ଉପତ୍ୟକାରେ ନାହିଁ କହିଲେ ଚଳେ । ମୋଗଲମାନେ ଉଚ୍ଚ ପ୍ରାଚୀରବୃତ୍ତ ଉପବନ ଗଠନ କଲେ । ପ୍ରାଚୀର ଦ୍ୱାରା ବାହାରର କ୍ଲାନ୍ତିକର ଦୃଶ୍ୟକୁ ବାଦ୍ ଦେଇ ଭିତରେ ସୃଷ୍ଟି କଲେ ଏକ କ୍ଷୁଦ୍ର ଫରଘନା ।

ମୋଗଲ ଉଦ୍ୟାନ ଶୈଳୀର ପ୍ରଧାନ ରୂପ ହେଲା ଚାରବାଗ ଅର୍ଥାତ୍ ଚାରି ଉପବନ । ଏହା ଏକ ପ୍ରକାଣ୍ଡ ଯୋଗଚିହ୍ନ ପରି । ଦୁଇଟି ଜଳନାଳୀ ଚାରି ଦିଗରୁ

ଆସି ମଝିରେ ମିଳିତ ହୁଅନ୍ତି । ସେଠି ସାଧାରଣତଃ ଏକ ସୁଦୃଶ୍ୟ ସୌଧ ଥାଏ, ଯାହାର ଅଧିକାଂଶ କ୍ଷେତ୍ରରେ କବର । ପାଣି କୂଳେ କୂଳେ ଫୁଲଗଛ ଓ ପଥରବନ୍ଧେଇ ଚାଲିବା ରାସ୍ତା । ତା'ପରେ ଶାଳଗ୍ରାମ ପରି ରଖାଯାଇଥିବା ଲନ୍ ବା ଘାସପଡ଼ିଆ । ମଝିରେ ମଝିରେ ଛାୟାବୃକ୍ଷ ଓ କେଉଁଠି ଫୁଲ । ଉପରୁ ଚଢ଼ାହୋଇ ଦେଖିଲେ ମନେହେବ ଇରାନୀ ଗାଲିଚା । ଚାରି କୋଣରେ କୃତ୍ରିମ ଜଳପ୍ରପାତ ସୃଷ୍ଟି କରାଯାଉଥିଲା । ସେ ଜଳପ୍ରପାତ ପାଖରେ ଛୋଟିଆ ଘର ମଧ୍ୟ ତିଆରି କରାଯାଉଥିଲା । ସେଠି ବଣଭୋଜି କରିବା ବା ଦୁଇ ଚାରିଦିନ ଛୁଟି କଟାଇବାର ମଧ୍ୟ ବ୍ୟବସ୍ଥା ଥିଲା । ଭାରତବର୍ଷର ପ୍ରଚଣ୍ଡ ଖରା ଲାଗି ମଧ୍ୟ ବ୍ୟବସ୍ଥା ଥିଲା । ଆପଣ ହୁଏତ ଲକ୍ଷ୍ୟ କରିଥିବେ ଯେ ମୋଗଲ ସ୍ଥାପତ୍ୟ କାନ୍ଥିଁ ଦୋତାଲାରୁ ଆରମ୍ଭ ହୁଏ । ପ୍ରଥମ ମହଲଟା ପ୍ରାୟ ବନ୍ଦ ଝିଲମିଲି ଓ କୋଠରୀର ସମଷ୍ଟି । ଅସଲ କଥା ଯେ ଝିଲମିଲି ଓ ମୋଟା କାନ୍ଥ ଯୋଗୁଁ ତାହା ଗରମ ହୁଏନାହିଁ ଏବଂ ଭିତରେ ପବନ ଚାଲିବାର ବ୍ୟବସ୍ଥା ଥାଏ । ଏଣୁ ଏହି ତଳ ମହଲର କେତେକ ଘର ପ୍ରାୟ ବାତାନୁକୂଳିତ ଅର୍ଥାତ୍ Airconditioned । ଦେଖନ୍ତୁ, ମୋଗଲମାନେ ବଞ୍ଚିବା ଆଶାରେ କେବଳ ଫରଘନା ବା କାଶ୍ମୀରର ଦୃଶ୍ୟ ସୃଷ୍ଟି କଲେ ତା' ନୁହେଁ; ତା'ର ଜଳବାୟୁ ମଧ୍ୟ କେତେଟା ସୃଷ୍ଟି କଲେ । ଅବଶ୍ୟ ହିନ୍ଦୁ ଯୁଗରେ ଏପରି କିଛି ବ୍ୟବସ୍ଥା ନିଶ୍ଚୟ ଥିଲା । କାରଣ, ଜଳଯନ୍ତ୍ରପୁରେ ଅନେକ ଉଲ୍ଲେଖ ମିଳେ । ତେବେ ତା'ର ଡ଼ିଜାଇନ ସମ୍ବନ୍ଧରେ ମୋର ସମ୍ୟକ ଧାରଣା ନ ଥିବାରୁ ସେ ବିଷୟରେ କୌଣସି ତୁଳନାତ୍ମକ ଆଲୋଚନା କରିବାକୁ ମୁଁ ଅକ୍ଷମ ।

ଶାଲିମାରର ସାମାନ୍ୟ ସରଳତର ରୂପ ଗୋଟିଏ ଜଳପ୍ରଣାଳୀ ବା କେନାଲ ଉପରେ ଗଠିତ ଉଦ୍ୟାନରେ ଦେଖିବାକୁ ମିଳେ । ଏହି ବଗିଚାର ଦୈର୍ଘ୍ୟ ପ୍ରସ୍ଥ ତୁଳନାରେ ଅନେକ ବେଶି । ଏଥିରେ ମାଟିର ଗଡ଼ାଣି (Slope)କୁ ବ୍ୟବହାର କରି ଅନେକ ଜଳପ୍ରପାତ ସୃଷ୍ଟି କରାଯାଉଥିଲା । ତା' ପାଖରେ ବସିବାର ବ୍ୟବସ୍ଥା । ଫୁଲର କିଆରି ଓ ଛାୟାଘନ ବୃକ୍ଷର ଶ୍ରେଣୀ । ଏ ପ୍ରକାର ବଗିଚାର ଶ୍ରେଷ୍ଠ ନିଦର୍ଶନ ଚଣ୍ଡୀଗଡ଼ ପାଖରେ ଥିବା ପିଞ୍ଜୋର ଏବଂ ଦିଲ୍ଲୀର ଲାଲକିଲ୍ଲା ଭିତରର ସାଓ୍ୟନ-ଭଦୋ (ଶ୍ରାବଣ-ଭାଦ୍ରବ) ।

ସଙ୍ଗୀତ ଶାସ୍ତ୍ରରେ ଯେପରି ପ୍ରତ୍ୟେକ ରାଗର ଠାଟ୍ ଅର୍ଥାତ୍ characteristic ଅଛି ସେହିପରି ମୋଗଲମାନଙ୍କର ମଧ୍ୟ ଠାଟ୍ ଅଛି । ତାହା ମୋଗଲ ସଭ୍ୟତାର ସବୁ ଦିଗରେ ଦେଖିବାକୁ ମିଳେ । ସ୍ଥାପତ୍ୟ, ଚିତ୍ରକଳା, ସଙ୍ଗୀତ, ସାହିତ୍ୟ, ଉଦ୍ୟାନ ନିର୍ମାଣ ସବୁଥିରେ । ତାହା ଏକ ମାର୍ଜିତ ରୁଚି, ଯେଉଁଥିରେ ବାହୁଲ୍ୟକୁ ମୋଟେ ପ୍ରଶ୍ରୟ ଦିଆଯାଏ ନାହିଁ । ଆଉ ଗୋଟିଏ ବଡ କଥା ସେମାନଙ୍କର ପ୍ରକୃତି ପ୍ରେମ । ଯେଉଁମାନଙ୍କୁ

Grand Mogul କୁହାଯାଏ, ଅର୍ଥାତ୍ ବାବରଙ୍କଠାରୁ ଆଉରଙ୍ଗଜେବ ପର୍ଯ୍ୟନ୍ତ, ସେମାନେ ନିଜ ଜୀବନର ବେଶ ସମସ୍ତ ଗଡ଼ରେ କଟାଇଛନ୍ତି । ସେଥିଲାଗି ଆଉରଙ୍ଗଜେବ୍‌ଙ୍କ ଛଡ଼ା ଅନ୍ୟମାନଙ୍କର ସେପରି ବାଧବାଧକତା ନଥିଲା । ତଥାପି ତାଙ୍କର ଯାଯାବର ରକ୍ତ ହୁଏତ ସେମାନଙ୍କୁ ଏଥିଲାଗି ବାଧ୍ୟ କରୁଥିଲା । ଫଳତଃ ଉତ୍ତର ଓ ଦକ୍ଷିଣ ଭାରତର ନାନା ସ୍ଥାନରେ ତାଙ୍କର ଉଦ୍ୟାନ ଓ ସୌଧ । ତେବେ ଏ ସମସ୍ତ ଉଦ୍ୟାନ ଲାଗି ତ ପ୍ରଚୁର ପାଣି ଦରକାର । ଯେଉଁଠି ସମ୍ଭବ ଝରଣା, ନାଳ ଇତ୍ୟାଦିକୁ ବାନ୍ଧ ପକ୍କା ନାଳ ଦ୍ୱାରା ବଗିଚାକୁ ଅଣାଯାଉଥିଲା । କିନ୍ତୁ ସମତଳ ଭୂମିରେ ତ ତାହା ସମ୍ଭବ ନୁହେଁ । ସେଠି ମାଟିଠାରୁ କିଛି ଉଚ୍ଚରେ ଏକ ବଡ଼ ପଥରର ପାଣିଟାଙ୍କି ତିଆରି ହେଉଥିଲା । ତା'ଠାରୁ କିଛିଟା ଦୂରରେ ଏକ ବିରାଟ କୂଅ ଖୋଳା ଯାଉଥିଲା । ସେଥିରୁ ପାଣି ବଡ଼ ବଡ଼ ଚମଡ଼ାର ଥଳିରେ ବଳଦ ଦ୍ୱାରା କପିକଲ (Pulley) ଦେଇ ଉଠାଇ ଏହି ଟାଙ୍କିରେ ଭର୍ତ୍ତି କରାଯାଉଥିଲା । ତା'ପରେ ଟାଙ୍କିରୁ ବଗିଚାକୁ ପାଣି ଛଡ଼ା ଯାଉଥିଲା । ଏହାହିଁ ଉତ୍ତର ଭାରତର ପୁରାତନ ଜଳସେଚନ ପଦ୍ଧତି । ବଗିଚାରୁ ବାହାରି ଯାଉଥିବା ପାଣି ବାହାରେ ପ୍ରଜାଙ୍କ କ୍ଷେତରେ ମାଡ଼ି ପାରୁଥିଲା । ଏଣୁ ଏହାକୁ ପ୍ରଜାଙ୍କ ଉପରେ ବାଦଶାହୀ ଖିଆଲ ଅତ୍ୟାଚାର ବୋଲି ଭାବିବା ଉଚିତ୍ ନୁହେଁ । ବରଂ ବାଦଶାହଙ୍କ ନାମରେ ଥିଲେ ପ୍ରଜାର ଲାଭ, କାରଣ ଛୋଟ ଛୋଟ ଅତ୍ୟାଚାରୀ ଜମିଦାରଙ୍କଠାରୁ ରକ୍ଷା ।

ଆମର ଆଲୋଚନାର ସାରକଥା ହେଲା, ମୋଗଲମାନେ ଏ ଦେଶକୁ ଦେଇଛନ୍ତି କ'ଣ । ଆଗରୁ କହିଛୁ ଯେ, ରାଜନୀତି କ୍ଷେତ୍ରରେ ଦିଲ୍ଲୀରୁ ଏକ କେନ୍ଦ୍ର ସରକାର ସାରା ଭାରତରେ ଶାସନ କରିବ—ଏହି ଧାରଣାକୁ ଜନମାନସରେ ବଦ୍ଧମୂଳ କରିଦେବା ମୋଗଲମାନଙ୍କର ଶ୍ରେଷ୍ଠ ଦାନ । ଅବସ୍ଥାଚକ୍ରରେ କେନ୍ଦ୍ର ଦୁର୍ବଳ ହୋଇ ପଡ଼ିପାରେ । ତଥାପି କୌଣସି ପ୍ରାଦେଶିକ ରାଜା, ନବାବ ବା ସୁବେଦାର ନିଜକୁ କାର୍ଯ୍ୟତଃ ସ୍ୱାଧୀନ ହେଲେ ମଧ୍ୟ ଆଇନଗତ ଭାବେ ନିଜକୁ ଦିଲ୍ଲୀର ଅଧୀନ ବୋଲି ସ୍ୱୀକାର କରିବାକୁ ବାଧ୍ୟ ହେଉଥିଲା । ତା' ଛଡ଼ା ଅନ୍ୟ ଦାନ ମଧ୍ୟ କମ୍ ମହତ୍ତ୍ୱ ନୁହେଁ । ସେମାନେ ଭାରତରେ ଏକ ମାର୍ଜିତ ରୁଚିର ପ୍ରଚଳନ (ବା ପୁନଃପ୍ରଚଳନ) କଲେ । ହିନ୍ଦୁ ସମୟର ଆଉ ଦଶଟା କଥା ସହିତ ହିନ୍ଦୁ ରୁଚି ମଧ୍ୟ ପଠାଣ ଆକ୍ରମଣରେ ବିପର୍ଯ୍ୟସ୍ତ ହୋଇଯାଇଥିଲା । ପଠାଣ ସ୍ଥାପତ୍ୟରେ ମୋଗଲ ସ୍ଥାପତ୍ୟ ପରି ମାର୍ଜିତ ରୁଚି ଓ ସ୍ଥାପତ୍ୟର ମାଧ୍ୟମରେ ମନୁଷ୍ୟର ଜଡ଼ ପଦାର୍ଥ ଉପରେ ବିଜୟର ପରିଚୟ ମିଳେ ନାହିଁ । ପଠାଣ ସମୟରେ ମଧ୍ୟ ବିରାଟ ବିରାଟ ସୌଧମାନ ଗଢ଼ାଯାଇଛି । ଏଥିରୁ ଅନେକ ଶକ୍ତି ଏବଂ ବିଶାଳତାର ନିଦର୍ଶନ ହିସାବରେ ଅବଶ୍ୟ ସଫଳ । କିନ୍ତୁ ଏଥିରେ ପଥରର ସ୍ଥୂଳତା (Grossness) କୁ ଜୟ କରାଯାଇ ପାରି ନାହିଁ । ଏହା ସାଙ୍ଗରେ ଦିଲ୍ଲୀର ଜାମା ମସଜିଦ୍ (ଅନେକ ଏହାକୁ ଭୁଲ୍‌ରେ ଜୁମ୍ମା ମସଜିଦ୍ କହନ୍ତି ।)କୁ

ତୁଳନା କଲେ ପାର୍ଥକ୍ୟ ଅତି ସ୍ପଷ୍ଟ ହୋଇପଡ଼େ । ଦୂରରୁ ଦେଖିଲେ ମନେହେବ ଯେପରି ସମସ୍ତ ସୌଧଟା ପବନରେ ଝୁଲୁଛି । ଏତେ ବିରାଟ ହେଲେ ମଧ୍ୟ ଭିନ୍ନ ଭିନ୍ନ ଅଂଶ ମଧ୍ୟରେ କି ସାମଞ୍ଜସ୍ୟ ! ଅଂଶବିଶେଷ ଅର୍ଥାତ୍ Detail ପ୍ରତି କି ଗଭୀର ଲକ୍ଷ୍ୟ !

ତଥାପି ମୋ ମତରେ ଏହି ରୁଚିର ପରାକାଷ୍ଠା ମୋଗଲ ଉଦ୍ୟାନରେ । ଏଠି କଞ୍ଚାମାଲ ପଥର ନୁହେଁ । ଏହା ଜୀବନ୍ତ ବନସ୍ପତି । ଉଦ୍ୟାନକଳାର ମହତ୍ତ୍ୱ ହେଲା ପରିବେଶ ବା Environmentକୁ ସ୍ୱଚ୍ଛତର ଓ ସୁନ୍ଦରତର କରିବା । ଏ କଥା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ଯେ, ଏଥିରେ ସେମାନେ ମହାନ ସଫଳତା ଲାଭ କରିଥିଲେ । ପ୍ରକୃତିର ସୁଷମା ଦେଖିପାରିବାର ଚକ୍ଷୁ ସେମାନଙ୍କର ଥିଲା । ଜାହାଙ୍ଗୀର ଗୋଟିଏ ସାମାନ୍ୟ ବଣ ପକ୍ଷୀର ଚିତ୍ର ନିଖୁଣ ଓ କଳାତ୍ମକ ଭାବରେ ପ୍ରସ୍ତୁତ କରାଇଛନ୍ତି । ମୋଟ ଉପରେ ସେମାନେ କ୍ଷୁଦ୍ରାଦପି କ୍ଷୁଦ୍ର ବସ୍ତୁରେ ମଧ୍ୟ ଉତ୍କର୍ଷ (Excellence)ର ସନ୍ଧାନ କରୁଥିଲେ । ଘାସ ପତ୍ରଟିର ଉପରେ ଲାଗିଥିବା ଗୋଟିଏ ଶିଶିର ବିନ୍ଦୁରେ ପ୍ରତିଫଳିତ ଅନନ୍ତ ଆକାଶକୁ ଦେଖିବାର ଶକ୍ତି ସେମାନଙ୍କର ଥିଲା । ଉର୍ଦ୍ଦୁ କବି ଇକ୍‌ବାଲ ତାଙ୍କର ଏକ କବିତାରେ ଲେଖିଛନ୍ତି, "ହଜାର ବର୍ଷ ଧରି ନରଗିସ୍ ତା'ର ବିଫଳତା ଲାଗି କାନ୍ଦୁଛି । ପ୍ରକୃତ ସୌନ୍ଦର୍ଯ୍ୟବୋଧ ଥିବା ଦର୍ଶକ ଜନ୍ମ ହେବା ସହଜ ନୁହେଁ ।"

(ନରଗିସ୍—Narcisus ପୁଷ୍ପବିଶେଷ)

ଏହି ରୁଚି, ଏହି ଦୃଷ୍ଟିଶକ୍ତି ଜିନ୍ଦାବାଦ୍ ।



# ଇତିହାସର ପ୍ରତିଶୋଧ

ମୋର ଜନ୍ମ ଅବିଭକ୍ତ ଭାରତରେ । ଦେଶ ବିଭାଜନ ବେଳକୁ ମୁଁ ଅବୋଧ କିଶୋର ମଧ୍ୟ ନଥିଲି । କଲେଜକୁ ଆସିଲିଣି । ତା ପରେ ମୁଁ ପିଲାଦିନରେ ଉତ୍ତର ପ୍ରଦେଶ (ସେତେବେଳର ଯୁକ୍ତ ପ୍ରଦେଶ)ରେ ଥିଲି । ଦେଶ ବିଭାଜନ-ରାଜନୀତିର ହୃତପିଣ୍ଡ ଥିଲା ଉତ୍ତର ପ୍ରଦେଶ, ବିଶେଷ କରି ଆଲିଗଡ଼ । ମୋ ସାଙ୍ଗରେ ପଢ଼ୁଥିବା ଅନେକ ମୁସଲମାନ ପିଲା ପାକିସ୍ଥାନ ଚାଲିଗଲେ; ନିଶ୍ଚୟ ଅଧିକ ସୁନ୍ଦର ଭବିଷ୍ୟତ ଆଶାରେ । ସେ ସବୁକଥା ଏତେଦିନ ପରେ ଭୁଲିଯିବା କଥା, କିନ୍ତୁ କେତେକ ଘଟଣା ପୁଣି ଥରେ ସନାଉଲ୍ଲା, ଇଆସତ୍ ଅଲ୍ଲି ଓ ଅବଦୁଲ ଓ୍ୱାହିଦ୍ ଇତ୍ୟାଦି ବିସ୍ମୃତ ସ୍କୁଲ ସାଥୀମାନଙ୍କୁ ମନେ ପକାଇ ଦେଲା । ପ୍ରଥମ ଘଟଣା ହେଲା କରାଚି ଓ ସିନ୍ଧୁ ପ୍ରଦେଶର କେତେକ ସହରରେ ମୋହାଜିର୍ ବା ଭାରତରୁ ଯାଇଥିବା ଶରଣାର୍ଥୀ ଓ ତାଙ୍କ ପିଲାପିଲିଙ୍କ ବିରୁଦ୍ଧରେ ଦଙ୍ଗା । ଏହି ମୋହାଜିରମାନଙ୍କ ମାତୃଭାଷା ଉର୍ଦ୍ଦୁ । ଭାବିବା କଥା ଏମାନେ ଆଜି ପର୍ଯ୍ୟନ୍ତ କାହିଁକି ପାକିସ୍ଥାନରେ ଶରଣାର୍ଥୀ ବୋଲାଉଛନ୍ତି । ଭାରତରେ ତ ମୋଟା ମୋଟି ଆମେ ଏ କଥାଟା ଭୁଲି ଗଲେଣି । ଦୂରଦର୍ଶନର "ବୁନିୟାଦ" ବି ସେହି ଇତିହାସ ମନେ ପକାଇ ଦେଉଥିଲା । ସବୁଠାରୁ ବିଚିତ୍ର କଥା : ସେ ଦଙ୍ଗା ମୋହାଜିର ଓ ପଠାଣ ମାନଙ୍କ ମଧ୍ୟରେ । ଏ ଦୁହିଁଙ୍କ ମଧ୍ୟରୁ କେହି ସିନ୍ଧୁ ପ୍ରଦେଶର ନୁହନ୍ତି ।

ଅନ୍ୟ ଘଟଣାଟି ହେଲା ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫର ଖାଁଙ୍କ ପୁତ୍ର ଓ୍ୱାଲି ଖାଁଙ୍କ ପୁସ୍ତକ "Facts are facts"ର ପ୍ରକାଶନ । ବହିଟା ପଢ଼ିଲା ପରେ ମନ ଭିତରେ ବହୁ ପ୍ରଶ୍ନ ଉଠେ । ଏ ବହି ଅନେକ ପ୍ରଶ୍ନ ଉଠାଇଛି ଏବଂ ତାର ଉତ୍ତର ବ୍ରିଟିଶ ସରକାରଙ୍କ ପୁସ୍ତକାଳୟରେ ସୁରକ୍ଷିତ ଥିବା ଦଲିଲ ଦସ୍ତାବିଜ ଉପରେ ନିର୍ଭର କରି ଦେବାର ଚେଷ୍ଟା କରିଛି । ଇତିହାସକୁ ବୁଝିବା ଲାଗି ଏ ପୁସ୍ତକଟି ଅତି ମୂଲ୍ୟବାନ୍ ।

ଆମେ ମୋଟା ମୋଟି ଧରି ନେଇ ଥାଉଁ ଯେ, ମୁସ୍ଲିମ୍ ଲିଗ୍ ପ୍ରତି ଅବିଭକ୍ତ ଭାରତରେ ଅଧିକାଂଶ ମୁସଲମାନଙ୍କର ସମର୍ଥନ ଥିଲା । କେବଳ ସୀମାନ୍ତ

ପ୍ରଦେଶରେ କଂଗ୍ରେସର ସଂଖ୍ୟା ଗରିଷ୍ଠତା ଥିଲା । ଆମେ ଭୁଲିଯାଇ ଥାଉଁ ଯେ, ଆଉ ଦୁଇଟି ପ୍ରଧାନ ମୁସଲମାନ ବହୁଳ ପ୍ରଦେଶରେ ଅର୍ଥାତ୍ ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ମୁସ୍‌ଲିମ୍ ଲିଗ୍‌ର କୌଣସି ଉଲ୍ଲେଖଯୋଗ୍ୟ ପ୍ରଭାବ ନଥିଲା । ୧୯୩୭ ସାଲର ନିର୍ବାଚନରେ ମୁସଲମାନ ସଂଖ୍ୟା ଗରିଷ୍ଠ ପ୍ରଦେଶ ମାନଙ୍କରେ ମୁସଲିମ ଲିଗର ଆସନ ସଂଖ୍ୟା ଦେଖନ୍ତୁ । ମନେ ରଖିବା କଥା ଯେ, ସେ ସମୟରେ ପୃଥକ ନିର୍ବାଚନ ମଣ୍ଡଳୀ ଥିଲା, ଅର୍ଥାତ୍ ମୁସଲମାନ କେବଳ ମୁସଲମାନଙ୍କୁ ଭୋଟ ଦେଇ ପାରୁଥିଲେ ।

ପଞ୍ଜାବ-୧
ବଙ୍ଗଳା-୪୦
ସିନ୍ଧୁ-୦
ସୀମାନ୍ତ ପ୍ରଦେଶ-୦

ଅର୍ଥାତ୍ ଆଜି ଯାହା ପାକିସ୍ଥାନ, ସେଠାରେ ମୁସଲିମ ଲିଗର ପ୍ରଭାବ ନଥିଲା । ମୁସଲିମଲିଗ୍‌ର ପ୍ରଭାବ ବଙ୍ଗଳାରେ ହିଁ ସୀମିତ ଥିଲା । ପୁଣି ତାହାର ପ୍ରଭାବ ସେହିସବୁ ପ୍ରଦେଶରେ ବେଶି ଥିଲା, ଯେଉଁଠି ମୁସଲମାନ ମାନେ ସଂଖ୍ୟାଲଘୁ । ଅର୍ଥାତ୍ ସେ ସବୁ ପ୍ରଦେଶ କଦାପି ପାକିସ୍ଥାନରେ ଅନ୍ତର୍ଭୁକ୍ତ ହୋଇପାରିନଥାନ୍ତା । ଯେତେବେଳେ ଦେଶ ବିଭାଜନ ହେଲା, ପଶ୍ଚିମ ପାକିସ୍ଥାନରୁ ସମସ୍ତ ହିନ୍ଦୁ ଶିଖ ଚାଲି ଆସିଲେ । ଅଥଚ ଏପରି କୌଣସି ଘଟଣା ଉତ୍ତର ପ୍ରଦେଶ ଇତ୍ୟାଦିରେ ଘଟି ନଥିଲା । ଅର୍ଥାତ ଭାରତର ମୁସଲମାନ, ଯେଉଁମାନେ ପକିସ୍ଥାନ ଲାଗି ଭୋଟ ଦେଇଥିଲେ, ସେମାନେ ଭାରତରେ ରହିଗଲେ । ଏଣୁ ଓ୍ୱାଲି ଖାଁ କହିଛନ୍ତି ଯେ, ପ୍ରକୃତରେ ଭାରତର ବିଭାଜନ ଅପେକ୍ଷା ବେଶି ଗୁରୁତ୍ୱପୂର୍ଣ୍ଣ ଯେ ମୁସଲମାନ ମାନଙ୍କର ବିଭାଜନ ହୋଇଗଲା । ଯେଉଁ ଅଞ୍ଚଳ ପାକିସ୍ଥାନକୁ ଗଲା ସେଠି ଆଗରୁ ମୁସଲମାନଙ୍କର ଏପରି ସଂଖ୍ୟା ଗୁରୁତ୍ୱ ଥିଲା ଯେ ତାଙ୍କ ଲାଗି ପାକିସ୍ଥାନ ଆଉ ବେଶି କିଛି ହୋଇ ପାରି ନଥାନ୍ତା । କେବଳ ଅବିଭକ୍ତ ଭାରତରେ ମୁସଲମାନ ମାନଙ୍କର ଯେଉଁ ପ୍ରଭାବ ଥିଲା, ସେମାନେ ପାକିସ୍ଥାନ ହେବା ପରେ ତା ହରାଇଲେ । ତା ହେଲେ କଣ ଇଂରେଜ ପାକିସ୍ଥାନ ଚାହୁଁଥିଲେ ? ତା ବି କହି ହେବ ନାହିଁ । ଏଥିରେ ସନ୍ଦେହ ନାହିଁ ଯେ, ଇଂରେଜ ହିନ୍ଦୁ ମୁସଲିମ ଦ୍ୱନ୍ଦକୁ ପ୍ରୋତ୍ସାହନ ଦେଇ ସବୁବେଳେ କହିବାର ସୁଯୋଗ ଖୋଜୁଥିଲେ ଯେ, ସେମାନେ ଭାରତୀୟଙ୍କ ହାତରେ କ୍ଷମତା ଅର୍ପଣ କରିବାକୁ ଚାହାନ୍ତି, କେବଳ ହିନ୍ଦୁ-ମୁସଲିମ କନ୍ଦଳ ଯୋଗୁଁ ତା ହୋଇପାରୁ ନାହିଁ ଏବଂ ଫଳତଃ ଇଂରେଜ ଅତି ଅନିଚ୍ଛାର ସହିତ ଦେଶ ଶାସନ କରୁଛି । କିନ୍ତୁ ଯେତେବେଳେ ସ୍ପଷ୍ଟ ହୋଇଗଲା ଯେ, ଇଂରେଜ ଆଉ ଭାରତରେ ରହି ପାରିବେ ନାହିଁ, ସେତେବେଳେ କେବିନେଟ ମିଶନ ଯୋଜନା ଇତ୍ୟାଦି ଜରିଆରେ ଭାରତର ଅବିଭକ୍ତ ସତ୍ତାକୁ ବଜାୟ ରଖିବାର ଚେଷ୍ଟା କରିଛନ୍ତି । ସେଥିରେ କେତେଟା ଆନ୍ତରିକତା ଥିଲା - ସେ କଥା ଅଲଗା ।

ମୋର ଧାରଣା ଯେ, ଇଂରେଜ ମାନଙ୍କର ଏ ବିଷୟରେ କୌଣସି ସୁଚିନ୍ତିତ ଯୋଜନା ନଥିଲା । ମୁସ୍‌ଲିମ୍ ଲିଗ୍‌କୁ ବେଶି ବେଶି କଂଗ୍ରେସର ବିରୋଧୀ କରିବାକୁ ଉତ୍ସାହିତ କରୁ କରୁ ଶେଷରେ ଆଉ ଫେରିବାର ପଥ ରହିଲାନି । କେତେ ଲୋକ ମନେ କରନ୍ତି ଯେ, ପାକିସ୍ଥାନ ସୁଯୋଗ ଜିନ୍ନାଙ୍କର କୃତି । କଂଗ୍ରେସ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ସେ ନିଜର ଅହମ୍‌କୁ ସାର୍ଥକ କରିବା ଲାଗି ପାକିସ୍ଥାନ କଲେ ଏବଂ ତାଙ୍କର କ୍ଷୁରଧାର କୂଟବୁଦ୍ଧି ଦ୍ୱାରା ଅନ୍ୟ ସମସ୍ତଙ୍କୁ ତାହା ମାନିବାକୁ ବାଧ୍ୟ କଲେ । ତେବେ ସେ କଣ ଏକ ଇସ୍‌ଲାମିକ ରାଷ୍ଟ୍ର ଚାହୁଁଥିଲେ ?

ଜିନ୍ନା ୧୧ ଅଗଷ୍ଟ ୧୯୪୭ରେ ପାକିସ୍ଥାନ ସମ୍ବିଧାନ ଆସେମ୍ବ୍ଲିକୁ ସମ୍ବୋଧନ କରି କହିଥିଲେ ଯେ, ପାକିସ୍ଥାନ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ହେବ । ଏକଥା ଇସ୍କନ୍ଦର ମିର୍ଜା ମଧ୍ୟ ନିଜ ଆତ୍ମଜୀବନୀରେ କହିଛନ୍ତି । ଏଣୁ କୌଣସି ସ୍ପଷ୍ଟ ଉତ୍ତର ମିଳୁନାହିଁ । ପୂର୍ବ ପାକିସ୍ଥାନ କଥା ମଧ୍ୟ ସ୍ପଷ୍ଟ ନୁହେଁ । ବିଭାଜନ ସମୟରେ ସୁହ୍ରାୱର୍ଦ୍ଦୀ ଅବିଭକ୍ତ ବଙ୍ଗଳାର ମୁଖ୍ୟମନ୍ତ୍ରୀ ଥିଲେ । ସେ ସେ ସମୟରେ ଏକ ସ୍ୱାଧୀନ ଅବିଭକ୍ତ ବଙ୍ଗଳା ଲାଗି ଏକ ପ୍ରସ୍ତାବ ପାସ୍ କରାଇଥିଲେ ଏବଂ ପରେ ସେ ପାକିସ୍ଥାନର ପ୍ରଧାନ ମନ୍ତ୍ରୀ ହୋଇଥିଲେ । ମୋର ଧାରଣା ମୁସଲିମ ଲିଗ୍‌ର ମଧ୍ୟ ପାକିସ୍ଥାନ ଓ ତାର ପରିଣାମ ବିଷୟରେ କୌଣସି ସ୍ପଷ୍ଟ ଧାରଣା ନ ଥିଲା । ସେମାନେ ଭାବିଥିଲେ ଯେ, ପାକିସ୍ଥାନରେ ଅବିଭକ୍ତ ପଞ୍ଜାବ ଓ ବଙ୍ଗଳା ରହିବ । ପାକିସ୍ଥାନରେ ବହୁ ହିନ୍ଦୁ ସଂଖ୍ୟାଲଘୁ ଓ ଭାରତରେ ମୁସଲମାନ ସଂଖ୍ୟାଲଘୁ ହେବେ । ଏମାନେ ପରସ୍ପରର ନିରାପତ୍ତାର ବନ୍ଧକ ହେବେ । କିନ୍ତୁ ପଶ୍ଚିମ ପାକିସ୍ଥାନରୁ ସଂଖ୍ୟାଲଘୁ ମାନଙ୍କର ପୁରାପୁରି ଦେଶତ୍ୟାଗ ସମଗ୍ର ସମସ୍ୟାକୁ ଏକ ନୂଆ ରୂପ ପ୍ରଦାନ କଲା । ଯଦିଓ ପୂର୍ବ ପାକିସ୍ଥାନରେ ବହୁ ହିନ୍ଦୁ ରହି ଯାଇଥିଲେ, ତଥାପି ପୂର୍ବ ଓ ପଶ୍ଚିମ ପାକିସ୍ଥାନ ମୂଳରୁ ହିଁ ଭାବାତ୍ମକ ଦୂରତା ରଖି ଚାଲିଥିଲେ, ଯାହା ଶେଷରେ ବାଂଲାଦେଶରେ ପରିଣତ ହେଲା ।

ଭାରତରେ ଯେଉଁ ମୁସଲମାନ ରହିଗଲେ, ତାଙ୍କର ଅବସ୍ଥା କଣ ହେଲା ଓ ଭାରତରୁ ଯେଉଁମାନେ ପାକିସ୍ଥାନକୁ ଗଲେ, ସେମାନେ କଣ ପାଇଲେ ? ଭାରତର ମୁସଲମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମ ହେଲା ସମୁଦ୍ର ତୀରବର୍ତ୍ତୀ ମୁସଲମାନ । ଏମାନେ ଭାରତର ଉପକୂଳ ଅଞ୍ଚଳରେ ଅଛନ୍ତି । ଏମାନେ ସାଧାରଣତଃ ବ୍ୟବସାୟୀ ଓ ନାବିକ । ସେମାନେ ସାଧାରଣତଃ ସଂଖ୍ୟାଗୁରୁ ସମ୍ପ୍ରଦାୟ ସହିତ ବେଶ୍ ମିଳି ମିଶି ଚଳିପାରିଛନ୍ତି । ଏପରିକି କେରଳରେ ମଧ୍ୟ । ତାର ପ୍ରଧାନ କାରଣ ସେମାନେ କେବେ ଶାସକ ନଥିଲେ । ଯାହା ନଥିଲା ତା ହରାଇବାର ପ୍ରଶ୍ନ ନାହିଁ । ସମସ୍ୟା ପ୍ରଧାନତଃ ଉତ୍ତର ପ୍ରଦେଶ ଓ ହାଇଦ୍ରାବାଦର ମୁସଲମାନଙ୍କୁ ନେଇ ।

ଏହି ସବୁ ସ୍ଥାନରେ କେତେ ଶତାବ୍ଦୀ ଧରି ମୁସଲମାନ ରାଜା ଥିଲେ । ଏଣୁ ରାଜତ୍ୱର କାହାଣୀ ମୁସଲମାନ ଜନତାର ମନରେ ବଦ୍ଧମୂଳ । ଲାଲକିଲ୍ଲା, ଇମାମବାଡ଼ା ବା ଚାରମିନାର ଜନତା ମନରେ, "କି ଥିଲା ଏ ରାଜ୍ୟ, କି ହୋଇଛି ଆଜି" ଜାତୀୟ ଭାବନା ପ୍ରସ୍ତୁତ କରେ । ଏଣୁ ଏମାନେ ନିଜର ବର୍ତ୍ତମାନ ଅବସ୍ଥା ସାଙ୍ଗେ ସାଲିସ୍ କରିବାରେ ଅସୁବିଧା ଅନୁଭବ କରୁଛନ୍ତି । ଏହି ମନୋଭାବର ଫାଇଦା ଉଠାଉଛନ୍ତି ଦଳେ ମୁସଲିମ ନେତା । ଯଦି ହିନ୍ଦୁମାନଙ୍କ ସଙ୍ଗେ କୌଣସି ବିରୋଧ ଦେଖା ଦିଏ, ଏମାନେ ତାକୁ ଉସୁକାଇ ଦିଅନ୍ତି । ଏମାନଙ୍କ ଉଦ୍ଦେଶ୍ୟ ହେଲା ମୁସଲିମ ଭୋଟ ବ୍ୟାଙ୍କର ମ୍ୟାନେଜର ହେବା । ଏହା ତୁଳନାରେ ଖ୍ରୀଷ୍ଟିଆନ ନେତାମାନେ ନିଜ ଅନୁଗାମୀ ମାନଙ୍କୁ ଯୁକ୍ତିଯୁକ୍ତ ନେତୃତ୍ୱ ଦେଇଛନ୍ତି, ଫଳତଃ ହିନ୍ଦୁ ଖ୍ରୀଷ୍ଟିଆନ ବିବାଦ କୌଣସିଠାରେ ଉଗ୍ରରୂପ ପାଇନାହିଁ ଏବଂ ଖ୍ରୀଷ୍ଟିଆନ ମାନଙ୍କର ଅଧିକାର, ସୁଯୋଗ ଇତ୍ୟାଦିରେ ବୃଦ୍ଧି ହିଁ ହୋଇଛି । ହୁଏତ ଦେଶ ବିଭାଜନ ପରେ ମୁସଲମାନ ମାନେ ଭାବିଥିଲେ ଯେ, ପାକିସ୍ତାନ ଭାରତୀୟ ମୁସଲମାନ ମାନଙ୍କର ଜାମିନ ହୋଇ ସେମାନଙ୍କୁ ରକ୍ଷା କରିବ ଏବଂ ବ୍ରିଟିଶ ସମୟରେ ସେମାନେ ଯେପରି ବିଶେଷ ସୁବିଧା ସୁଯୋଗ ଭୋଗ କରୁଥିଲେ ତା ବଜାୟ ରହିବ । ଭାରତ ଓ ପାକିସ୍ଥାନ ମଧ୍ୟରେ ବ୍ୟବଧାନଟା ବଙ୍ଗଳା ଓ ବିହାର ଠାରୁ ବେଶି ହେବ ନାହିଁ । ଏପରିକି ପାକିସ୍ଥାନର ପ୍ରତିଷ୍ଠାତା ଜିନ୍ନା ମଧ୍ୟ ଏପରି ଦିବାସ୍ୱପ୍ନ ଦେଖିବାର ପ୍ରମାଣ ଅଛି । ସେ ତାଙ୍କର ପ୍ରିୟ ନଗରୀ ବମ୍ବେଇକୁ ମଝିରେ ମଝିରେ ଫେରି ଆସିବାକୁ ଚାହିଁଥିଲେ, କିନ୍ତୁ ରାଜନୀତି ଅତି କ୍ରୁର ଏବଂ ଏପରି ବାଲିର ପ୍ରାସାଦ ସମୟର ଢେଉ ବାଜି ଭାଙ୍ଗିବା ନିଶ୍ଚିତ ।

ମୋଟ ଉପରେ କଥା ହେଲା ଯେ, ଭାରତରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଏକ କାର୍ଯ୍ୟକାରୀ ବୁଝାମଣା ହୋଇ ପାରି ନାହିଁ । ଏହାର କାରଣ କିଣ ଓ ଏ ବିଷୟରେ କିଛି କରାଯାଇ ପାରିବ କି ନାହିଁ ଏହା ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ମୁଁ ବିଶ୍ୱାସ କରେ ଯେ ଦେଶ ବିଭାଜନ ଦ୍ୱାରା ପାକିସ୍ଥାନରେ ଥିବା ମୁସଲମାନ ମାନଙ୍କର କୌଣସି ଲାଭ ହୋଇନି ଓ ଭାରତରେ ରହି ଯାଇଥିବା ମୁସଲମାନ ମାନଙ୍କର ଅନେକ କ୍ଷତି ହୋଇଛି । ଭାରତରୁ ଯେଉଁମାନେ ପାକିସ୍ଥାନ ଗଲେ, ସେମାନଙ୍କ ଭିତରୁ କେତେକ ହୁଏତ ପ୍ରଥମ ଅବସ୍ଥାରେ କିଛି ସୁବିଧା ପାଇଲେ । କିନ୍ତୁ ବର୍ତ୍ତମାନ ଅବସ୍ଥା କିଣ ? ମୋହାଜିର ଏ ପର୍ଯ୍ୟନ୍ତ ଶରଣାର୍ଥୀ ଓ ନାନା ସ୍ଥାନରେ ଦଙ୍ଗାର ଶିକାର । ଏପରିକି ପାକିସ୍ଥାନରେ କେତେକ କହିଲେଣି ଯେ, ମୋହାଜିର ଭାରତ ଫେରିଯାଆନ୍ତୁ । ଏହି ଭାରତରୁ ଯାଇଥିବା ମୁସଲମାନ, ବାଂଲାଦେଶରେ ବିହାରୀ ବୋଲି କଥିତ । ସେମାନେ ବାଂଲାଦେଶ ଓ ପାକିସ୍ଥାନ, ଉଭୟଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ । ଏହି ଟ୍ରାଜେଡି ଯେ କିପରି ହେଲା - ଏହା ଉପରେ ସମ୍ୟକ୍ ଦୃଷ୍ଟିପାତ ଆବଶ୍ୟକ ।

ଏହି ପ୍ରବନ୍ଧରେ ମୁଁ ବିଶେଷ କରି ମୁସଲମାନ ଲେଖକଙ୍କ ଉପରେ ନିର୍ଭର କରିଛି ।

ଭାରତରେ ହିନ୍ଦୁ ଓ ମୁସଲମାନ ଏକ ସଙ୍ଗେ ରହି ଆସିଛନ୍ତି । ଅବଶ୍ୟ ଏକାଠି ରହିବା ଛଡ଼ା ଉପାୟ ବା କଣ ଥିଲା ? ଇସ୍‌ଲମ ଅବଶ୍ୟ ଖୁବ୍ ଶୀଘ୍ର ସିନ୍ଧୁ ପ୍ରଦେଶକୁ ଆସି ଯାଇଥିଲା; କିନ୍ତୁ ତାହାର ବିଶେଷ ପ୍ରଭାବ ହୋଇ ନଥିଲା । ପ୍ରକୃତ ସମ୍ପର୍କ ଆରମ୍ଭ ହେଲା ମହମୁଦ ଗଜନଭୀଙ୍କଠାରୁ । ସେ ସମୟରେ ଏକ ବୌଦ୍ଧିକ କିଙ୍କାପାର ପରିଚୟ ମିଳେ । ଅଲ୍-ବିରୁନିଙ୍କ ପରି ଭାରତୀୟ ଦର୍ଶନ ଓ ଅନ୍ୟାନ୍ୟ ବିଷୟରେ ଟୀକାକାର ମିଳିବା କଷ୍ଟ । ସେପରି ଟୀକାକାର ପରେ ଜର୍ମାନୀରେ ହିଁ ମିଳିବେ । କିନ୍ତୁ ମଙ୍ଗୋଲ ଆକ୍ରମଣ ଏହି ସମସ୍ତ ସମ୍ଭାବନାକୁ ଧୂଳିସାତ୍ କରିଦେଲା । ଭାରତ ଉପରେ ଏହାର ପ୍ରତ୍ୟକ୍ଷ ପ୍ରଭାବ ସ୍ୱଳ୍ପ । କିନ୍ତୁ ମଧ୍ୟ ଏସିଆର ସମରକନ୍ଦ, ବୁଖାରା ଧୂଳିସାତ୍ ହେଲା । ସେ ସମୟରେ ଅନ୍ୟାନ୍ୟ ଦେଶ ତୁଳନାରେ ଭାରତରେ, ସୁଖ ଶାନ୍ତି । ଏଣୁ ଦଳ ଦଳ ମୌଲବୀ ଓ ଆଲିମ୍ ( ମୁସଲିମ ଧର୍ମଶାସ୍ତ୍ର ବିଦ୍ୱାନ ) ଭାରତ ପଳାଇ ଆସିଲେ । ସାଙ୍ଗରେ ଆଣିଲେ ସମରକନ୍ଦ ଓ ବୋଖାରର ଅତି ଅସହିଷ୍ଣୁ ମତବାଦ । ସେମାନେ ପ୍ରଚାର କଲେ ଯେ, ହିନ୍ଦୁ ମାନେ ଇହୁଦୀ ବା ଖ୍ରୀଷ୍ଟିଆନ ମାନଙ୍କ ପରି ନୁହନ୍ତି । ଇହୁଦୀ ବା ଖ୍ରୀଷ୍ଟିଆନ୍ ମଧ୍ୟ ପ୍ରଭୁଙ୍କର ପ୍ରଦତ୍ତ ପୁସ୍ତକ ପାଇଛନ୍ତି । ତା କୋରାନ ପରି ଶେଷକଥା ନହେଲେ ମଧ୍ୟ ଈଶ୍ୱରଙ୍କର ବାଣୀ । ହଜରତ ମହମ୍ମଦ ଅମୁସଲମାନଙ୍କ ସାଙ୍ଗରେ ବ୍ୟବହାର ଲାଗି ଯେଉଁ ଉଦାର ନୀତିର ଉପଦେଶ ଦେଇଛନ୍ତି, ତା କେବଳ ଇହୁଦୀ ଓ ଖ୍ରୀଷ୍ଟିଆନ ମାନଙ୍କ ଲାଗି ଉଦ୍ଦିଷ୍ଟ । ହିନ୍ଦୁ ହେଉଛନ୍ତି ପୁରାପୁରି କାଫିର । ଏଣୁ ସେମାନେ ହୁଏତ ସ୍ୱେଚ୍ଛାରେ ଇସଲାମ ଗ୍ରହଣ କରିବେ ନହେଲେ ମୃତ୍ୟୁ ବରଣ କରିବେ । ଏପରି ଫତୁଆ କାର୍ଯ୍ୟକାରୀ କରିବା ଅସମ୍ଭବ । ଏଣୁ ଏହି ମୁଲ୍ଲାଗଣ ପଠାଣ ଶାସନ କାଳରେ ହିନ୍ଦୁମାନଙ୍କ ପ୍ରତି ଯଥା ସମ୍ଭବ ଦୁର୍ବ୍ୟବହାର କରି ତାଙ୍କୁ ହେୟ ପ୍ରତିପନ୍ନ କରାଇବା ଲାଗି ଶାସନ ତନ୍ତ୍ର ଉପରେ ଚାପ ପକାଉ ଥିଲେ । ଏହାର ଫଳ ହେଲା ଯେ ହିନ୍ଦୁ ମୁସଲିମ୍ ମାନଙ୍କ ମଧ୍ୟରେ ଅବିଶ୍ୱାସର ବୀଜବପନ ହୋଇଗଲା ।

ଏହାର ବିରୁଦ୍ଧରେ ସୁଫୀସନ୍ଥ ଗଣ ଏକ ସବଳ ସଂଗ୍ରାମ ଚଳାଇଥିଲେ । ସେମାନେ ବନ୍ଦା ଓ ଖୋଦା ବା ନର ଓ ନାରାୟଣ ମଧ୍ୟରେ ଏକ ପ୍ରତ୍ୟକ୍ଷ ପ୍ରେମର ସମ୍ପର୍କ ସ୍ଥାପନ କରିବାକୁ ସାଧନା ଚଳାଇଥିଲେ । ସେ ସମୟଟା ହିନ୍ଦୁ ଧର୍ମରେ ମଧ୍ୟ ଭକ୍ତିବାଦର ଯୁଗ ଯେଉଁଥିରେ ସମସ୍ତ ଆଚାର ସର୍ବସ୍ୱ ରୀତିବାଦ ଉପରେ ବଳିଷ୍ଠ ଆଘାତ କରାଯାଇଥିଲା । ଏଣୁ ଭକ୍ତିବାଦ ଓ ସୁଫୀବାଦ ମଧ୍ୟରେ ଅନେକ ଦିଆନିଆ ହୋଇଛି । ତାର ନମୁନା କବୀର, ନାନକ ଦାଦୁ ଇତ୍ୟାଦି । ଘର ପାଖକୁ ଆସିଲେ ସଓ୍ୟା ଟଙ୍କାର ଶିରଣୀ ଭୋଗ ଖାଇବା ସତ୍ୟପୀର ଆଉ କିଏ ? କିନ୍ତୁ ହାୟ, ଏହାର

ରାଜନୀତି ଉପରେ କୌଣସି ଫଳ ହେଲା ନାହିଁ । ଏହି ପୂର୍ବୋକ୍ତ ମୌଲବୀ ମାନଙ୍କର ପ୍ରଭାବ ବଜାୟ ରହିଲା । ଏପରିକି ପ୍ରବଳ ପ୍ରତାପୀ ଦିଲ୍ଲୀର ସୁଲତାନ ନିଜର ରାଜ୍ୟାଭିଷେକ, ବାଗଦାଦ ବା କାଇରୋରେ ଥିବା ଖଲିଫାଙ୍କଠାରୁ ମଞ୍ଜୁରି କରାଇ ଆଣୁଥିଲେ । ଅର୍ଥାତ୍ ଏମାନେ ଓ ଏମାନଙ୍କର ଅନ୍ତିତବର୍ଗ ବହୁତ ଦିନ ପର୍ଯ୍ୟନ୍ତ ଶିକ୍ଷିତ ନିଜର ଭାରତୀୟତ୍ୱକୁ ଅସ୍ୱୀକାର କରୁଥିଲେ । ଅଧିକାଂଶ ଶିକ୍ଷିତ ମୁସଲମାନ ନିଜର ସାଂସ୍କୃତିକ ସମ୍ବନ୍ଧ ଇରାନ୍ ସାଙ୍ଗରେ ଯୋଡ଼ୁଥିଲେ । ଇରାନର ଲାଲ ଓ ଗୁଲ ବୁଲ ଭାରତରେ କଲମ କରିବାର ଏବଂ ପଦ୍ମ ଓ କୋକିଳକୁ ଭୁଲିଯିବାର ଚେଷ୍ଟା କଲେ । ଏହା ଉର୍ଦ୍ଦୁ ଭାଷାର ଅପୂରଣୀୟ କ୍ଷତି କରିଛି । ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ ମାନବ ଓ ପ୍ରକୃତି ମଧ୍ୟରେ ଯେ, ଗଭୀର ସମ୍ବେଦନା ବିଦ୍ୟମାନ, ସେହି ସମ୍ପଦରୁ ଉର୍ଦ୍ଦୁ ପ୍ରାୟ ବଞ୍ଚିତ ।

ଆଉ ଗୋଟିଏ କଥା ମଧ୍ୟ ମନେ ରଖିବା ଉଚିତ୍ । ଭାରତରେ ଇଂରେଜ ମାନଙ୍କ ପରି ମୁସଲମାନ ଶାସକ ଗୋଷ୍ଠୀକୁ ବିଦେଶରୁ ଆମଦାନୀ ହେଉଥିଲା । ଇରାନ ଓ ତୁର୍କିସ୍ଥାନରୁ ସବୁବେଳେ ସୈନିକ, ମୌଲବୀ ଓ ବ୍ୟବସାୟୀ ଭାରତ ଆସୁଥିଲେ । ଏଣୁ ଏ ଦେଶରେ ଜନ୍ମ ହୋଇଥିବା ମୁସଲମାନଙ୍କ ପକ୍ଷରେ ଉପରକୁ ଉଠିବା କଷ୍ଟ ଥିଲା । ମୋଗଲ ଦରବାରରେ ହିନ୍ଦୁସ୍ଥାନୀ ଓ ବିଦେଶୀଙ୍କ ଭିତରେ ସବୁବେଳେ କଷାକଷି ଲାଗି ଥିଲା । ପୁଣି ଇସଲାମୀୟ ରାଜନୀତିରେ ଟିକିଏ ଅଡୁଆ ଅଛି । ଏଥିରେ ଏପରି କୌଣସି ରାଜତ୍ୱର କଳ୍ପନାହିଁ ନାହିଁ ଯେଉଁଠି ମୁସଲମାନ ରାଜତ୍ୱ କରୁନଥିବେ । ଏପରି ଅଣ ମୁସଲମାନ ଶାସିତ ରାଜ୍ୟ "ଦାରୁଲ୍ ହର୍ବ" ବା ଯୁଦ୍ଧର ଦେଶ । ତାକୁ ଜୟ କରି ମୁସଲ୍‌ମାନ ଶାସନ ସ୍ଥାପନା କଲେ ତା ହେବ "ଦାରୁଲ୍ ଅମନ" ବା ଶାନ୍ତିର ଦେଶ । ଏଣୁ ଧର୍ମଶାସ୍ତ୍ରରେ ଅଣ ମୁସଲମାନ ସମ୍ପ୍ରଦାୟ ଲାଗି କୌଣସି ବ୍ୟବସ୍ଥା ନାହିଁ । ଏଠି ଗୋଟିଏ କଥା ଉଲ୍ଲେଖ ନକଲେ ମୁଲ୍ଲା ସମ୍ପ୍ରଦାୟ ପ୍ରତି ଘୋର ଅନ୍ୟାୟ ହେବ । ମୁଲ୍ଲା ଆଉ ଯାହା ହେଉ ନା କାହିଁକି, ସେ ବ୍ରିଟିଶ ଶାସନକୁ କଦାପି ଗ୍ରହଣ କରି ପାରିନଥିଲା । ମୁଲ୍ଲା ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ କରିଛି ଯଥା ଓ୍ୟାହବୀ ଓ ଫରାଇଜୀ ଆନ୍ଦୋଳନ । ଏପରିକି ଏକ ମୁଲ୍ଲାଶ୍ରେଣୀ ବ୍ରିଟିଶ ମାନଙ୍କ ବିରୋଧରେ କଂଗ୍ରେସକୁ ସହାୟତା କରିଛି ଏବଂ ବ୍ରିଟିଶ ମାନଙ୍କ ସାଥିରେ ସହଯୋଗ କରିବା ଲାଗି ମୁସଲିମ୍ ଲିଗ୍‌ର ବିରୋଧ ମଧ୍ୟ କରିଛି ।

ମୋଟ କଥା ହେଲା ଯେ ବ୍ରିଟିଶ ଶାସନ ବା ତା ପୂର୍ବରୁ ମଧ୍ୟ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଏକ ଅବିଶ୍ୱାସର କାନ୍ଥ ଛିଡ଼ା ହୋଇ ଯାଇଥିଲା । ମୁସଲିମ୍ ସମାଜର ଅସରଫ୍ ଅର୍ଥାତ୍ ସମ୍ଭ୍ରାନ୍ତ ସମ୍ପ୍ରଦାୟ ମୁସଲମାନ ମାନଙ୍କର ଓ ତାଠାରୁ ବଳି ନିଜର ସ୍ୱାର୍ଥରକ୍ଷା କରିବା ଉଦ୍ଦେଶ୍ୟରେ କେତେକ ପଦକ୍ଷେପ ଗ୍ରହଣ କଲା, ଯାହା

ଶେଷରେ ପାକିସ୍ଥାନ ଦାବୀରେ ପରିଣତ ହେଲା ଏବଂ ଏହାର ପ୍ରବଳ ସମର୍ଥକମାନଙ୍କର ମାତୃଭୂମି ଉତ୍ତର ପ୍ରଦେଶ ବା ବିହାରରେ ଅର୍ଥାତ୍ ଯାହାକି କେବେ ପାକିସ୍ଥାନର ଅନ୍ତର୍ଭୁକ୍ତ ହୋଇ ପାରି ନଥାନ୍ତା । ଯେତେଦୂର ସମ୍ଭବ ସେମାନେ ନିଜେ ବି ବୁଝି ନଥିଲେ ଯେ, ଏହାର ଫଳ କଣ ହେବ । ଏମାନଙ୍କ ଧାରଣା ଯେ ସୁଦୂରପ୍ରସାରୀ ଦିବାସ୍ୱପ୍ନ ନଥିଲା, ତାର ପ୍ରମାଣ ନେହେରୁ ଲିଆକତ ଚୁକ୍ତି । କିନ୍ତୁ ଦୁଇଟି ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରର ପରସ୍ପର ସହିତ ସମ୍ପର୍କ ଏକ ଭିନ୍ନ ଜିନିଷ । କୌଣସି ସ୍ୱାଧୀନ ରାଷ୍ଟ୍ର ନିଜର ଆଭ୍ୟନ୍ତରୀଣ ବିଷୟରେ ଅନ୍ୟ ଏକ ହସ୍ତକ୍ଷେପ ନ ସହିବା କଥା । ପୁଣି ଆନ୍ତଃରାଷ୍ଟ୍ରୀୟ ସମ୍ପର୍କ ସମାନ ବ୍ୟବହାର ବା ପାରସ୍ପରିକତା ଉପରେ ନିର୍ଭରଶୀଳ । ଯେତେବେଳେ ପଶ୍ଚିମ ପାକିସ୍ଥାନରୁ ସମସ୍ତ ହିନ୍ଦୁ, ଶିଖ୍ ଚାଲି ଆସିଲେ, ଏହି ପାରସ୍ପରିକତାର ଆଧାର ଭାଙ୍ଗିଗଲା । ପାକିସ୍ଥାନରୁ ଅମୁସଲମାନ ଚାଲି ଆସିବାରୁ ପ୍ରଥମ ଅବସ୍ଥାରେ ହୁଏତ ଭାରତରୁ ଯାଇଥିବା ମୁସଲମାନ ମାନେ କିଛି ସୁବିଧା ପାଇଥିଲେ । କିନ୍ତୁ ଅତି ଶୀଘ୍ର ସେଠାର ଲୋକ ତାଙ୍କ ଅଧିକାର ମାଗିଲେ । ଭାରତରୁ ଯାଇଥିବା ଲୋକେ ମୋହାଜିର ବା ବାହାରର ଲୋକ ହୋଇ ରହିଗଲେ । ଭାରତରେ ଥିବା ମୁସଲମାନ ଆଉ ଏକ ସମସ୍ୟାର ସମ୍ମୁଖୀନ ହେଲେ । ସେ ସମାଜରେ ହଠାତ୍ ନେତାଙ୍କର ଅଭାବ ହୋଇଗଲା । ଅନେକ କାରଣରୁ ମୁସଲମାନ ଜନସାଧାରଣଙ୍କୁ କଂଗ୍ରେସରେ ଥିବା ମୁସଲମାନ ନେତାଙ୍କୁ ଅବିଶ୍ୱାସ କରିବାକୁ ଶିଖେଇ ଦିଆ ହୋଇଥିଲା । ଅଧିକାଂଶ ଶିକ୍ଷିତ ପିଲା ପାକିସ୍ଥାନ ଚାଲିଗଲେ । ଏଣୁ ବିଚରା ମୁସଲମାନ ଚାଷୀ ମଜୁରିଆ କାହା ପାଖକୁ ଯିବ, କାହାକୁ ପଚାରିବ ? ମୁଲ୍ଲା କିନ୍ତୁ ଏଇଠି ଥିଲା । ଫଳତଃ ମୁଲ୍ଲା ହିଁ ନେତୃତ୍ୱ ଦେଲା ଏବଂ ତାର ଫଳ ସ୍ପଷ୍ଟ ।

ମୋଟ କଥା ହେଲା ଯେ, ପାକିସ୍ଥାନର ସୃଷ୍ଟି ଭାରତୀୟ ମୁସଲମାନଙ୍କ ପକ୍ଷରେ ଏକ ବିପର୍ଯ୍ୟୟ, ଏକ ରାଜନୈତିକ ପରାଜୟ । ପରାଜୟ ଗୋଟିଏ ଜାତି ବା ଗୋଟିଏ ସମ୍ପ୍ରଦାୟ ପକ୍ଷରେ ଏପରି କିଛି ନୂତନ ଘଟଣା ନୁହେଁ । ସବୁ ଜାତିର ଇତିହାସରେ ପରାଜୟ ରହିଛି । ଏ ଅବସ୍ଥାରେ କର୍ତ୍ତବ୍ୟ ହେଲା ନିଜର ନିଜତ୍ୱ ବଜାୟ ରଖି ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନେଇ, ଉଜ୍ଜ୍ୱଳତର ଭବିଷ୍ୟତ ଲାଗି ପ୍ରସ୍ତୁତରେ ଲାଗି ପଡ଼ିବା । କେବଳ ନିଜପ୍ରତି ହୋଇଥିବା ଅନ୍ୟାୟର ତାଲିକା ବାଢିଲେ କୌଣସି ଲାଭ ହେବ ନାହିଁ । ଭାରତୀୟ ମୁସଲମାନମାନଙ୍କୁ ନିଜର ଭାରତୀୟତ୍ୱ ଓ ମୁସଲମାନତ୍ୱ ବଜାୟ ରଖି ଆଧୁନିକ ଜଗତ ସହିତ ସାଲିସ କରିବାକୁ ପଡ଼ିବ । ଏଥିଲାଗି କି ପଦକ୍ଷେପ ଆବଶ୍ୟକ, ସେ ବିଷୟରେ ମୁସଲିମ ସମାଜରେ ଗଭୀର ଚିନ୍ତା ଏବଂ ଅବାଧ ଆଲୋଚନା ଆବଶ୍ୟକ । ଏ ସମସ୍ୟାର ସମାଧାନ ବାହାରୁ ଆସି ପାରିବ ନାହିଁ । କିନ୍ତୁ ଯଦି ଉଚିତ ପଦକ୍ଷେପ ନ ନିଆଯାଏ, ତା ହେଲେ ଏ ସାମୂହିକ କୁଣ୍ଠା ଓ

ବ୍ୟର୍ଥତାର ଭାବନା ନାଗଫାଶ ପରି ବାନ୍ଧି ପକାଇବ ଏବଂ ତାହାର ଫଳ କେବଳ ମୁସଲମାନ ସମ୍ପ୍ରଦାୟ ପର୍ଯ୍ୟନ୍ତ ସୀମିତ ରହିବ ନାହିଁ ।

ମୁସଲମାନ ସମ୍ପ୍ରଦାୟ କଣ କରିବ ତାର ଉତ୍ତର କେବଳ ମୁସଲମାନ ସମ୍ପ୍ରଦାୟ ମଧ୍ୟରୁ ଆସିବାକୁ ବାଧ୍ୟ । ତେବେ ଇତିହାସ ଉପରେ ଦୃଷ୍ଟି ଦେଲେ କେତେକ ଉଲ୍ଲେଖଯୋଗ୍ୟ ତଥ୍ୟ ଦେଖାଯାଏ । ଗୋଟିଏ ଜାତିର ଦୁର୍ଦ୍ଦିନରେ ଧର୍ମପ୍ରତି ଅହେତୁକ ଆକର୍ଷଣ ସ୍ୱାଭାବିକ । ମୁସଲମାନ ଛଡ଼ା ଅନ୍ୟ ଧର୍ମାବଲମ୍ବୀମାନେ ମଧ୍ୟ ଏହା ହିଁ କରିଛନ୍ତି । ଇହୁଦୀ ଜାତିକୁ ରୋମ ସରକାର ଜେରୁଜେଲମ୍‌ରୁ ବାହାର୍ କରି ଦେବାପରେ ସେମାନେ ସମସ୍ତେ ୟୁରୋପ ଓ ପଶ୍ଚିମ ଏସିଆରେ ଖେଳେଇ ହୋଇ ପଡ଼ିଲେ । ଏହାକୁ DISPORA କହନ୍ତି । ଏ ସମୟରେ ଇହୁଦୀ ଧର୍ମ ଏକ ଅତି ରକ୍ଷଣଶୀଳ ରୂପ ଧାରଣ କଲା । ମୁସଲମାନଙ୍କଠାରୁ ପରାଜୟ ପରେ ହିନ୍ଦୁଧର୍ମରେ ମଧ୍ୟ ଏହା ଦେଖା ଯାଇଥିଲା । ଏପରିକି ବର୍ତ୍ତିଷ୍ଣୁ ବିଜୟନଗର ସାମ୍ରାଜ୍ୟଠାରୁ ଓଡ଼ିଶା ଗଜପତିଙ୍କ ପରାଜୟ ଓଡ଼ିଶାରେ ବୈଷ୍ଣବ ବନ୍ୟା ଲାଗି ଅନେକାଂଶରେ ଦାୟୀ । ଭାରତରେ ମୁସ୍‌ଲିମ୍ ଧାର୍ମିକ ଆନ୍ଦୋଳନ ଶାହ ଓ୍ୱାଲିଉଲ୍ଲାଙ୍କଠାରୁ ଆରମ୍ଭ । ଏହାର ସମୟ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗ ଅର୍ଥାତ୍ ମୋଗଲ ସାମ୍ରାଜ୍ୟର ପତନର ଆରମ୍ଭ ସମୟ । ଏହାର ସୁଫଳ ବିଷୟରେ ପ୍ରଥମେ କହି ରଖିବା ଦରକାର । ମୋଗଲ ସାମ୍ରାଜ୍ୟର ରାଜନୈତିକ ପତନ ସହିତ ଦେଖା ଦେଇଥିଲା ଘୋର ନୈତିକ ପତନ । ଶାହ ଓ୍ୱାଲିଉଲ୍ଲଙ୍କର ଆନ୍ଦୋଳନ ମୁସ୍‌ଲମାନ୍ ସମାଜରେ ବ୍ୟକ୍ତିଗତ ନୈତିକତାକୁ ବହୁ ପରିମାଣରେ ରକ୍ଷା କରି ପାରିଥିଲା । କିନ୍ତୁ ଏହାର ବୃହତ୍ତର ରାଜନୈତିକ ପରିପ୍ରେକ୍ଷୀରେ କୌଣସି ଉଲ୍ଲେଖଯୋଗ୍ୟ ପ୍ରଭାବ ହୋଇ ନଥିଲା । ଏହା ଦ୍ୱାରା ବିଗତ କାଳକୁ ଜାବୁଡ଼ି ଧରିବାର ପ୍ରବୃତ୍ତିକୁ ବଳ ମିଳିଲା । ବର୍ତ୍ତମାନର ସମସ୍ତ ସମସ୍ୟା ଓ ପ୍ରଶ୍ନର ଉତ୍ତର ବିଗତକାଳ ଦେଇ ପାରିବ ନାହିଁ । ଏଥିଲାଗି ଇତିହାସକୁ କେବଳ ଏକ ମାର୍ଗଦର୍ଶକ ବୋଲି ଗ୍ରହଣ କରିବାକୁ ହେବ ।



# ଗୁରୁ ଶିଷ୍ୟ

ଓଡ଼ିଶାରୁ ଯେଉଁମାନଙ୍କର ଦିଲ୍ଲୀ ସହିତ ଯିବା ଆସିବା ଅଛି, ସେମାନେ ନିଶ୍ଚୟ 'ହଜରତ ନିଜାମୁଦ୍ଦିନ' ନାମଟା ଶୁଣିଛନ୍ତି । କାରଣ ଏହି ଷ୍ଟେସନରେ ଉତ୍କଳ-କଳିଙ୍ଗ ଏକ୍‌ସପ୍ରେସ ପହଞ୍ଚେ । କିନ୍ତୁ ଯାହାଙ୍କ ନାମରେ ଏ ଷ୍ଟେସନ, ତାଙ୍କ ବିଷୟରେ ସାଧାରଣତଃ କୌଣସି କୌତୂହଳ ଦେଖାଯାଏ ନାହିଁ । ତେବେ ସାମାନ୍ୟ ଲକ୍ଷ୍ୟକଲେ ଦେଖିବେ ଯେ ଏ ନାମଟା ଟିକିଏ ବିଚିତ୍ର । ସାଧାରଣତଃ କୌଣସି ବ୍ୟକ୍ତିଙ୍କ ନାମରେ ସ୍ଥାନର ନାମ ହେଲେ ସେଥିରେ ପୁର, ନଗର ବା ବାଦ ଲାଗିଥାଏ; ଯଥା—ରାମପୁର; ଟାଟାନଗର, ହାଇଦ୍ରାବାଦ ଇତ୍ୟାଦି । କିନ୍ତୁ ଖାଲି ଲୋକର ନାମକୁ ନେଇ ସ୍ଥାନର ନାମ ହୁଏ ନାହିଁ । ଅବଶ୍ୟ ଆମେରିକାର ୱାଶିଂଟନ ଏକ ବ୍ୟତିକ୍ରମ ।

ହଜରତ ଶବ୍ଦର ଅର୍ଥ ପୂରାପୂରି ଓଡ଼ିଆରେ ପ୍ରକାଶ କରିବା କଷ୍ଟ; ତେବେ 'ମହାତ୍ମା' ଏହାର ପାଖାପାଖି । ପ୍ରକୃତରେ ଏହାର ନାମ 'ବସ୍ତି ହଜରତ ନିଜାମୁଦ୍ଦିନ' । ପ୍ରାଚୀନ ନାମ ଥିଲା ଗିୟାସ୍‌ପୁର । କାଳକ୍ରମେ ଏହି ସ୍ଥାନର ନାମ ଏଠାରେ ରହୁଥିବା ସନ୍ଥ ନିଜାମୁଦ୍ଦିନଙ୍କ ସହିତ ଯୋଡ଼ି ହୋଇଗଲା ଓ ଲୋକେ ପୂର୍ବନାମ ଭୁଲିଯାଇ ଏହାକୁ ହଜରତ ନିଜାମୁଦ୍ଦିନ ବା କେବଳ ନିଜାମୁଦ୍ଦିନ ବୋଲି ଡ଼ାକିବାକୁ ଲାଗିଲେ ।

ହଜରତ ନିଜାମୁଦ୍ଦିନ ଜଣେ ସୁଫୀ ସନ୍ଥ । ଆଜମେରରେ ସ୍ଥାପିତ ମଇନୁଦ୍ଦିନ ଚିସ୍ତିଙ୍କର ପରମ୍ପରା ବା ସିଲସିଲାର ସେ ହେଲେ ମହାନ୍ ଉତ୍ତର ସାଧକ । ଏଠାରେ ସୁଫୀ ମତବାଦ ସମ୍ବନ୍ଧରେ ଟିକିଏ ସୂଚନା ଦେବା ଆବଶ୍ୟକ । ସୁଫୀ ମୁସଲମାନ । କିନ୍ତୁ ସାଧାରଣତଃ ମୌଲନା ଓ ଉଲେମାଙ୍କର ଗତାନୁଗତିକ ଧର୍ମାଚରଣ ଓ କର୍ମକାଣ୍ଡକୁ ଉପେକ୍ଷା କରେ । ତା'ର ବିଶ୍ୱାସ ଯେ, ଭଗବାନଙ୍କୁ ଉପଲବ୍ଧି କରିବାକୁ ହେଲେ ତାଙ୍କ ସହିତ ଏକ ସିଧାସଳଖ ସମ୍ପର୍କ ସ୍ଥାପନା କରିବାକୁ ହେବ । ତାହା ଗଭୀର ଆନ୍ତରିକ ଆବେଗ ଦ୍ୱାରା ହିଁ ସମ୍ଭବ । କର୍ମକାଣ୍ଡ ସର୍ବସ୍ୱ ଧର୍ମାଚରଣ ଏଥିଲାଗି ଅବାନ୍ତର ଏବଂ ସ୍ଥଳବିଶେଷରେ ବିଘ୍ନ ମାତ୍ର । ଏଣୁ ପ୍ରଥମ ସୁଫୀ ମନସୁର

ଘୋଷଣା କରିଥିଲେ—'ଅନଲହକ୍' ଅର୍ଥାତ ମୁଁ ସତ୍ୟ । ଏଥିଲାଗି ସେ ପ୍ରାଣଦଣ୍ଡ ପାଇଥିଲେ । କେବଳ ମନସୁର ନୁହନ୍ତି, ଅନେକ ସୂଫୀ ସାଧକ ରକ୍ଷଣଶୀଳ ମୌଲବୀ ସମ୍ପ୍ରଦାୟର କ୍ରୋଧର ଲକ୍ଷ୍ୟ ହୋଇଛନ୍ତି ଓ ଅନେକ ମହାନ ସନ୍ଥ ପ୍ରାଣଦଣ୍ଡ ପାଇଛନ୍ତି ।

ଏଠି ସୂଫୀ ଦର୍ଶନର ଆଲୋଚନା ପ୍ରାସଙ୍ଗିକ ନୁହେଁ । ତେବେ ଗୋଟିଏ ଜିନିଷ ଲକ୍ଷ୍ୟ କରିବାର କଥା, ସାଧାରଣତଃ ମୁସଲମାନ ଧର୍ମଯାଜକଗଣ ସୁଲତାନ-ମାନଙ୍କର ବୃତ୍ତିଭୋଗୀ ଥିଲେ ଓ କାଜି, ପେଶଇମାମ ଇତ୍ୟାଦି ଚାକିରି କେବଳ ସେହିମାନେହିଁ କରି ପାରୁଥିଲେ । କିନ୍ତୁ ସୂଫୀମାନେ ଶାସନତନ୍ତ୍ର ଠାରୁ ଯେତେ ଦୂରରେ ପାରନ୍ତି, ରହୁଥିଲେ । ଏଣୁ ଜନତା ସାଙ୍ଗରେ ସେମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ଜନତାର ନିଃସ୍ୱାର୍ଥ ସେବାରେ ଜୀବନ କଟାଇ ଦେଇଛନ୍ତି ।

ହଜରତ ନିଜାମୁଦ୍ଦିନ ବୋଧହୁଏ ଭାରତର ସୂଫୀ ସନ୍ଥଙ୍କ ମଧ୍ୟରେ ସବୁଠାରୁ ପ୍ରସିଦ୍ଧ । ସେ ଅାଲ୍ଲାଉଦ୍ଦିନ ଖିଲଜୀଙ୍କଠାରୁ ମହମ୍ମଦ ତୋଗଲକଙ୍କ ରାଜତ୍ୱ ପର୍ଯ୍ୟନ୍ତ ବଞ୍ଚିଥିଲେ । ସମୟଟା ଖୁବ ଲମ୍ବା ନୁହେଁ । କାରଣ ପଠାଣ ସୁଲତାନମାନଙ୍କର ରାଜତ୍ୱ ସାଧାରଣତଃ ଅଳ୍ପକାଳ ସ୍ଥାୟୀ ହେଉଥିଲା । ସେ ଦିଲ୍ଲୀରେ, କିନ୍ତୁ ରାଜଧାନୀଠାରୁ ଦୂରରେ ଯମୁନା କୂଳରେ ଗୋଟିଏ ଗାଁକୁ ନିଜ ନିବାସ ଲାଗି ବାଛିଥିଲେ । ତାଙ୍କ ଦ୍ୱାର ସର୍ବଦା ଦୁଃଖୀ ଲାଗି ଉନ୍ମୁକ୍ତ ଥିଲା । ତାଙ୍କ ବିଷୟରେ ଏତେ କାହାଣୀ ଗଢି ଉଠିଛି ଯେ, କେଉଁଟା ଠିକ୍ କେଉଁଟା ଭୁଲ ଏବଂ କେଉଁଥିରେ କେତେ ଅତିରଞ୍ଜନ ଅଛି, ତାହା ବର୍ତ୍ତମାନ ସ୍ଥିର କରିବା ପ୍ରାୟ ଅସମ୍ଭବ । କିନ୍ତୁ ତା ମଧ୍ୟରୁ ଗୋଟିଏ କାହାଣୀ ଏତେ ଚିତ୍ତାକର୍ଷକ ଯେ, ତାହା ଏଠି ଉଲ୍ଲେଖ ନ କଲେ ଅନ୍ୟାୟ ହେବ । ଏହା ସମ୍ପୂର୍ଣ୍ଣ ପ୍ରମାଣିକ ନ ହେଲେ ମଧ୍ୟ ପ୍ରାୟ ସର୍ବସମ୍ମତିକ୍ରମେ ଗୃହୀତ ।

ନିଜାମୁଦ୍ଦିନ ଯେ ସୁଲତାନ ଓ ପାର୍ଥିବ କ୍ଷମତାକୁ ତାଚ୍ଛଲ୍ୟ କରୁଥିଲେ, ତାହା ଆଗରୁ କୁହାଯାଇଛି । ଗିୟାସୁଦ୍ଦିନ ତୋଗଲକଙ୍କର ସେ କେତେକ କାରଣରୁ ଚକ୍ଷୁଶୂଳ ହୋଇଥିଲେ । କିନ୍ତୁ ନିଜାମୁଦ୍ଦିନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବା ଆଗରୁ ଗିୟାସୁଦ୍ଦିନଙ୍କୁ ଏକ ବିଦ୍ରୋହ ଦମନ କରିବାକୁ ବଙ୍ଗଳା ଯିବାକୁ ପଡ଼ିଲା । ବଙ୍ଗଳାର କାମ ସାରି ସୁଲତାନ ଦିଲ୍ଲୀ ଫେରିଲେ । ନିଜାମୁଦ୍ଦିନଙ୍କର ଶିଷ୍ୟମାନେ ବାରମ୍ବାର ବୁଝାଇଲେ ଯେ, ବାଦଶାହ ଫେରିଲେ ଅବସ୍ଥା ଭଲ ହେବ ନାହିଁ । ଏଣୁ କିଛିଦିନ ସେ ଦିଲ୍ଲୀ ଛାଡ଼ି ଚାଲି ଯିବାହିଁ ଶ୍ରେୟସ୍କର । ନିଜାମୁଦ୍ଦିନ କେବଳ କହନ୍ତି— 'ଦିଲ୍ଲୀ ଦୂର ଅସ୍ତ' ଅର୍ଥାତ ଦିଲ୍ଲୀ ଦୂର ଅଛି । ବାଦଶାହ ମାତ୍ର ଦିଲ୍ଲୀଠାରୁ ଦୁଇ ଦିନର

ବାଟରେ; ଶିଷ୍ୟମାନେ ବୁଝାଇଲେ—ଏବେ ବି ସମୟ ଅଛି । ଯଃ ପଲାୟତି ସ ଜୀବତି । କିନ୍ତୁ ନିଜାମୁଦ୍ଦିନ କେବଳ କହିଲେ —ଦିଲ୍ଲୀ ହନୁଜ ଦୂର ଅସ୍ତ । ଅର୍ଥାତ୍ ଦିଲ୍ଲୀ ଏବେ ମଧ୍ୟ ଦୂରରେ ।

ଦିଲ୍ଲୀରୁ ପ୍ରାୟ ଦଶକୋଶ ବାଟରେ ବାଦଶାହଙ୍କୁ ସମ୍ବର୍ଦ୍ଧନା ଜଣାଇବା ବ୍ୟବସ୍ଥା ହୋଇଥିଲା । କାଠର ଏକ ବିରାଟ ମଞ୍ଚା ତିଆରି କରାଯାଇଥିଲା । ବାଦଶାହ ତା' ଉପରୁ ସେନାର କୁଚକଓ୍ୱାଦ (ପରେଡ଼) ପରିଦର୍ଶନ କରିବାର କଥା । ମାତ୍ର ସେ ମଞ୍ଚା ଭୁଷୁଡ଼ି ପଡ଼ିଲା ଓ ସେଥିରେ ବାଦଶାହ ପ୍ରାଣ ହରାଇଲେ । ଏହା ପଛରେ ତାଙ୍କ ପୁତ୍ର ମହମ୍ମଦ ତୋଗଲକଙ୍କର ହାତ ଥିବାର ସନ୍ଦେହ ହୁଏ । ତେବେ ଏହି ସନ୍ଦେହ ମହମ୍ମଦ ତୋଗଲକଙ୍କର ଅଶୁମାତ୍ର ଅସୁବିଧା ହୋଇ ନଥିଲା । କାରଣ ସେ ସମୟରେ ଲୋକ ଏପରି ଘଟଣା ତ ନିତ୍ୟ ନୈମିତ୍ତିକ ବ୍ୟାପାର ଥିଲା ।

ହଜରତ ନିଜାମୁଦ୍ଦିନ କୌଣସି ମତ ପ୍ରଚ୍ଚର କରି ନଥିଲେ ବା ତାଙ୍କୁ କେହି ଦାର୍ଶନିକ ବୋଲି ମଧ୍ୟ କହନ୍ତି ନାହିଁ । ସେ ଥିଲେ ପୀର ବା ଗୁରୁ । ତାଙ୍କର ବିଶେଷତ୍ୱ ହେଲା—ଧର୍ମକୁ ଜନତା ପାଖକୁ ନେବା ଏବଂ ତାହା ପ୍ରଧାନତଃ ସେବା ମାଧ୍ୟମରେ । ନିଜକୁ ସେ ଆରବୀ ଫାରସୀର କଠିନ ନାଗପାଶରୁ ମୁକ୍ତ କରି ହିନ୍ଦୀକୁ ଉତ୍ସାହିତ କରିଥିଲେ । ସେ ମୁଲ୍ଲାମାନଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ସଙ୍ଗୀତକୁ ଧାର୍ମିକ ଆସ୍ଥରରେ ସ୍ଥାନ ଦେଇଥିଲେ । ଜିକର ଅର୍ଥାତ ନାମକୀର୍ତ୍ତନ ଏବଂ ସମା ଅର୍ଥାତ ଭଜନ ଗାନକୁ ସୁଫୀଗଣ ନିଜର ଆସ୍ଥରର ଅନନ୍ୟ ଅଙ୍ଗ ରୂପେ ଗ୍ରହଣ କରିନେଲେ । ଏହି ଭଜନର ରୂପ ହେଲା କଓ୍ୱାଲି । ଏପର୍ଯ୍ୟନ୍ତ ନିଜାମୁଦ୍ଦିନଙ୍କ କବର ପାଖରେ ସବୁବେଳେ କଓ୍ୱାଲି ଗୁଲୁଥାଏ ଏବଂ ତାହା କ୍ୱଚିତ କଠିନ ଉର୍ଦ୍ଦୁରେ । ସାଧାରଣତଃ ଏହି ଭାଷା ସରଳ ଉର୍ଦ୍ଦୁ ଓ ବ୍ରଜବୋଲିର ସମନ୍ୱୟ ।

ନିଜାମୁଦ୍ଦିନ ହେଲେ ଗୁରୁ ଓ ସାଧକ । ତାଙ୍କର ସଫଳତା ତାଙ୍କ ଶିଷ୍ୟମାନଙ୍କ ଭିତରେ । ସେ ଅନେକ ଦୀପ ଜାଳି ଦେଇଛନ୍ତି । କିନ୍ତୁ ତା ମଧ୍ୟରୁ ଗୋଟିଏ ଏପରି ଯେ, ତାକୁ ଦୀପ କହିବା ହିଁ ଅନ୍ୟାୟ । ସେ ସୂର୍ଯ୍ୟ ପରି ଭାସ୍ୱର । ଏ ହେଲେ ଅମୀର ଖୁସ୍‌ରୋ । ସେ ଏକାକୀ ଭାରତୀୟ ଓ ପାରସିକ ସଂସ୍କୃତିର ସମନ୍ୱୟ କରିବାର ଚେଷ୍ଟା କରିଥିଲେ ଏବଂ ବହୁ ପରିମାଣରେ ସଫଳ ହୋଇଥିଲେ ମଧ୍ୟ । ସେ ଥିଲେ ଏକାଧାରରେ କବି ଓ ସଙ୍ଗୀତଜ୍ଞ । ଖାଲି ସେତିକି ନୁହେଁ; ଆରବୀ, ପାରସୀ, ତୁର୍କୀ ଓ ହିନ୍ଦୀ—ସବୁଥିରେ ସେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିଯାଇଛନ୍ତି । ତାଙ୍କୁ ସିତାର ଓ ତବଲାର ସୃଷ୍ଟିକର୍ତ୍ତା ବୋଲି ମଧ୍ୟ କୁହାଯାଏ । ତାଙ୍କ ମାତୃଭାଷା କ'ଣ ଥିଲା, ତାହା ବିବାଦାସ୍ପଦ । ତେବେ ସେ ହିନ୍ଦୀକୁ ଗ୍ରହଣ କରିଥିଲେ । ସେଥିରେ ସେ ଏକ ଯୁଗପ୍ରବର୍ତ୍ତକ

ବୋଲି ସର୍ବବାଦୀସମ୍ମତ । ସେ ପ୍ରଥମେ ଫାରସୀରେ ଲେଖୁଥିଲେ । ବୋଧହୁଏ ହଜରତ ନିଜାମୁଦ୍ଦିନ ହିଁ ତାଙ୍କୁ ଜନସାଧାରଣଙ୍କ ଭାଷାରେ ଲେଖିବାକୁ ଉତ୍ସାହିତ କରିଥିଲେ । କେବଳ ନିଜାମୁଦ୍ଦିନ ନୁହନ୍ତି, ଭାରତର ସର୍ବତ୍ର ଏହି ଭକ୍ତ ସାଧକମାନେ ଲୋକଭାଷାକୁ ତା'ର ଉପଯୁକ୍ତ ସ୍ଥାନ ଦିଆଇଛନ୍ତି । ଭକ୍ତ ନାମଦେବଙ୍କୁ ଯେତେବେଳେ ଚେରାଗଲ୍ଲି ସେ ସେ କାହିଁକି ସାଧୁଭାଷା ସଂସ୍କୃତରେ ଲେଖୁ ନାହାନ୍ତି, ନାମଦେବ ପାଲଟା ପ୍ରଶ୍ନ କଲେ, "ତା ହେଲେ ମରାଠୀ କ'ଣ ଚୋରଙ୍କ ଭାଷା ?" ଅମୀର ଖୁସ୍ରୋ କଥିତ ହିନ୍ଦୀରେ ଏପରି ସରଳ କାବ୍ୟ ସୃଷ୍ଟି କଲେ, ଯାହାର ରସାଳତାର ପଟାନ୍ତର ନାହିଁ । ଏହା ହିନ୍ଦୀର ଉତ୍ତରସାଧକମାନଙ୍କ ପକ୍ଷରେ ଏକ ମାନଦଣ୍ଡ ସ୍ୱରୂପ ରହିଲା । ଏହାଙ୍କ ପରେ ହିନ୍ଦୀରେ ଲୋକଭାଷାରେ ଅନେକ କାବ୍ୟ ରଚିତ ହେଲା ।

ଓଡିଶା ଅପେକ୍ଷା ଉତ୍ତର ଭାରତରେ ବର୍ଷା ଟିକିଏ ଡେରିରେ ହୁଏ । ଆମ ଆଡ଼େ ରଜ ପରି ଉତ୍ତର ଭାରତରେ ଶ୍ରାବଣ ବା ସାଓ୍ୱନ । ଏ ସମୟରେ ଝିଅମାନେ ବାପଘରକୁ ଯାଆନ୍ତି । ଆମ ଆଡ଼େ ରଜଦୋଳି ଭଳି ଉତ୍ତର ଭାରତରେ 'ସାଓ୍ୱନ କା ଝୁଲା' । ଖୁସ୍ରୋଙ୍କର ଏକ ହିନ୍ଦୀ କବିତାର ଝିଅ ମା'କୁ ଅଳି କରୁଛି—ଶ୍ରାବଣ ଆସିଲାଣି । ତାକୁ ଆଣିବା ପାଇଁ ବାପାଙ୍କୁ ବା ଭାଇକୁ ବା ମାମୁଁଙ୍କୁ ପଠାଇବାକୁ । ମା'ର କିନ୍ତୁ ଅନେକ ଅସୁବିଧା । ଏଣୁ ଝିଅକୁ ଭୁଲାଇବାକୁ ଚେଷ୍ଟା କରୁଛି । ବାପା ବୃଦ୍ଧ, ଭାଇ ପିଲା; ପଠାଇବା ଉଚିତ ନୁହେଁ । ମାମୁଁ ଛତରା ହୋଇ ଗଲାଣି । କାହା କଥା ଶୁଣୁ ନାହିଁ । ଜନସାଧାରଣଙ୍କର ସୁଖଦୁଃଖ, ଆଶା ଆକାଙ୍କ୍ଷାକୁ ନେଇ କାବ୍ୟ ରଚନା ସେ ସମୟରେ ଏକ ବୈପ୍ଳବିକ ପ୍ରଚେଷ୍ଟା । ଖୁସ୍ରୋ ସାବ୍ୟସ୍ତ କରିଦେଇ ଗଲେ ଯେ, ନାୟକ ନାୟିକା ଜନସାଧାରଣଙ୍କ ମଧ୍ୟରୁ ହୋଇପାରନ୍ତି । ରାଜପୁତ୍ର—ରାଜକନ୍ୟା ହେବା ଜରୁରୀ ନୁହେଁ । ତାଙ୍କର କବିତା, ବିଶେଷକରି ସେ ଲେଖିଥିବା ପ୍ରହେଳିକା ଏବେ ମଧ୍ୟ ଲୋକମୁଖରେ ପ୍ରଚଳିତ । ଏଣେ ଫାର୍ସୀରେ ତାଙ୍କ କାବ୍ୟ ଏତେ ଉଚ୍ଚ ଦରର ଯେ ତାଙ୍କୁ ଇରାନରେ 'ଭାରତୀୟ କୋକିଳ' ବୋଲି କୁହାଯାଏ । କିନ୍ତୁ ଲେଖକ କେବଳ ହିନ୍ଦୀ ବିଷୟରେ ହିଁ କହି ପାରିବ । ତାଙ୍କ କବିତାର ରସ ଆସ୍ୱାଦନ କରିବା ପାଇଁ ତାଙ୍କର ରଚିତ ଏକ ଦୋହା ତଳେ ଦିଆଯାଉଛି; ଅବଧାନ ହେବ ।

ଖୁସ୍ରୋ ରୈନ ସୁହାଗକି
ଜାଗୋ ପିକେ ସଙ୍ଗ୍,
ତନ୍ ଆପନୋ ମନ ପିଉକା
ଦେଉ ଭଯେ। ଇକ୍ ରଙ୍ଗ ।

( ଖୁସରୋ—ବଲ୍ଲଭ ସହିତ ପ୍ରର୍ତି ଜାଗରଣରେ କଟିଲା । ଦେହ ମୋର, କିନ୍ତୁ ମନତ ପ୍ରିୟର । ଦେହ ଓ ମନ ଉଭୟ ଏକ ରଙ୍ଗ ହୋଇଗଲା ) । ସେ ହିନ୍ଦୀ ଓ ଫାରସୀ ମିଶାଇ କେତେକ ଗଜଲ ମଧ୍ୟ ଲେଖିଛନ୍ତି । ଏହାକୁ 'ଦୋସୁଖନା' କହନ୍ତି । ଏଥିରେ ଗୋଟିଏ ପଦ ଫାରସୀ ଓ ଆର ପଦ ବ୍ରଜଭାଷା ହିନ୍ଦୀ । ସାଧାରଣତଃ ପୁରୁଷ ଫାରସୀ ଓ ସ୍ତ୍ରୀ ହିନ୍ଦୀ କହୁଛନ୍ତି । ତଳେ ଟିକିଏ ନମୁନା ଦିଆଗଲା ।

ଫାରସୀ

ଶବାନେ ହିଜରାଁ ଦରାଜ ଚୁଁ ଜୁଲଫ
ବ୍ରୋଜେ ଓ୍ୱସଲତ ଚୁ ଉମ୍ର କୋତାହ ।

( ବିରହର ରାତ ତୋର କେଶରାଶି ପରି ଦୀର୍ଘ ଓ ମିଳନର ଦିନ ମୋର ଆୟୁଠାରୁ ମଧ୍ୟ କ୍ଷୁଦ୍ର—ଅର୍ଥାତ ମିଳନ ଯେତେ ଦୀର୍ଘ ହେଲେ ମଧ୍ୟ ମୁହୂର୍ତ୍ତ ପରି ପ୍ରତୀତ ହୁଏ । )

ହିନ୍ଦୀ

ସଖି ପିୟାକୋ ଯୋ ମୈଁ ନଦେଖୁଁ
କୈସେ କାଟୁଁ ଅନ୍ଧେର ରତିୟାଁ ।

( ସଖି, ପ୍ରିୟ ବିନା ତ ସମସ୍ତ ଅନ୍ଧକାର ରାତି । ତାହା ପ୍ରିୟଦର୍ଶନ ବିନା କଟିବ କିପରି ? )

ଏଥିରେ ଫାରସୀର ଆଲଙ୍କାରିକତା ଓ ହିନ୍ଦୀର ସ୍ୱତଃସ୍ଫୂର୍ତ୍ତି ସାରଲ୍ୟ ଲକ୍ଷ୍ୟ କରନ୍ତୁ ।

ଖୁସରୋଙ୍କ ପ୍ରତିଭା ଅତି ବଳଶାଳୀ ଓ ବେଗବାନ । ସେ ହିନ୍ଦୀ ଛଡା ଫାରସୀ, ଆରବୀ ଓ ତୁର୍କୀରେ ମଧ୍ୟ ଅନେକ ରଚନା କରିଯାଇଛନ୍ତି । ତା' ସାଥିରେ ସଙ୍ଗୀତ । ହିନ୍ଦୁସ୍ଥାନୀ ସଙ୍ଗୀତ ପଦ୍ଧତିକୁ ତାଙ୍କର ଦାନ ଅବିସ୍ମରଣୀୟ । ଖିୟାଲ ଗାୟକର ସେ ଜନକ ବୋଲି କୁହାଯାଏ । ଇରାନୀ ସଙ୍ଗୀତ ସାଥିରେ ଭାରତୀୟ ସଙ୍ଗୀତକୁ ସଂଯୋଗ କରି ସେ ଅନେକ ନୂତନ ରାଗ ରାଗିଣୀ ମଧ୍ୟ ସୃଷ୍ଟି କରିଥିଲେ । ତେବେ ତାଙ୍କର ପ୍ରଧାନ କୃତିତ୍ୱ ହେଲା କଓ୍ୱାଲୀ । ଆଜିକାଲି ଅବଶ୍ୟ ଯେଉଁ କଓ୍ୱାଲୀ ସିନେମାରେ ଦେଖିବାକୁ ମିଳୁଛି ତା ନୁହେଁ । କଓ୍ୱାଲୀ ପ୍ରକୃତରେ ସଂକୀର୍ତ୍ତନ ଭଳି ।

ଏହି ନର୍ତ୍ତଶଣୀ ଧନେ ହଠାତ୍ ବନ୍ଦ ହୋଇଗଲା । ବୃଦ୍ଧ ହଜରତ ନଜାମୁଦ୍ଦିନ ୧୩୨୫ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗବାସୀ ହେଲେ । ଅମୀର ଖୁସରୋ ନଥିଲେ । ଆସି ଦେଖିଲେ, ଗୁରୁ ନାହାନ୍ତି । କେବଳ ଗୋଟିଏ ଦୋହା କହିଲେ—

ଗୋସ୍ୱା ସୋଏ ଶେଯ ପର
ମୁଖ ପର ଡ଼ାରେ କେଶ ।
ଚଲ୍ ଖୁସ୍‌ରୋ ଘର ଆପ୍‌ନୋ
ରୈନ୍ ଭଇ ଚହୁଁଦଶ ।
( ରୈନ = ରାତ । ଚହୁଦଶ = ଚ୍ୱରଆଡ଼େ )

ତା'ପରେ ସେ କିଛି ରଚନା କରି ନାହାନ୍ତି । ବର୍ଷକ ଭିତରେ ସେ ମଧ୍ୟ ଗୁରୁଙ୍କ ପଛେ ପଛେ ନିଜ ଘରକୁ ଗଲେ । ହଜରତ ନଜାମୁଦ୍ଦିନ ଓ ଅମୀର ଖୁସରୋଙ୍କ ସମାଧି ପାଖାପାଖି ଗୋଟିଏ ହତା ଭିତରେ । ସବୁବେଳେ ଶ୍ରଦ୍ଧାଳୁମାନଙ୍କ ପ୍ରଦତ୍ତ ଫୁଲରେ ଭରପୂର ଏବଂ କଓ୍ୱାଲି ସଙ୍ଗୀତ ମୁଖରିତ । ଏହାପରେ ଯଦି ଇଚ୍ଛା ଥାଏ ତେବେ ଆପଣ ସମସାମୟିକ ସୁଲତାନମାନଙ୍କ କବର ଦେଖିବାକୁ ତୋଗଲକାବାଦ ଯାଇ ପାରନ୍ତି । ସେଠି ଭିଡ଼ ନାହିଁ, ଫୁଲ ନାହିଁ, କଓ୍ୱାଲି-ନାହିଁ । କେବଳ ମୃତ୍ୟୁର ନୀରବତା ।



# ଗଜଲ୍

ଆଜିକାଲି ସାଧାରଣ ଶ୍ରୋତାମାନଙ୍କ ଭିତରେ, ଏପରିକି ଯେଉଁମାନେ ଆଗେ କେବଳ ସିନେମା ଗୀତ ଶୁଣୁଥିଲେ ସେମାନଙ୍କ ଭିତରେ ଗଜଲ୍ ଖୁବ୍ ଆଦୃତ ହେଲଣି । ଗଜଲ୍‌ର ଲୋକପ୍ରିୟତା ପାଇଁ ଆଧୁନିକ ସିନେମାର ଅବଦାନ କମ୍ ନୁହେଁ, କିନ୍ତୁ ତା ବୋଲି ଗଜଲ୍‌ର ଅନ୍ତର୍ନିହିତ ଗୁଣ ଅସ୍ୱୀକାର କରି ହେବ ନାହିଁ । ଗଜଲ ସାହିତ୍ୟ ଓ ସଙ୍ଗୀତର ଏକ ମର୍ମସ୍ପର୍ଶୀ ସମନ୍ୱୟ, ପୁଣି ତାହା ଆମର ଐତିହ୍ୟର ଏପରି ଏକ ଦିଗ ସହିତ ସମ୍ପୃକ୍ତ ଯାହା ଆମେ କାଳକ୍ରମେ ଭୁଲିବାକୁ ବସିଲୁଣି । ସେଥିଲାଗି କେତେକ ପରିମାଣରେ ଇତିହାସ ଓ କେତେକ ପରିମାଣରେ ଆମେ ଦାୟୀ । ଆମର ଐତିହ୍ୟର ଯେଉଁ ଦିଗଟି କଥା କୁହାଯାଉଛି ତାହା ଇସ୍‌ଲାମି ଦିଗ । ଏ ଦିଗ ସହିତ ଇସଲାମ୍ ଧର୍ମର ଖୁବ୍ ବେଶି ସମ୍ପର୍କ ନାହିଁ । ଏ ଦିଗଟି ମଧ୍ୟପ୍ରାଚ୍ୟରୁ, ବିଶେଷ କରି ଇରାନ୍‌ରୁ ଆସିଥିବା କୃଷ୍ଟି ସହିତ ସମ୍ପୃକ୍ତ, କିନ୍ତୁ ସମୟକ୍ରମେ ମହାଭାରତୀୟ ସଂସ୍କୃତିରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି ।

ଜଣେ ଉତ୍ତମ ଗାୟକଙ୍କ କଣ୍ଠରୁ ଗଜଲ୍ ଶୁଣିଲେ ଯେ କୌଣସି ଲୋକ ତୃପ୍ତି ଓ ଆନନ୍ଦ ଲାଭ କରିବ । ଗଜଲର ଅର୍ଥ ନ ବୁଝିଲେ ମଧ୍ୟ ଭାଷା ଓ ସ୍ୱରର ଯାଦୁକରୀ ସମନ୍ୱୟର ପ୍ରଭାବ ସେ ଅନୁଭବ କରିବ ନିଶ୍ଚୟ । ବୁଝିଲେ ସେ ସାହିତ୍ୟର ଗୁଣ ଉପଲବ୍ଧି କରିବ ଓ ତଦନୁପାତରେ ତାର ରସାସ୍ୱାଦନ ବୃଦ୍ଧି ପାଇବ । ତା ସହିତ ଯଦି ସେ ସାହିତ୍ୟର ଓ ସଭ୍ୟତାର ଇତିହାସ ବିଷୟରେ ଅବଗତ ହୁଏ, ତା ହେଲେ ଆହୁରି ଭଲ ।

ଗଜଲ୍ ଗୀତ ନୁହେଁ । ଏହା କବିତା ଲେଖିବାର ଏକ ବିଶେଷ ଶୈଳୀ । ଏହା ମଧ୍ୟପ୍ରାଚ୍ୟରେ ପ୍ରଚଳିତ ଥିଲା ଓ ଦିଲ୍ଲୀର ପ୍ରଥମ ସୁଲତାନମାନଙ୍କ ସଙ୍ଗେ ଭାରତକୁ ଆସିଥିଲା । କାଳକ୍ରମେ ଉତ୍ତର ଭାରତର ସଙ୍ଗୀତ, ଯାହା ହିନ୍ଦୁସ୍ତାନୀ ସଙ୍ଗୀତ ଭାବେ ବିଦିତ, ଇରାନ୍‌ର ସଙ୍ଗୀତ ଦ୍ୱାରା ବହୁପରିମାଣରେ ପ୍ରଭାବିତ ହୋଇଥିଲା । ଏହି ସମନ୍ୱୟର ମୁଖ୍ୟ ପୁରୋଧା ଥିଲେ ଅମୀର ଖୁସରୋ । ସେ ହିଁ ପ୍ରଥମେ ଭାରତରେ ଗଜଲ୍ ଲେଖିବା ଆରମ୍ଭ କରିଥିଲେ । ଅନ୍ୟମାନେ ଅବଶ୍ୟ ଲେଖୁଥିଲେ, କିନ୍ତୁ

ସେମାନେ ଫାର୍ସି ଭାଷାରେ ଲେଖୁଥିଲେ । ଅମୀର ଖସରୁଙ୍କ ଭାଷା ଥିଲା ହିନ୍ଦୀ ଓ ଫାର୍ସି ମିଶା ଭାଷା ।

ଗଜଲ୍ ବାସ୍ତବିକ୍ କଅଣ ? ଏ ବିଷୟରେ ନାନା ମୁନିଙ୍କର ନାନା ମତ (ମତଭେଦ ?) । ସେସବୁ ଏଠାରେ ଉଦ୍ଧାର କରି ବସିଲେ ପ୍ରବନ୍ଧଟି ଅଯଥା ଦୀର୍ଘ ହୋଇଯିବ । ଇଂରାଜୀରେ Gazelle ଶବ୍ଦ ଆରବୀ ଭାଷାରୁ ଗୃହୀତ । ତାର ଅର୍ଥ ହେଲ, ମରୁଭୂମିର ହରିଣ । ଉଭୟ ଆରବୀ ଓ ଫାର୍ସି ଭାଷାରେ ମରୁଭୂମିର ହରିଣ ଗଜାଲ ଭାବେ ଅଭିହିତ । ଏହି ଗଜାଲ ବା ଗେଜେଲ୍‌ର ହରିଣରେ ଗତି କଳ୍ପନା କରନ୍ତୁ । ସେ ଗୋଟିକ ପରେ ଗୋଟିଏ ଲମ୍ଫ ଦେଇ ଦିଗ୍‌ବଳୟରେ ଲୀନ ହୋଇଯାଉଛି । ତା'ର ପ୍ରତ୍ୟେକ ଲମ୍ଫ ସ୍ୱୟଂସମ୍ପୂର୍ଣ୍ଣ । ତା'ର ଗତି ମଧ୍ୟ ଆଉ ଏକ ସ୍ୱୟଂସମ୍ପୂର୍ଣ୍ଣ ବାସ୍ତବତା । ଗଜଲ୍ ମଧ୍ୟ ସେହିପରି । ଏହା କେତେକ ଦ୍ୱିପଦୀ ବା ଶେର୍‌ର ସମଷ୍ଟି । ଦ୍ୱିପଦୀ ଗୁଡ଼ିକର ସଂଖ୍ୟା ସାଧାରଣତଃ ପାଞ୍ଚରୁ ଆଠ । ପ୍ରତ୍ୟେକ ଦ୍ୱିପଦୀ ବା ଶେର୍ ସ୍ୱୟଂସମ୍ପୂର୍ଣ୍ଣ ଏବଂ ଗଜଲ୍‌ଟିର ଅନ୍ୟାନ୍ୟ ପଂକ୍ତି ନହୋଇ ତାକୁ ବୋଲିଲେ କିଛି କ୍ଷତି ନାହିଁ । ଏପରି ବୋଲାଯାଇଥାଏ ମଧ୍ୟ । ଅନ୍ୟାନ୍ୟ କବିତାରେ ଯେପରି ପୂର୍ବାପର ସଙ୍ଗତିକୁ ଗୁରୁତ୍ୱ ଦିଆଯାଇଥାଏ, ଗଜଲ୍‌ରେ ସେପରି ଦିଆଯାଏ ନାହିଁ । ଅର୍ଥଗତ ଧାରାବାହିକତା ନୁହେଁ, ଭାବାତ୍ମକ ଏକତା ଗଜଲର ପ୍ରଧାନ ଲକ୍ଷଣ । ସୁତରାଂ ଗୋଟିଏ ଗଜଲ୍‌ର ପ୍ରତ୍ୟେକ ଶେର୍‌ର ବିଷୟବସ୍ତୁ ଅଲଗା ହୋଇପାରେ, କିନ୍ତୁ ସମୁଦାୟ ଗଜଲ୍‌ଟିରେ ଏକ ପ୍ରକାରର ମିଜାଜ୍ ବା ମୁଡ୍ (mood) ଦେଖାଯାଏ, ଯେପରିକି ହତାଶା ବା ଅଭିମାନ । ଏହି ବିଶେଷତା ଏକାଧାରରେ ଗଜଲ୍‌ର ବଳିଷ୍ଠତା ତଥା ଦୁର୍ବଳତା । ଦୁଇଧାଡ଼ି ଭିତରେ କଥା ଆରମ୍ଭ କରି ଶେଷ କରିବାକୁ ହେବ । କେତେ ଅଳ୍ପ ଶବ୍ଦରେ କେତେ ବେଶି କଥା ପ୍ରକାଶ କରିହେବ, ତାହାହିଁ ଗଜଲ୍ ଲେଖକର ଲକ୍ଷ୍ୟ । ସମ୍ପୂର୍ଣ୍ଣ ଚିତ୍ରଟିଏ ଆଙ୍କିବାର ଅବକାଶ ନାହିଁ, କେବଳ ଚିତ୍ରଟିର କେତୋଟି ରେଖା ମାତ୍ର ଟାଣି ହେବ । ଯେପରି ଇମ୍ପ୍ରେସନିଷ୍ଟ ଚିତ୍ରକଳା । ଏ ପ୍ରକାର ଭାବ ପ୍ରକାଶ ପାଇଁ ଗଜଲ ଉପଯୁକ୍ତ ମାଧ୍ୟମ ଓ ଉର୍ଦ୍ଦୁ ଉପଯୁକ୍ତ ଭାଷା । ସ୍ୱଭାବତଃ ଉର୍ଦ୍ଦୁ ଏକ ସଂକ୍ଷିପ୍ତ ଭାଷା । ଉର୍ଦ୍ଦୁ ତେଣୁ ଗଜଲ୍‌ରେ ହିଁ ଚରମ ସଫଳତା ଲାଭ କରିଛି । ଗାଲିବ୍‌ଙ୍କର ଗୋଟିଏ ଶେର୍ ଦେଖନ୍ତୁ—

ଦମ୍ ଲିୟା ଥା କିୟାମତ୍ ନେ ହନୋଦ୍
ଫିର୍ ତେରା ଓ୍ୱକ୍ତେ ସଫର୍ ୟାଦ୍ ଆୟା ।।

ଅର୍ଥ ହେଲା :—ଏପର୍ଯ୍ୟନ୍ତ ପ୍ରଳୟ ଅଟକି ରହିଥିଲା, ପୁଣି ତୋର ବିଦାୟ ବେଳ ମନେ ପଡ଼ିଗଲା । କବିଙ୍କ ମତରେ ପ୍ରିୟାର ବିଚ୍ଛେଦର ଦୁଃଖ ତୁଳନାରେ ପ୍ରଳୟ ଆଉ ଅଧିକା କଣ ? ପ୍ରଳୟ ଅଟକି ଯାଇଥିଲା, ଅର୍ଥାତ୍ ପ୍ରେମିକ ପ୍ରଳୟକୁ ଭୁଲି ଯାଇଥିଲା,

କିନ୍ତୁ ପ୍ରିୟାର ବିଚ୍ଛେଦର ସମୟ ମନେ ପଡିଯିବାରୁ ଲାଗିଲା ଯେପରି ସମସ୍ତ ସଂସାର ଧ୍ୱଂସ ହୋଇଯାଉଛି, ପ୍ରଳୟ ଆସିଯାଇଛି ।

ଆଗରୁ କହିଛି, ଏପରି ଶୈଳୀ ସବୁବେଳେ ସୁଫଳ ଦିଏ ନାହିଁ । ଏପରି ଅନେକ କଥା ଅଛି ଯାହା ସମ୍ପୂର୍ଣ୍ଣ ଭାବେ ଦୁଇଧାଡ଼ିରେ କହିବା ଅସମ୍ଭବ । ଅନେକ ସ୍ଥଳରେ ଦୁଇଧାଡ଼ିର ଶେର୍ ଶ୍ଳୋକକୁ ବା ଆବେଗକୁ ଶ୍ରେଷ୍ଠ ଶ୍ରେଷ୍ଠ କୋଠରୀରେ ରଖିଦିଏ । ମୀର୍, ଗାଲିବ ବା ଫୈଜ୍‌ଙ୍କ ପରି କବି ଏ ଦୁର୍ବଳତା ଏଡ଼େଇ ଦେଇ ପାରନ୍ତି, କିନ୍ତୁ ଅନ୍ୟାନ୍ୟ ଅନେକ କବି ଏଥିରୁ ଉଦ୍ଧାର ପାଇ ପାରନ୍ତି ନାହିଁ । ଯେଉଁଠି କବିର କବିତ୍ୱ ଖୁବ ପାରଙ୍ଗମ, ସେଠାରେ ଅଳ୍ପ ଶବ୍ଦରେ ବେଶି ଭାବ ଗଜଲ୍ ଯେପରି ପ୍ରକାଶ ପାଇପାରେ ତାର ନିଦର୍ଶନ ଅତ୍ୟନ୍ତ ଦୁର୍ଲଭ । ଗାଲିବ୍‌ଙ୍କର ଆଉ ଗୋଟିଏ ଶେର୍‌ର ଉଦାହରଣ ଦିଆଯାଇ ପାରେ—

ହୁଁ ଗିରଫତର୍ ଉଲ୍‌ଫତେ ସୈୟାଦ
ୱର୍‌ନା ବାକୀ ହୈ ତାକତେ ପର୍‌ୱାଜ୍ ।

ଅର୍ଥ ହେଲା :—ପିଞ୍ଜରାରେ ଥିବା ପକ୍ଷୀ କହୁଛି ଯେ ମୁଁ ପିଞ୍ଜରାରେ ବନ୍ଦୀ ନୁହେଁ, ମୁଁ ବ୍ୟାଧର ପ୍ରେମରେ ବନ୍ଦୀ । ତା ନ ହୋଇଥିଲେ ମୁଁ ଉଡ଼ିଯାଇପାରନ୍ତି । ଏହା ଆକ୍ଷରିକ ଅର୍ଥ ମାତ୍ର, କିନ୍ତୁ ବ୍ୟଞ୍ଜନା ଖୁବ୍ ବ୍ୟାପକ ଓ ଗଭୀର । ବ୍ୟାଧ ଓ ପ୍ରେୟସୀ ତୁଳନୀୟ । ଆତ୍ମସମର୍ପଣ ବିନା ପ୍ରେମ ଅସମ୍ଭବ । ପକ୍ଷୀର ଉଡ଼ିବା ବ୍ୟକ୍ତିର ପାରିପାର୍ଶ୍ୱିକ ଅବସ୍ଥା ସହିତ ସଂଘର୍ଷ ଓ ତାକୁ ଅତିକ୍ରମ କରିଯିବାର ପ୍ରତୀକ । ଏହା ମନୁଷ୍ୟତ୍ୱର ପ୍ରକୃତ ପରାକାଷ୍ଠା, କିନ୍ତୁ ପ୍ରେମରେ ଏହାକୁ ମଧ୍ୟ ଜଳାଞ୍ଜଳି ଦେବାକୁ ପଡ଼େ । କେଡେ ବିରାଟ ଏ ତ୍ୟାଗ ! ଶେର୍‌ଟିର ଆଧ୍ୟାତ୍ମିକ ଅର୍ଥ ମଧ୍ୟ କରାଯାଇ ପାରେ । ବ୍ୟାଧ ସାଂସାରିକ ଭୋଗବିଳାସର ପ୍ରତୀକ । ଏ ଲିପ୍‌ସାର ମୋହରେ ପକ୍ଷୀରୂପୀ ଜୀବାତ୍ମା ସଂସାରର ପଞ୍ଜୁରୀରେ ବନ୍ଦୀ । ଏ ବନ୍ଧନ ଭାଙ୍ଗିବାର ସାମର୍ଥ୍ୟ ଜୀବାତ୍ମାର ଅଛି, କିନ୍ତୁ ସେ ମୋହଗ୍ରସ୍ତ ଅବସ୍ଥାରେ ଥିବାଯାଏଁ ବନ୍ଧନ ଭାଙ୍ଗିବାର ଶକ୍ତି ଆସିବ କୁଆଡ଼ୁ ? କୌଣସି ଅର୍ଥକୁ ଗ୍ରହଣ ନକରିବାର ସ୍ୱାଧୀନତା ପାଠକର (ବା ଶ୍ରୋତାର ) ଅଛି, କିନ୍ତୁ ଉପରୋକ୍ତ ଉଦାହରଣରୁ ଶକ୍ତିଶାଳୀ କବିତ୍ୱ କିପରି ଅତ୍ୟଳ୍ପ ପରିସର ମଧ୍ୟରେ ଭାବପ୍ରକାଶ କରିପାରେ ତାହା ସ୍ପଷ୍ଟ ହେବ ।

ଦିଲ୍ଲୀର ପ୍ରଥମ ସୁଲତାନମାନେ ଆଫ୍‌ଗାନ୍ ଥିଲେ । ତାଙ୍କ ସହିତ ଗଜଲ୍ ଭାରତବର୍ଷକୁ ଆସିଥିଲା ବୋଲି ଆଗରୁ କହିଛି । ସେ ସମୟରେ ଆଫ୍‌ଗାନିସ୍ଥାନ, ଇରାନ, ତୁରାନ୍ ( ଆଧୁନିକ ସୋଭିଏତ୍ ରୁଷିଆର ମଧ୍ୟ ଏସିଆ ଅଞ୍ଚଳ ) ଓ ତୁର୍କିସ୍ଥାନର

ସଭ୍ୟତାର ଭାଷା ଥିଲା ଫାର୍ସି । ଫାର୍ସି କଳା, ସାହିତ୍ୟ ଓ ସଂଗୀତ ଭାରତବର୍ଷରେ ପହଞ୍ଚିଲା ଓ ତତ୍କାଳୀନ ଭାରତୀୟ କଳା, ସାହିତ୍ୟ ଓ ସଙ୍ଗୀତର ସଂସ୍ପର୍ଶରେ ଆସିବା ଫଳରେ ଉଭୟେ ପରସ୍ପରର ଦ୍ୱାରା ପ୍ରଭାବିତ ହେଲେ । ଏହି ଦୁଇ ସଭ୍ୟତାଙ୍କର ସମ୍ମିଶ୍ରଣ ସମଗ୍ର ଉତ୍ତର ଭାରତର ସାଂସ୍କୃତିକ ଜୀବନରେ ଏକ ବଳିଷ୍ଠ ଆଲୋଡ଼ନ ସୃଷ୍ଟି କଲା । ମୁସଲ୍‌ମାନ୍ ସୁଫି ମତବାଦ ଭାରତୀୟ ଭକ୍ତିମାର୍ଗରୁ ଅନେକ କିଛି ଆହରଣ କଲା, ଅନେକ କିଛି ଦେଲା ମଧ୍ୟ । କବିର୍ ପ୍ରଭୃତି ସନ୍ଥକବି ଏହି ସମ୍ମିଶ୍ରିତ ସାଂସ୍କୃତିକ ଆଲୋଡ଼ନ ଦ୍ୱାରା ଉଦବୁଦ୍ଧ ହୋଇଥିଲେ । ସୁଫିମାନେ ମଧ୍ୟ ସଙ୍କୀର୍ତ୍ତନ କରିବା ଶିଖିଲେ (ଯାହାର ନିଦର୍ଶନ କୱାଲି) । ଇରାନର ଗଜଲ୍ ମଧ୍ୟ ହିନ୍ଦୀ ସାହିତ୍ୟର ସଂସ୍ପର୍ଶରେ ଆସିଲା । ଅମୀର୍ ଖୁସ୍‌ରୋ ପ୍ରଥମେ ଫାର୍ସି ଓ ବ୍ରଜଭାଷା ମିଶାଇ ଗଜଲ୍ ଲେଖିବା ଆରମ୍ଭ କରିଥିଲେ । ତା ପରର ଇତିହାସ ଟିକିଏ ଗୋଳମାଳିଆ । ଓ୍ୱାଲିଙ୍କୁ ଖାଣ୍ଟି ଉର୍ଦ୍ଦୁ ଭାଷାର ପ୍ରଥମ କବି ଭାବରେ ଗ୍ରହଣ କରାଯାଏ । ତାଙ୍କର ସମୟ ହେଲା ଖ୍ରୀଷ୍ଟାବ୍ଦ ୧୬୬୮-୧୭୪୪ ଓ କାର୍ଯ୍ୟକ୍ଷେତ୍ର ହାଇଦ୍ରାବାଦ୍ । ଦକ୍ଷିଣ ଭାରତର ସୁଲ୍‌ତାନ୍ ରାଜ୍ୟମାନଙ୍କରେ ପ୍ରସାର ଲାଭ କରି, ଭାରତର ନାନା ସ୍ଥାନ ବୁଲି ଶେଷରେ ଦିଲ୍ଲୀ-ଆଗ୍ରା ଅଞ୍ଚଳରେ ଉର୍ଦ୍ଦୁ ସମୃଦ୍ଧି ଲାଭ କଲା । ଗଜଲ୍ ମଧ୍ୟ ଯମୁନା କୂଳରେ ସର୍ବଶ୍ରେଷ୍ଠ ସାର୍ଥକତା ହାସଲ କଲା ।

ଉର୍ଦ୍ଦୁ କଥା ପଡ଼ିଲାଣି ଯେତେବେଳେ, ସେ ବିଷୟରେ ଆଉ ଦୁଇ ଚାରିପଦ କହିବା ଅପ୍ରାସଙ୍ଗିକ ହେବ ନାହିଁ । 'ଉର୍ଦ୍ଦୁ' ତୁର୍କୀ ଭାଷାର ଶବ୍ଦ ଓ ତୁର୍କୀ ଭାଷାରେ ତାର ଅର୍ଥ ଛାଉଣୀ ବା ଶିବିର । ମୋଗଲ୍ ସାମ୍ରାଜ୍ୟର ସେନା ଥିଲା ନାନା ଜାତିର ଏକ ବିଚିତ୍ର ମିଶ୍ରଣ । ତୁର୍କି, ଅଫ୍‌ଗାନ୍, ଇରାନୀ ତୁରାନୀ ବର୍ବର ସେନାରେ ଯୋଗଦେବା ଲାଗି ଭାରତ ଆସୁଥିଲେ । ତା ଛଡ଼ା ସେନାର ଏକ ବିରାଟ ଅଂଶ ଥିଲା ସ୍ୱଦେଶୀ— ରାଜପୁତ୍, ରୋହିଲା, ଜାଟ୍ ଇତ୍ୟାଦି । ମୋଗଲ ସେନାରେ ତେଣୁ ଭାରତୀୟ ଓ ବିଦେଶୀ ଏ ଦୁଇ ପ୍ରକାରର ଲୋକ ଥିଲେ, କିନ୍ତୁ ଏ ଦୁଇ ଗୋଷ୍ଠୀଙ୍କ ଭିତରେ କୌଣସି ସଂଯୋଗ ଭାଷା ନ ଥିବାରୁ ସେମାନଙ୍କ ଭିତରେ କୌଣସି ସମ୍ପର୍କ ପ୍ରାୟ ରହୁ ନ ଥିଲା । ଏ ଅସୁବିଧା ଦୂର କରିବା ପାଇଁ ଏକ ମିଶାମିଶି ଭାଷା ଆପେ ଆପେ ଗଢି ଉଠିଲା । ସେ ଭାଷାର ମୂଳପିଣ୍ଡ ହେଲା ଦିଲ୍ଲୀ-ଆଗ୍ରା ଅଞ୍ଚଳର କଥିତ ହିନ୍ଦୀ । ତତ୍କାଳୀନ ରାଜଭାଷା ଫାରସୀରୁ ଅନେକ ଶବ୍ଦ ସେଥିରେ ମିଶିଲା । ଏହି ଭାଷା ହେଲା ଉର୍ଦ୍ଦୁ, ଅର୍ଥାତ୍ ଛାଉଣୀରେ ସୈନ୍ୟମାନେ ବ୍ୟବହାର କରୁଥିବା ଭାଷା । ବ୍ୟବହାରିକ ଭାଷା ପରିସ୍ଥିତି ଅନୁଯାୟୀ ଆପଣାକୁ ଗଢିନିଏ, ପଣ୍ଡିତମାନଙ୍କର ଅନୁମୋଦନର ଅପେକ୍ଷା ରଖେ ନାହିଁ । ଓଡ଼ିଆରେ 'ଫାଇଲଟା ତ ପୁଟ୍‌ଅପ ହେଲା ନାହିଁ, ସ୍ୟାଙ୍କ୍‌ସନ୍ କେବେ ଇସୁ ହେବ ?' ପରି ଅଭିବ୍ୟକ୍ତି କର୍ମଚାରୀମାନଙ୍କ ଭିତରେ ବ୍ୟବହାରସିଦ୍ଧ ହୋଇଗଲାଣି । ଏହା ପ୍ରତି ପଣ୍ଡିତମାନଙ୍କର ଯେତେ ଆପତ୍ତି ଥାଉ ନା କାହିଁକି, ଏହା ହେଲା କାମର

ଭାଷା । ସେହିପରି ଉର୍ଦ୍ଦୁ ମଧ୍ୟ ମୌଲବୀ ସାହେବଙ୍କର ନାସିକାକୁଞ୍ଚନ ଓ ଅବଜ୍ଞା ସତ୍ତ୍ୱେ ପ୍ରତିଷ୍ଠିତ ହେଲା ଓ ବ୍ୟାପି ଚାଲିଲା । କାଳକ୍ରମେ ମୁସଲମାନ ଶାସକଗୋଷ୍ଠୀର ମଧ୍ୟପ୍ରାଚ୍ୟ ଓ ମଧ୍ୟ ଏସିଆ ସହିତ ସମ୍ପର୍କ କମି ଆସିଲା ଓ ସେମାନେ ଭାରତୀୟ ସମାଜର ଅଂଶବିଶେଷ ହୋଇ ପଡ଼ିଲେ । ସେମାନେ ଉର୍ଦ୍ଦୁ ବ୍ୟବହାର କରିବା ଆରମ୍ଭ କଲେ । ଫଳତଃ ଏହା ଏକ ସମ୍ଭ୍ରାନ୍ତ ଭାଷାରେ ପରିଣତ ହେଲା ଏବଂ ସେ ସମୟର ଅନେକ ଶକ୍ତିଶାଳୀ ଲେଖକ ଏହାକୁ ଭାବପ୍ରକାଶର ମାଧ୍ୟମ ରୂପେ ଗ୍ରହଣ କଲେ ।

ଏହି ନବଗଠିତ ଭାଷାର ବଳିଷ୍ଠତା ତଥା ଦୁର୍ବଳତା କେତୋଟି ଐତିହାସିକ ପରିସ୍ଥିତି ଦ୍ୱାରା ନିର୍ଣ୍ଣୀତ ହେଲା । ଉର୍ଦ୍ଦୁ ଯେଉଁ ସଭ୍ୟତାର ପ୍ରତୀକ, ତାହା ଏକ ନାଗରିକ ବା ସହରୀ ସଭ୍ୟତା । ସେ ସଭ୍ୟତାରେ ସହର ବାହାରେ କୌଣସି ଅର୍ଥପୂର୍ଣ୍ଣ ଜୀବନର କଳ୍ପନା ଅତ୍ୟନ୍ତ ବିରଳ । ସହର ବାହାରେ ସେହ୍ରା, ଅର୍ଥାତ୍ ମରୁଭୂମି (ଇଂରାଜୀର Sahara ଶବ୍ଦ ଏଥିରୁ ଆସିଛି), ନହେଲେ ଦସ୍ତ୍, ଅର୍ଥାତ୍ ଜଙ୍ଗଲ । ଇରାନ୍‌ର ଭୌଗୋଳିକ ପରିସ୍ଥିତିରେ ଏପରି ଦୃଷ୍ଟିଭଙ୍ଗୀ ସ୍ୱାଭାବିକ । ଇରାନ୍‌ରେ କୌଣସି ବଡ଼ ନଦୀ ନାହିଁ । ଏ ଦେଶରେ ବର୍ଷାର ଘୋର ଅଭାବ, ଅଧିକାଂଶ ଅଞ୍ଚଳ ପାର୍ବତ୍ୟାଞ୍ଚଳ । ପାହାଡ଼ ଉପରେ ବରଫ ପଡ଼େ, ସେଠି କିଛି କିଛି ଜଙ୍ଗଲ ଥାଏ । ସେଠାରୁ କେତୋଟି ଝରଣା ଉପତ୍ୟକାକୁ ପ୍ରବାହିତ ହୁଏ ଓ ତଦ୍ୱାରା ଯତ୍‌ସାମାନ୍ୟ ଜଳସେଚନ ହୁଏ । ଅଧିକାଂଶ ଭାଗ ଜଳ ଅଭାବରୁ ମରୁଭୂମି । ଯେଉଁମାନେ ଚାଷ କରନ୍ତି ସେମାନେ ସହରରୁ ଯାଇ ଚାଷ କରନ୍ତି । ପ୍ରକୃତିର ସୌନ୍ଦର୍ଯ୍ୟ କେବଳ ସହରରେ ହିଁ ଉପଭୋଗ୍ୟ । ସେଠାରେ ଗୁଲିସ୍ତାନ୍ ଅର୍ଥାତ୍ ବଗିଚା ଥାଏ, ଗୋଲାପ ଫୁଟେ, ବୁଲବୁଲ ଗାଏ । ସେଠାରେ ତନ୍ୱୀ କିଶୋରୀ ପରି ଚିନାର୍ ଗଛ ମୃଦୁ ସମୀରରେ ଦୋହଲୁଥାଏ । ଏପରି ଆହୁରି ଅନେକ କଥା । ମୋଟ ଉପରେ ଏଠାରେ ପ୍ରକୃତିର ନାଗରିକ ରୂପ ହିଁ ମୁଖ୍ୟ ରୂପ । ସହର ବାହାରେ ଯେଉଁ ଶହ୍ରା, ସେଠାରେ ପ୍ରେମପାଗଳ ମଜନୁ ବୁଲେ ଓ ସେଠାରେ ମରେ । ସୁତରାଂ ସହର ବାହାରକୁ ଯେ ଯାଏ, ସେ ହୁଏତ ସାଧୁସନ୍ଥ, ବା ପାଗଳ, ବା ଅନ୍ତତଃପକ୍ଷେ ଆଡ଼ପାଗଳ । ବେପାରୀ ମାନେ ଅବଶ୍ୟ ଗୋଟିଏ ସହରରୁ ଆଉ ଗୋଟିଏ ସହରକୁ ସେମାନଙ୍କର କାର୍‌ୱାଁ (Caravan) ନେଇ ଯାଆନ୍ତି, କିନ୍ତୁ ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବାକୁ ନୁହେଁ, ପଇସା କମେଇବାକୁ ସେମାନେ ଯାଆନ୍ତି । ଏପରି ଯାତ୍ରା ମଧ୍ୟ ବିପଦସଙ୍କୁଳ । ଦସ୍ୟୁ ଅଛନ୍ତି, ମରୁଝଡ଼ ଅଛି; ଅନ୍ୟାନ୍ୟ ବହୁତ ବିଘ୍ନ ଅଛି । ମରୁଭୂମିରେ ଅବଶ୍ୟ କେତେକ ଯାଯାବର ଥାଆନ୍ତି, କିନ୍ତୁ କେହି କେବେ ସେମାନଙ୍କୁ ସଭ୍ୟ ବୋଲି କହିବାର ଆସ୍ପର୍ଦ୍ଧା କରି ନାହିଁ । ଏପରି ଭାବଧାରା ଇରାନ୍‌ର ପରିପ୍ରେକ୍ଷୀରେ ଅବଶ୍ୟ ସ୍ୱାଭାବିକ, କିନ୍ତୁ ଭାରତର ମାଟିରେ ତାକୁ କଲମ୍ କଲାବେଳେ କେତେକ ଅବାସ୍ତବତା ଓ ଦୁର୍ବଳତା ଉର୍ଦ୍ଦୁ ସାହିତ୍ୟକୁ ଆକ୍ରାନ୍ତ କଲା । ଏହି ସହରୀ ଐତିହ୍ୟବଶତଃ ଉର୍ଦ୍ଦୁ ସାହିତ୍ୟ ପ୍ରକୃତି ବର୍ଣ୍ଣନାରେ ଅତିଶୟ ଦୁର୍ବଳ ।

ପ୍ରାୟ ପ୍ରତ୍ୟେକ ଭାରତୀୟ ଭାଷାର ସାହିତ୍ୟରେ ମନୁଷ୍ୟର ପ୍ରକୃତି ସହିତ ଏକ ଗଭୀର, ସମ୍ବେଦନାପୂର୍ଣ୍ଣ ସମ୍ବନ୍ଧକୁ ଖୁବ୍ ମୂଲ୍ୟ ଦିଆଯାଇଛି । ପରବର୍ତ୍ତୀ କାଳରେ ଅବଶ୍ୟ ଏ ଦୁର୍ବଳତା ନିରାକରଣ ଦିଗରେ ବହୁତ ଚେଷ୍ଟା କରାଯାଇଛି, କିନ୍ତୁ ଭାଷାର ମୂଳ ବ୍ୟକ୍ତିତ୍ୱ ସହିତ ଖାପ ଖାଉନଥିବାରୁ ସାଧାରଣତଃ ଏପରି ପ୍ରଚେଷ୍ଟା ଉତ୍ତୀର୍ଣ୍ଣ ହୋଇ-ପାରୁନାହିଁ ।

ଉର୍ଦ୍ଦୁର ଅଭ୍ୟୁଦୟ ସମୟରେ ରାଜନୈତିକ ପରିସ୍ଥିତିର ପ୍ରଭାବ ମଧ୍ୟ କିଛି କମ ନୁହେଁ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଓ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଉର୍ଦ୍ଦୁ ସାହିତ୍ୟର ସର୍ବାଧିକ ବିକାଶ ଘଟିଥିଲା । ଏହି ସମୟ ଘୋର ଅରାଜକତାର ସମୟ । ମୋଗଲ ସାମ୍ରାଜ୍ୟର ସୂର୍ଯ୍ୟ ଅସ୍ତଗାମୀ । ବାପ ଅନ୍ତେ ବଡ଼ପୁଅ ରଜା ହେବ, ଏହା ପୃଥିବୀର ଅଧିକାଂଶ ଭାଗରେ ସ୍ୱୀକୃତି ପାଇଥିବାସ୍ଥଳେ, ମଧ୍ୟ ଏସିଆ ଅଞ୍ଚଳରେ (ଯେଉଁଠାରୁ ପ୍ରଥମେ ମୋଗଲ୍‌ମାନେ ଆସିଥିଲେ) ସ୍ୱୀକୃତି ପାଇନଥିଲା । ବାପ ମଲାପରେ ଗାଦି ପାଇଁ ପୁଅମାନଙ୍କ ଭିତରେ ସଂଘର୍ଷ ହେବା ସ୍ୱାଭାବିକ ବୋଲି ସେଠାରେ ଧରାଯାଉଥିଲା । ଗୋଟିଏ କ୍ଷୁଦ୍ର ଉପଜାତି ଭିତରେ ଏ ବ୍ୟବସ୍ଥା ବିଶେଷ ଅସୁବିଧା ସୃଷ୍ଟି କରୁନଥିଲା, ବରଂ ଗୋଟିଏ ଦୃଷ୍ଟିରୁ ଅପରିହାର୍ଯ୍ୟ ଓ ବାଞ୍ଛନୀୟ ଥିଲା । ଯେଉଁମାନେ ଲୁଟ୍‌ପାଟ କରି ପେଟ ପୋଷିବାକୁ ବାଧ୍ୟ, ସେମାନଙ୍କ ସର୍ଦ୍ଦାର ସେ ବିଦ୍ୟାରେ ପାରଙ୍ଗମ ହେବା ଆବଶ୍ୟକ । ଗୋଟିଏ ବିଶାଳ ସାମ୍ରାଜ୍ୟ ଉପରେ ଏ ବ୍ୟବସ୍ଥା ଲଦି ଦେବାର ଫଳ ଯାହା ହବା କଥା ତାହା ହିଁ ହେଉଥିଲା । ସମ୍ରାଟଙ୍କ ଅନ୍ତେ ରାଜକୁମାରମାନଙ୍କ ଭିତରେ ଭୟାନକ ଓ ରକ୍ତାକ୍ତ କନ୍ଦଳ ଲାଗି ଯାଉଥିଲା, ପରିଣତି କଣ ହେବ କହିବା ମୁସ୍କିଲ ? ସୁତରାଂ ସମସ୍ତେ ନିଜନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ପ୍ରାଧାନ୍ୟ ଦେଉଥିଲେ । ଦେଶବ୍ୟାପି ଏକ ଜୁଆଖେଳ ଚାଲିଥିଲା ଯେଉଁଥିରେ ବାଦ୍‌ଶାହଙ୍କଠାରୁ ଆରମ୍ଭ କରି ସିପାହି ପର୍ଯ୍ୟନ୍ତ ଯୋଗଦେଇ ନିଜନିଜର ଭାଗ୍ୟ ପରୀକ୍ଷାରେ ପ୍ରବୃତ୍ତ ହେଉଥିଲେ ଓ ନିଜନିଜର ଜୀବନ ବାଜି ଲଗାଉଥିଲେ । ଦେଶର ଶାସନ ଏହି ଜୁଆଡ଼ିମାନଙ୍କର କ୍ରୀଡ଼ା-ଭୂମିରେ ପରିଣତ ହୋଇଯାଇଥିଲା । ସାଧାରଣ ଭଦ୍ରଲୋକ କଚ୍ଛପ ପରି ନିଜ ନିଜ ଖୋଳଭିତରେ ରହିବା ପସନ୍ଦ କରିବା ସ୍ୱାଭାବିକ । ଇହକାଳର ଏ ଅବ୍ୟବସ୍ଥା ଫଳରେ ହୁଏତ ପରକାଳ ପାଇଁ ଏକ ଆଗ୍ରହ ବ୍ୟାପକ ଓ ବଳିଷ୍ଠ ହୋଇ ପାରିଥାନ୍ତା, କିନ୍ତୁ ଏକ ପ୍ରକୃତ ଆଧ୍ୟାତ୍ମିକ ଆନ୍ଦୋଳନ ସେ ସମୟରେ ଘଟିପାରିଲା ନାହିଁ । ମୌଲବୀ ସମ୍ପ୍ରଦାୟର ରକ୍ଷଣଶୀଳତା ଓ ମାନବିକ ମୂଲ୍ୟବୋଧର ଅଭାବଯୋଗୁଁ ସେମାନେ ଲୋକଙ୍କର ଶ୍ରଦ୍ଧା ଅର୍ଜନ କରିପାରିନଥିଲେ । ଉର୍ଦ୍ଦୁ ସାହିତ୍ୟରେ ସେମାନେ ଉପହାସର ପାତ୍ର । ଏହାର ଉଦାହରଣ ଅସଂଖ୍ୟ ।

ସେ ସମୟରେ ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ସାମାଜିକ ବ୍ୟବଧାନ ପ୍ରାୟ ଅଲଂଘ୍ୟ । ସାମାଜିକ ଆଚାର ଯାହା ଥିଲା, ସେଥିରେ ସ୍ତ୍ରୀ ଓ ପୁରୁଷଙ୍କର ପରସ୍ପର ନିକଟବର୍ତ୍ତୀ ହେବା

ଘୋର ବିପଜ୍ଜନକ ବୋଲି ଧରା ଯାଉଥିଲା । ଟିକିଏ ସୁବିଧା ପାଇଲେ ହିଁ ସମସ୍ତ ସଂଯମ ଓ ସାମାଜିକ ମାନ୍ୟତା ବଢ଼ିପାଣିରେ ବାଲିବନ୍ଧ ପରି ଭୁଷୁଡ଼ି ପଡ଼ିବ । ପ୍ରେମ ଓ ପାପାଚାରର ଭିତରେ ବିଶେଷ କିଛି ପାର୍ଥକ୍ୟ ନଥିଲା । ଏପରି ଅବସ୍ଥାର ଫଳରେ ଅନେକ ବିକୃତିର ସୃଷ୍ଟି ହେବା ସ୍ୱାଭାବିକ । ପୁରୁଷ ଓ ସ୍ତ୍ରୀ ସମାଜରେ ପରସ୍ପରର ସାନ୍ନିଧ ଲୋଡ଼ିବା ସ୍ୱାଭାବିକ । ଫଳତଃ ସମାଜରେ ଏପରି ଏକ ନାରୀଗୋଷ୍ଠୀର ଉଦ୍ଭବ ହେଲା ଯାହା ଏକ ଅସାଧାରଣ ପ୍ରତିଷ୍ଠା ଓ ସ୍ୱୀକୃତି ଲାଭକଲା । ଏମାନଙ୍କୁ ବେଶ୍ୟା କହିବା ଠିକ୍ ହେବ ନାହିଁ, ହୁଏତ ଗଣିକା ଶବ୍ଦ ବେଶୀ ଉପଯୋଗୀ । ଏମାନେ ଅବଶ୍ୟ ସତୀ ସାଧ୍ୱୀଙ୍କ ଭଳି ସମ୍ମାନ ପାଉ ନଥିଲେ, କିନ୍ତୁ ତା ବୋଲି ତାଙ୍କର ସାମାଜିକ ପ୍ରତିଷ୍ଠା ଊଣା ହେଉ ନଥିଲା । ଏମାନେ ହିଁ ହେଲେ ସେ ସମୟର ନାୟିକା । ସେମାନଙ୍କର ବୈଠକଖାନା ସମ୍ଭ୍ରାନ୍ତଲୋକଙ୍କର ମିଳନସ୍ଥଳ । ସେଠାରେ ସାହିତ୍ୟ, ରାଜନୀତି ଓ ଅନ୍ୟାନ୍ୟ ବିଷୟ ଚର୍ଚ୍ଚା କରିଯାଇପାରେ । କଥାର ଚତୁରତା ( Wit ) ଦେଖାଇବାର ସୁବିଧା ମଧ୍ୟ ମିଳେ । ସବୁଠାରୁ ବଡ଼କଥା, ସେଠାରେ ମନଖୋଲା କଥାବାର୍ତ୍ତା ଓ ବନ୍ଧନହୀନ ମିଳାମିଶା ସମ୍ଭବ । କଥାବାର୍ତ୍ତା ଖୁବ୍ ମାର୍ଜିତ ହେଉଥିଲା, ଯେହେତୁ ନାରୀ (ଯେ କୌଣସି ନାରୀ ହେଉନା କାହିଁକି)ର ଉପସ୍ଥିତି ଯୋଗୁ ପୁରୁଷମାନଙ୍କ କଥାବାର୍ତ୍ତାରେ କେତେଟା ଶାଳୀନତା ଆସିବା ସ୍ୱାଭାବିକ । ଫଳତଃ ଏହି ମହିଳାମାନେ ହିଁ ସୁରୁଚିର, ଆଦବ୍ କାଇଦାର ପ୍ରତୀକ ରୂପେ ପୂଜିତ ହେଲେ । ପାଠକମାନଙ୍କ ଭିତରୁ ଅନେକ 'ଉମରାଓ ଜାନ୍' ଚଳଚ୍ଚିତ୍ର ଦେଖିଥିବେ । ଏହା ସେହି ସମାଜ । ଉମ୍ରାଓ ଜାନ୍ଙ୍କ ପରି ନାୟିକାମାନଙ୍କ ବୈଠକଖାନାରେ ବସୁଥିଲା ମହଫିଲ୍ ବା ବଜ୍ମ ।

ଏ ସବୁ ବୈଠକରେ ପୁରୁଷଙ୍କ ତୁଳନାରେ ମହିଳାଙ୍କ ସଂଖ୍ୟା ସ୍ୱଳ୍ପ । ନାୟିକା ଜଣେ ଏବଂ ଖୁବ୍ ବେଶି ହେଲେ ତାର କେହି ଯୁବତୀ ସଖୀ ବା ଦାସୀ ଥିଲେ । ତେଣୁ ନାୟିକା ଆଜି କାହାକୁ ଚାହିଁଲା, କାଲି କାହାଆଡ଼କୁ ଚାହିଁ ହସିଥିଲା, କାହା ଉପରେ ମୁହଁ ଫୁଲେଇଲା ଏସବୁ ଅତ୍ୟନ୍ତ ଜରୁରୀ ଓ ଗୁରୁତ୍ୱପୂର୍ଣ୍ଣ ମାମଲା । ଏହି ନାୟିକା ସାଧାରଣତଃ ନିଷ୍ଠୁର ଏବଂ ଦଳେ ପୁରୁଷଙ୍କୁ ମାଙ୍କଡ଼ପରି ନଚେଇବା ତାର ସ୍ୱାଭାବିକ ଆଚରଣ । କିନ୍ତୁ ଏହି ନିଷ୍ଠୁରତା ଯେ କେତେ କବିତାର ଉତ୍ସ ତାହା କହିବା ସମ୍ଭବ ନୁହେଁ ।

ଏହି ରାଜନୈତିକ ସାମାଜିକ ପଙ୍କରୁ ଯେଉଁ ପଦ୍ମ ଫୁଟିଲା ତାହା ଅପୂର୍ବ । ସେ ସମୟରେ ଏପରି କେତେକ ଅସାଧାରଣ ପ୍ରତିଭାସମ୍ପନ୍ନ କବି ଦେଖାଦେଲେ ଯେଉଁମାନେ ଏକ ନୂତନ ଭାବାଲୋକ ସୃଷ୍ଟି କଲେ । ମସ୍ତିଷ୍କ ଓ ହୃଦୟର ଏପରି ସମନ୍ୱୟ ଆଗରୁ ଦେଖାଯାଇନଥିଲା । ଏମାନେ ଅଳ୍ପ କଥାରେ ନିଜକୁ ପ୍ରକାଶ କରିବାରେ ପାରଦର୍ଶୀ, ସୁତରାଂ ଏମାନଙ୍କର କବିତା ବ୍ୟଞ୍ଜନାମୟ । ଏ ବ୍ୟଞ୍ଜନା ହୃଦୟଙ୍ଗମ କରିବାକୁ ହେଲେ ତତ୍କାଳୀନ ସଂସ୍କୃତି ବିଷୟରେ କିଛି ଜାଣିବାକୁ ହେବ । ସେ ସମାଜ ମୁସଲମାନ ।

ଅଧିକାଂଶ କବି ଓ ଅଧିକାଂଶ ପାଠକ ମୁସଲମାନ । କବିତାରେ ମୁସ୍‌ଲିମ୍ ରୂପକର ବହୁଳ ବ୍ୟବହାର ସ୍ୱାଭାବିକ ଏବଂ ତା ବିଷୟରେ ଧାରଣା ନଥିଲେ କବିତାର ରସଗ୍ରହଣ ପ୍ରାୟ ଅସମ୍ଭବ ହୋଇପଡ଼େ । ମିର୍ଜା ଅବ୍‌ଦୁଲ୍ ଖାଁ ଗାଲିବଙ୍କର ଗୋଟିଏ କବିତା ଦେଖନ୍ତୁ—

ଆଓ ନାଁ ହମ୍ ଭି ସୈର କୋହେତୁର୍‌କି
କ୍ୟା ଫର୍କ୍ ହୈ କି ଉଦ୍‌କୋ ସୁକ୍‌ସା ଜବାବ୍ ମିଲେ ।

ଏହାର ଆକ୍ଷରିକ ଅର୍ଥ ହେଲା ଯେ 'ଗୁଲ' ଆମେ କାହିଁକି ସିନାଇ ପର୍ବତ ଉପରକୁ ବୁଲିବାକୁ ନଯିବା ? ସମସ୍ତଙ୍କୁ ଏକା ଉତ୍ତର ମିଳିବ ବୋଲି କଣ କଥା ଅଛି ?' କୋରାନ୍‌ରେ, ବାଇବେଲ୍‌ରେ ଓ ଇହୁଦୀ ଧର୍ମଶାସ୍ତ୍ରରେ ଅଛି ଯେ ମୁସା ବା ମୋଜେସ୍ ଇହୁଦୀମାନଙ୍କୁ ସଙ୍ଗରେ ଧରି ମିଶରରୁ ପଳାଇ ଆସି ସିନାଇ ପର୍ବତ ପାଖରେ ପହଞ୍ଚିଲେ । ପର୍ବତ ଉପରକୁ ଚଢ଼ି ସେ ଜିହୋଭାଙ୍କୁ ଡ଼ାକିଲେ ଓ ଦେଖାଦେବାକୁ ପ୍ରାର୍ଥନା କଲେ । ଆକାଶରୁ ଦୈବବାଣୀ ଶୁଭିଲା ଯେ ତୋର ମୋତେ ଦେଖିବାର ଶକ୍ତି ନାହିଁ । ଏଠାରେ କବି କହୁଛନ୍ତି, 'ମୁଁ ତ ମୁସା ପରି ଦୁର୍ବଳ ନୁହେଁ, ହୁଏତ ମୋର ବ୍ୟକ୍ତିତ୍ୱରେ ଏପରି ଶକ୍ତି ଅଛି ଯଦ୍ୱାରା ମୁଁ ଈଶ୍ୱରଙ୍କୁ ଦେଖିପାରିବି । ଯଦି ଚେଷ୍ଟା ନ କରାଯାଏ, ବ୍ୟକ୍ତିତ୍ୱର ବିକାଶ ହେବ କିପରି ?' ଏ ଐତିହ୍ୟ ସହିତ ପରିଚୟ ନଥିଲେ କବିତାଟିର ରସୋପଲବ୍‌ଧି ଅପୂର୍ଣ୍ଣ ରହିଯିବ ନିଶ୍ଚୟ । ଖାଣ୍ଟି ଇସଲାମି ରୂପକ ଛଡ଼ା ଉର୍ଦ୍ଦୁ ଫାର୍‌ସୀ ଇତିହାସରୁ ଅନେକ ରୂପକ ଆହରଣ କରିଛି ।

ବାକ୍‌ଚାତୁରୀ, ପ୍ରତ୍ୟୁତ୍ପନ୍ନ ବୁଦ୍ଧି, ମାନବିକ ମୂଲ୍ୟବୋଧ ଓ ଭଣ୍ଡାମି ପ୍ରତି ଅସହିଷ୍ଣୁତାର ସରସ ପ୍ରକାଶରେ ଉର୍ଦ୍ଦୁ କବିତାର ସାର୍ଥକତା । ସଂସାରରେ ଭଣ୍ଡାମି ପ୍ରତି ବିଦ୍ରୂପ ପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜକୁ ମଧ୍ୟ ଉପହାସ କରିବା ଦ୍ୱାରା କବି ତାର ପାଠକ ଓ ଶ୍ରୋତା (କାରଣ ଉର୍ଦ୍ଦୁ କବିତା ପ୍ରାୟ ସଭାରେ ପଢ଼ାଯାଇଥାଏ, ଯାହାକୁ ମୁଶାୟରା କହନ୍ତି)ଙ୍କ ସହିତ ଏକ ଭାବାତ୍ମକ ଯୋଗସୂତ୍ର ସ୍ଥାପନ କରିବାରେ ସମର୍ଥ ହୁଏ । ଏହି ହାଲୁକା ଶୈଳୀରେ ଅନେକ ଦାର୍ଶନିକ କଥା ମଧ୍ୟ କହି ହୋଇଯାଏ । ଗୋଟିଏ ଆଧୁନିକ କବିତା (ଖୁମାର୍‌ଙ୍କର ରଚନା)ରୁ ଉଦାହରଣଟିଏ ନିଅନ୍ତୁ—

ଇନ୍‌ସାନ୍ ଜତେ ନା କରେ ଗୁନାହୋଁ ସେ ତୋବା
ମଜ୍‌ବୁରିୟାଁ ନେ କିତ୍‌ନେ ଫରିସ୍ତେ ବନା ଡ଼ାଲେ ହେଁ ।

ଅର୍ଥାତ୍ ମନୁଷ୍ୟ ହୋଇ ପାପ ନକରିବା ଅସମ୍ଭବ । ଅବସ୍ଥାଚକ୍ରରେ କେତେ ଦେବଦୂତ ତିଆରି ହୁଅନ୍ତି । ବିଶଦ ଅର୍ଥହେଲା, ପାପ କରିବା ସ୍ୱାଭାବିକ । ଅଧିକାଂଶ ପୁଣ୍ୟାତ୍ମା କେବଳ ସୁବିଧା ଅଭାବରୁ ପୁଣ୍ୟାତ୍ମା ହୋଇଯାଇଛନ୍ତି । ଏଥିରେ ବ୍ୟଙ୍ଗ ସହିତ ସମ୍ବେଦନା ଓ ସହନଶୀଳତା ସୁସ୍ପଷ୍ଟ । ଏପରି କବିତା ଯେ ଲୋକପ୍ରିୟ ହେବ ଏଥିରେ ଆଶ୍ଚର୍ଯ୍ୟ

ହେବାର କିଛି ନାହିଁ । ପୁଣି ଏହି ହାଲୁକା ଶୈଳୀ ଲେଖକର ଅନ୍ତରଙ୍ଗତାର ଏକ କୁଶଳ ଉପାୟ । ମଠବାସୀମାନେ ବିରକ୍ତ ହୋଇପାରନ୍ତି, କିନ୍ତୁ ଉତ୍ୟକ୍ତ ହେବେ ନାହିଁ । ଏହି ହାଲୁକା ଅଥଚ ପ୍ରକାଶକ୍ଷମ ଶୈଳୀର ଆଉ ଗୋଟିଏ ଉଦାହରଣ (ଫୈଜ୍ ଅହମଦ୍ ଫୈଜଙ୍କ କବିତାରୁ) ଦେଉଛି---

ଫିକ୍ରେ ସୁଦୋଜିୟାଁ ତୋ ଛୁଟେଗୀ
ମିନ୍ନତେ ଇନୋ ଆଁ ତୋ ଛୁଟେଗୀ
ଶୈର୍, ଦୋଜଖ ମେଁ ମୟ୍ ମିଲେ ନା ମିଲେ
ଶେଖ୍ ସାହବ ସେ ଜାନ୍ ତୋ ଛୁଟେଗୀ ।

ଅର୍ଥାତ୍ ମୃତ୍ୟୁ ହେଲେ କଣ ହେବ ? ଲାଭ ଓ କ୍ଷତିର ଚିନ୍ତାରୁ ମୁକ୍ତି ମିଳିବ, ସ୍ୱାକୁ ତାକୁ ଖୁସାମତ୍ କରିବାରୁ ମଧ୍ୟ ମୁକ୍ତି ମିଳିବ, ନର୍କକୁ ତ ଯିବାକୁ ହେବ, ସେଠାରେ ମଦ ମିଳୁ କି ନମିଳୁ, ମୌଲବୀ ସାହେବଙ୍କର ଉପଦେଶରୁ ତ ମୁକ୍ତି ମିଳିବ ।

ରାଜନୈତିକ ତଥା ସାମାଜିକ ଅବ୍ୟବସ୍ଥା କଥା ଆଗରୁ ଉଲ୍ଲେଖ କରାଯାଇଛି । ବାସ୍ତବତା ସହିତ କିଛିଟା ସାଲିସ ନକଲେ ଏ ଅବ୍ୟବସ୍ଥା ଭିତରେ ବଞ୍ଚିବା ଅସମ୍ଭବ ହୋଇଥାନ୍ତା । କିନ୍ତୁ ଏ ବାସ୍ତବତାର ସମ୍ପୂର୍ଣ୍ଣ ରୂପ ଖୁବ୍ କ୍ଲେଶଦାୟକ, ତେଣୁ ଯେତିକି ନ ଦେଖିଲେ ନ ଚଳେ ସେତିକି ହିଁ ଲୋକେ ଦେଖିଲେ । ଅନ୍ୟ କଥାରେ କହିଲେ, ସମୁଦାୟ ବାସ୍ତବତାକୁ ଛୋଟ ଛୋଟ କୋଠରୀରେ ବାଣ୍ଟି ଦିଆଗଲା ଏବଂ ଏକ ନିର୍ଦ୍ଦିଷ୍ଟ ସମୟରେ ଏକ ନିର୍ଦ୍ଦିଷ୍ଟ କୋଠରୀରେ ବାସ୍ତବତା ସହିତ କଷ୍ଟେମଷ୍ଟେ ସମ୍ପର୍କ ସ୍ଥାପନ କରାଯାଉଥିଲା । ଏହାଫଳରେ ନିଷ୍ଠୁର ବାସ୍ତବତା କିଛି ପରିମାଣରେ ସହ୍ୟ ହୋଇଯାଉଥିଲା । ସବୁ ଜିନିଷକୁ ଛୋଟ ଛୋଟ ଅଂଶରେ ବିଭକ୍ତ କରି ପ୍ରତ୍ୟେକ ଅଂଶକୁ ନିଠେଇ ଦେଖିବାର ମନୋବୃତ୍ତି ଏ ପରିସ୍ଥିତିରୁ ପ୍ରେରଣା ପାଇଲା । ଗଜଲ ଏହି ମନୋବୃତ୍ତି ସହିତ ବେଶ୍ ଖାପ ଖାଇଗଲା । ଏହାର ପ୍ରତ୍ୟେକ ଅଂଶ ମଧ୍ୟ ସ୍ୱୟଂ-ସମ୍ପୂର୍ଣ୍ଣ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଓ ଊନବିଂଶ ଶତାବ୍ଦୀର ଆରମ୍ଭ ଗଜଲ୍‌ର ଉତ୍କର୍ଷର ସମୟ । ଅବଶ୍ୟ ସମୟ ବଦଳିବା ସଙ୍ଗେ ସଙ୍ଗେ ଗଜଲ୍ ବି ବଦଳିବାକୁ ଆରମ୍ଭ କଲାଣି । ଆଗେ ଗଜଲ୍‌ରେ ଗୋଟିଏ ପଦ ସହିତ ଅନ୍ୟ ପଦର ପ୍ରାୟ କୌଣସି ସମ୍ବନ୍ଧ ନଥିଲା, ଏବେ କିନ୍ତୁ ପ୍ରତ୍ୟେକ ପଦ ଏକ ମୂଳଭାବର ଅନୁପୂରକ ହେବା ଉପରେ ଗୁରୁତ୍ୱ ଦିଆଯାଉଛି ।

ଏ ସଂସ୍କୃତିକୁ ମୁସଲ୍‌ମାନ ସଂସ୍କୃତି କହିବା ଭୁଲ ହେବ । ରାଜକାର୍ଯ୍ୟ ସହିତ ସଂପୃକ୍ତ ହିନ୍ଦୁମାନେ ମଧ୍ୟ ଫାର୍ସି ଶିଖିଥିଲେ ଏବଂ ହିନ୍ଦୀ-ଫାର୍ସି ମିଶା ଉର୍ଦ୍ଦୁକୁ ଗ୍ରହଣ

କରନେବାରେ ସେମାନଙ୍କର କିଛି ଆପତ୍ତି ନଥିଲା । ଏ ସଂସ୍କୃତିକୁ ତେଣୁ ମୁସଲମାନ ସଂସ୍କୃତି ନକହି ଉତ୍ତର ଭାରତର ନାଗରିକ ସଂସ୍କୃତି କହିବା ଅଧିକ ସମୀଚୀନ ହେବ ।

ଗଜଲ୍ ସାହିତ୍ୟରେ କେତୋଟି ଭାବଧାରା ଓ ଶବ୍ଦ ବହୁଳ ପ୍ରଚଳିତ ଏବଂ ପାଠକ (ବା ଶ୍ରୋତା) ଏହାର ପରିବେଶ ତଥା ବିଶେଷ ଅର୍ଥ ବୁଝନ୍ତି ବୋଲି ଧରି ନିଆଯାଇଥାଏ । ଏପରି ବିଶେଷ ଅର୍ଥ ସହିତ ଓଡ଼ିଆ ପାଠକମାନେ ପରିଚିତ ନଥିବାରୁ ସାମାନ୍ୟ ସୂଚନା ଦେବା ଅପ୍ରାସଙ୍ଗିକ ହେବ ନାହିଁ ବୋଧହୁଏ ।

ପ୍ରିୟା (ମାଶୁକ୍, ସନମ୍ ଇତ୍ୟାଦି)—ଆଗରୁ କୁହାଯାଇଛି, ଉର୍ଦ୍ଦୁ ସାହିତ୍ୟରେ ପ୍ରିୟା ଅତ୍ୟନ୍ତ ନିଷ୍ଠୁର । ସେ ଖୁବ୍ ରୂପଗର୍ବିତା ମଧ୍ୟ । ପ୍ରେମିକର ଦୁଃଖ ଏଥିକରେ ସରେ ନାହିଁ; ତାର ଚରମ ନିଷ୍ଠୁରତା ହେଲା ପ୍ରେମିକ ଆଗରେ ତାର ପ୍ରତିଦ୍ୱନ୍ଦ୍ୱୀ ପ୍ରତି କୃପା । ଏକାଧିକ ପ୍ରେମିକଙ୍କୁ ମାଙ୍କଡ ନାଚ ନଚେଇବା ତା ପକ୍ଷରେ ଆମୋଦଦାୟକ । ଏଥିଲାଗି କିନ୍ତୁ ପ୍ରେମିକର କୌଣସି କ୍ଷୋଭ ନାହିଁ । ତାର ସମର୍ପଣ ସମ୍ପୂର୍ଣ୍ଣ । ସେ କିଛି ଆଶା ରଖିନାହିଁ । ଏପରି ପ୍ରିୟାର ଉପମା ହେଲା 'ଶମା' ବା ଦୀପଶିଖା ଓ ପ୍ରେମିକ ହେଲା 'ପରୱାନା' ବା ପତଙ୍ଗ । ପତଙ୍ଗ ଶିଖା ପ୍ରତି ଆକର୍ଷିତ ହୋଇ ପୋଡ଼ି ମରେ ସତ, କିନ୍ତୁ ଶିଖାର ପରିଣତି କଣ ? ସେ ବି ତ ଜଳି ଜଳି ମରେ । ଶେଷକୁ ରହିଯାଏ ପୋଡ଼ା ସଳିତା ଓ କିଛି ଧୂଆଁ । ଆମ ସାହିତ୍ୟରେ ରାଧା ପ୍ରେମପାଗଳିନୀ, କିନ୍ତୁ ଏଠି ଓଲଟା । ଏଠି ପ୍ରେମିକ ପାଗଳ । ସେ ପାଗଳ ହୋଇ ମରୁଭୂମିରେ ତାର ପ୍ରିୟା ଲୈଲିକୁ ଖୋଜୁଥାଏ । ଏହାର ଆଧ୍ୟାତ୍ମିକ ଅର୍ଥ ମଧ୍ୟ ଅଛି । ବିଶେଷ କରି ସୁଫିମାନେ ପ୍ରେମର ଭାଷାରେ ଆଧ୍ୟାତ୍ମିକ ଭାବ ପ୍ରକାଶ କରିଥାନ୍ତି । ପ୍ରେମିକା ପରମାତ୍ମା ଯାହାକୁ ପ୍ରେମିକରୂପୀ ଜୀବାତ୍ମା ସଂସାରର ମରୁଭୂମିରେ ଖୋଜି ଖୋଜି ବୁଲୁଥାଏ । ଲୈଲି ଈଶ୍ୱର, ମଜନୁ ସାଧକ ।

ମଦ୍ୟ (ମସ୍ତ୍, ଶରାବ୍ ଇତ୍ୟାଦି)—ଇସ୍‌ଲାମ ଧର୍ମରେ ମଦ୍ୟପାନ ହରାମ୍ ବା ଅତ୍ୟନ୍ତ ପାପକାର୍ଯ୍ୟ । ଉର୍ଦ୍ଦୁ ସାହିତ୍ୟଟା ଯାକ କିନ୍ତୁ ମଦ୍ୟର ପ୍ରଶଂସାରେ ପୂର୍ଣ୍ଣ । ମୁଲ୍ଲାମାନଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସମାଜରେ ମଦ୍ୟପାନ କିଛିଟା ଗୃହୀତ ହୋଇ ଯାଇଥିଲା । ଏହାକୁ ମୁଲ୍ଲାଶାହୀ ବିରୁଦ୍ଧରେ ଏକ ବିଦ୍ରୋହ ଭାବେ ଧରାଯାଉଥିଲା । ମଦ୍ୟପାନ ଧର୍ମଗୁରୁ ମାନଙ୍କ ଦ୍ୱାରା ନିନ୍ଦିତ ହେବା ସତ୍ତ୍ୱେ ସମାଜରେ ଘୃଣ୍ୟ ବିବେଚିତ ହେଉ ନଥିଲା । ମଦ୍ୟଶାଳାରେ ୟାର୍ ଦୋସ୍ତମାନଙ୍କ ସଙ୍ଗସୁଖ ଲାଭ କରିବା ଏବଂ ସାକୀ ସହିତ କିଞ୍ଚିତ୍ ପ୍ରେମାଳାପ କରିବା ନାଗରିକ ସଭ୍ୟତାର ଅଂଶ ଭାବେ ଗୃହୀତ ହୋଇଯାଇଥିଲା । ଅନେକ କ୍ଷେତ୍ରରେ ସାକୀ ବା ମଦ୍ୟ ପରିବେଷିକା ଓ ନିଷ୍ଠୁର ପ୍ରିୟା ଏକ ବ୍ୟକ୍ତି । ଏଣୁ ମଦ୍ୟଶାଳା ବା ମୈଖାନାର ସାହିତ୍ୟିକ ପ୍ରତିଷ୍ଠା ବିପୁଳ । କାଳକ୍ରମେ ଏହା ଏକ ଉପମାରେ ପରିଣତ ହେଲା । ଅନେକ ଆସ୍ତିକନିଷ୍ଠ ମୁସଲମାନ କବି ମଧ୍ୟ

ଏହି ମଦିରା ରୂପକ ବ୍ୟବହାର କରିବାକୁ ବାଧ୍ୟ ହେଲେ । ତେବେ ଏହା ସ୍ୱୀକାର କରିବାକୁ ହେବ ଯେ ଅଧିକାଂଶ କବି କଷ୍ମିତ୍ ପାନ କରିବା ପ୍ରତି ବିମୁଖ ନଥିଲେ ଏବଂ ଅନେକ କ୍ଷେତ୍ରରେ ପାନର ପରିମାଣ କଷ୍ମିତ୍ ଅପେକ୍ଷା ଯଥେଷ୍ଟ ବେଶି ଥିଲା । ଅନେକ ସମୟରେ କବି ମଦ ନଖାଇବାକୁ ପ୍ରତିଜ୍ଞା ବା ତୋବା କରେ, କିନ୍ତୁ ଏପରି ପ୍ରତିଜ୍ଞା ରକ୍ଷାକରିବା ମୁସ୍କିଲ୍ । ସାଗର ଅର୍ଥାତ୍ ପିଆଲା ଓ ମୀନା ଅର୍ଥାତ୍ ମଦ୍ୟପାତ୍ର ଅତ୍ୟନ୍ତ ପ୍ରିୟ ବସ୍ତୁ । ଗୋଟିଏ ଶେର୍ ଦେଖନ୍ତୁ—

ଗୋ ହାଥକୋ ଜୁମ୍ବିସ୍ ନହିଁ, ଆଁଖୋଁ ମେଁ ତୋ ଦମ ହୈ
ପଡ଼ାରହନେ ଦୋ ଅଭି ସାଗର୍-ଓ-ମୀନା ମେରେ ଆଗେ ।

(ହାତ କ୍ରିୟାହୀନ, ପାତ୍ର ଉଠାଇ ପାରିବ ନାହିଁ, କିନ୍ତୁ ଦୃଷ୍ଟିରେ ତ ଶକ୍ତି ଓ ଇଚ୍ଛା ଅଛି । ପିଆଲା ଓ ମଦ୍ୟପୂର୍ଣ୍ଣ ସୁରେଇ ମୋ ଆଗରେ ଥାଉ)

ଓ୍ୱାଇଜ୍, ନାସେହ—ଆକ୍ଷରିକ ଅର୍ଥ ହେଲା ଧର୍ମଯାଜକ । ଏମାନଙ୍କୁ ସ୍ଥଳ ବିଶେଷରେ ଶେଖ୍ କୁହାଯାଏ । ସାଧାରଣ ଅର୍ଥରେ ଏମାନେ ମୁଲ୍ଲା ବା ମୌଲବୀ । ଉର୍ଦ୍ଦୁ ସାହିତ୍ୟରେ ଏମାନେ ଉପହାସର ପାତ୍ର, ଅନେକ କ୍ଷେତ୍ରରେ ଭଣ୍ଡ, ପ୍ରାୟ ସବୁକ୍ଷେତ୍ରରେ ପ୍ରଚୁର ଶାସ୍ତ୍ରଜ୍ଞାନ ଥିବା ସତ୍ତ୍ୱେ କାଣ୍ଡଜ୍ଞାନବର୍ଜିତ । ମାନବିକ ମୂଲ୍ୟବୋଧ-ଠାରୁ ଏମାନେ ବହୁତ ଦୂରରେ । ଧର୍ମନାମରେ ଏହି ଧର୍ମଧ୍ୱଜମାନଙ୍କର ଅତ୍ୟାଚାର ବିରୁଦ୍ଧରେ କବିମାନେ ସେମାନଙ୍କର ସ୍ୱର ଉତ୍ତୋଳନ କରିଥିଲେ । ଯଦିଓ ଭାରତରେ ଇସ୍‌ଲାମୀ ବିଦ୍ୟାଚର୍ଚ୍ଚା ଯଥେଷ୍ଟ ଉନ୍ନତ ଥିଲା ଓ ଭାରତର ମୌଲବୀମାନେ ଇସ୍‌ଲାମୀ ଜଗତରେ ଏକ ସମ୍ମାନାସ୍ପଦ ସ୍ଥାନ ଅଧିକାର କରି ପାରିଥିଲେ, ସେମାନଙ୍କର ଦୁନିଆଁ ଥିଲା ମଦ୍‌ରସା ଓ ମସ୍‌ଜିଦ୍‌ର ଦୁନିଆଁ ଯାହା ସାହିତ୍ୟର ମହଫିଲ୍ ଓ ମୁଶାୟରାର ଦୁନିଆଁଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

କିୟାମତ୍, ମହଶର୍ ଇତ୍ୟାଦି—ଏହାର ଅର୍ଥ ଶେଷ ବିଚାରର ଦିନ । ଇସ୍‌ଲାମ ଓ ଖ୍ରିଷ୍ଟଧର୍ମରେ ସ୍ୱୀକୃତ ଯେ ପୃଥିବୀର ଶେଷ ଦିନ ଦେବଦୂତ ଜିବ୍ରାଇଲ୍ (ଇଂରାଜୀରେ ଗାବ୍ରିଏଲ୍) ଡାକ ଦେବେ ଏବଂ ସମସ୍ତ ମୃତବ୍ୟକ୍ତି ଉଠି ଆସିବେ ଓ ସେମାନଙ୍କ ପାପ ପୁଣ୍ୟର ବିଚାର ହେବ । ଏହା ତ ହେଲା ଧର୍ମର କଥା । ସାହିତ୍ୟର ଶେଷଦିନର ତାତ୍ପର୍ଯ୍ୟ ଟିକିଏ ଅଲଗା । ମୃତ ବ୍ୟକ୍ତିମାନଙ୍କ ସହିତ ନିଷ୍ଠୁର ପ୍ରିୟାକୁ ମଧ୍ୟ ନିଜର ସମସ୍ତ କୁକାର୍ଯ୍ୟର କୈଫିୟତ୍ ଦେବାକୁ ହେବ । ପ୍ରେମିକ ସେଠାରେ ଉପସ୍ଥିତ ଥିବ । ତା ପକ୍ଷରେ ପ୍ରିୟାର ଏ ଦୁର୍ଦ୍ଦଶା ଅସହ୍ୟ । ସେ ନିଜ ଉପରକୁ ଦୋଷ ନେଇ ପ୍ରିୟାର ଓକିଲାତି କରିବାକୁ ଚେଷ୍ଟା କରିବ ।

ବୁତ୍, ସନମ୍—ଅକ୍ଷରିକ ଅର୍ଥ ପ୍ରତିମା । ସୁନ୍ଦରୀ ପାଷାଣୀ ପ୍ରିୟା ପ୍ରତି ପ୍ରଯୁଜ୍ୟ ।

ବୁତ୍‌କଦା—ପ୍ରତିମା ଥିବା ସ୍ଥାନ, ଅର୍ଥାତ୍ ହିନ୍ଦୁ ମନ୍ଦିର । ପାଷାଣୀ ପ୍ରିୟାର ଘର ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ । ପ୍ରତିମା ପୂଜା ବିରୋଧୀ ଇସ୍‌ଲାମୀ ଚିତ୍ତବୃତ୍ତି ପକ୍ଷରେ ଏପରି ସ୍ଥାନ ବର୍ଜ୍ଜନୀୟ, କିନ୍ତୁ ବୁତ୍‌କଦାର ଆକର୍ଷଣ ଦୁର୍ବାର । ତାର କାରଣ ସେହି ସୁନ୍ଦରୀ ପ୍ରତିମା ।

ହରମ୍—ପବିତ୍ର ଗୃହ, ଅର୍ଥାତ୍ ମସ୍‌ଜିଦ୍ । ଦୁଇଟି କାରଣରୁ କବି ସାଧାରଣତଃ ଏହାଠାରୁ ବହୁତ ଦୂରରେ । ପ୍ରଥମତଃ, ମୁଲ୍ଲାମାନଙ୍କର ଧର୍ମାନ୍ଧତା ଓ ମାନବିକ ମୂଲ୍ୟବୋଧର ଅଭାବ । ଦ୍ୱିତୀୟତଃ ସେ ପାଷାଣୀ ପ୍ରିୟାର ପ୍ରେମ ଏପରି ସର୍ବଗ୍ରାସୀ ଯେ ଈଶ୍ୱରଙ୍କ ଲାଗି ହୃଦୟରେ ଆଉ ଯାଗା କାହିଁ ? ମୋମିନ୍‌ଙ୍କର କଲମ୍ (କଲମରୁ ଯାହା ବାହାରିଲା, ଅର୍ଥାତ୍ ଲେଖା) ଶୁଣନ୍ତୁ—

ଉମ୍ର ସାରି ତୋ କଟି ଇସ୍‌କ୍-ଏ-ବୁତାଁ ମେ ମୋ ମୋମିନ୍
ଅବ୍ ଆଖିର୍ ଓ୍ୱକ୍ତ ମେଁ କ୍ୟା ଖାକ୍ ମୁସଲମାଁ ହୋଗେ ।

ଅର୍ଥାତ୍, ହେ ମୋମିନ୍, ସାରା ଜୀବନ ତ ସେହି ପ୍ରତିମାର ପ୍ରେମରେ କଟିଲା, ଶେଷ ସମୟରେ କି ମୁସଲମାନ ହେବୁ ? (ଅବଶ୍ୟ ଏଥିଲାଗି ତାଙ୍କର ବିଶେଷ ଦୁଃଖ ଥିଲା ପରି ମନେ ହୁଏନାହିଁ ) ।

ଇମାନ୍—ଆକ୍ଷରିକ ଅର୍ଥ ବିଶ୍ୱାସ, କିନ୍ତୁ ସାଧାରଣତଃ ଇସ୍‌ଲାମ୍ ଧର୍ମରେ ଆସ୍ଥା ବୁଝାଏ । କବି ଦୃଷ୍ଟିରେ ପ୍ରେମ ତୁଳନାରେ ଏହାର ମୂଲ୍ୟ ନଗଣ୍ୟ ।

ଓ୍ୱଫା—କୌଣସି ବ୍ୟକ୍ତି ବା ଆଦର୍ଶ ପ୍ରତି ନିଷ୍ଠା । ଗତାନୁଗତିକ ଆଚାରବାଦ ଅପେକ୍ଷା ମହତ ବୋଲି ସ୍ୱୀକୃତ । ପ୍ରେମିକ ବା ଆଶିକ୍ ଏଥିଲାଗି ପ୍ରାଣ ଦେବାକୁ ସବୁବେଳେ ପ୍ରସ୍ତୁତ, କିନ୍ତୁ ପ୍ରେମିକା ବା ମାଶୁକ୍ ଅଧିକାଂଶ କ୍ଷେତ୍ରରେ 'ବେଓ୍ୱଫା' ।

ଶୌକ୍—ଏ ଶବ୍ଦଟିର ବ୍ୟଞ୍ଜନା ଏତେ ବ୍ୟାପକ ଯେ ଏହାର ଆକ୍ଷରିକ ଅର୍ଥ ବାହାର କରିବା କଷ୍ଟକର । ଏକାଧାରରେ ଏହା ହୃଦୟର ଆବେଗ ତଥା ବ୍ୟକ୍ତିତ୍ୱର ବିକାଶ ବୁଝାଇଥାଏ । ଏହା ମନୁଷ୍ୟକୁ ଗତାନୁଗତିକତା ଛାଡ଼ି ଅମଡା ବାଟରେ ଚାଲିବାର ପ୍ରେରଣା ଦିଏ । ଏହାର ପରିଣାମରେ ବହୁତ କଷ୍ଟ ମିଳେ, କିନ୍ତୁ ଏହା ଫଳରେ ହିଁ ବ୍ୟକ୍ତିତ୍ୱ ବିକଶିତ ହୁଏ । ଗାଲିବ୍‌ଙ୍କର ଦୁଇଟି କଲାମ ଏଠାରେ ଉଲ୍ଲେଖ କରାଯାଇପାରେ—

୧ । ଶୌକ୍ ହର୍ ରଂଗ୍ ମେଁ ରକୀବେ ସରେ ସାମାଁ ନିକଲା
କୈସ୍ ତସ୍‌ବିର୍ କେ ପର୍ଦେ ମେଁ ଭି ଉରିୟାଁ ନିକଲା ।

(ଶୈର୍ ପ୍ରତି ରୂପରେ ଯାଯାବର ସୁଖ ସ୍ୱାଚ୍ଛନ୍ଦ୍ୟର ଶତ୍ରୁ । ଦେଖ, ମଜନୁକୁ କେହି ଚିତାରେ ମଧ୍ୟ ବସ୍ତ୍ର ଦେଉନାହିଁ । ସେ ଜୀବନରେ ଯେପରି ବସ୍ତ୍ରହୀନ, ଚିତାରେ ମଧ୍ୟ ସେହିପରି ରହିଗଲା) ।

୨ । ପହନ୍ ଗରିଡନ୍‌ହା-ଏ-ଦିଲ୍ ବଜ୍ ମେ ନାଖୁନେ ଗର୍ଦବାଦ୍
ଲଜ୍ଜତେ-ଅକ୍ଦେ-କୁଶାଦେ-ଉକ୍ଦା-ଏ ମୁସ୍କିଲ୍ ନପୁଛ୍ ।

(ହେ ହୃଦୟ, ତୋର ନଖକୁ ଆହୁରି ବିସ୍ତାରିତ କର । ଝଡ଼ର ଆନନ୍ଦରେ ମିଶି ଯା । କଠିନ ଗ୍ରନ୍ଥି ଉନ୍ମୋଚନ କରିବାର ଆନନ୍ଦ ଅବର୍ଣ୍ଣନୀୟ) ।

ରକୀବ୍ ବା ଉଦୁ—ଏହି ମହାନୁଭବଙ୍କ ସହଯୋଗ ବ୍ୟତିରେକେ ଉର୍ଦ୍ଦୁ କବିତାର ଗାଡ଼ି ଗଡ଼ିବା ପ୍ରାୟ ଅସମ୍ଭବ ହୋଇ ପଡ଼ିଥାନ୍ତା । ଓଡ଼ିଆରେ 'ପ୍ରତିଦ୍ୱନ୍ଦୀ' ଏହାର ସବୁଠାରୁ ନିକଟବର୍ତ୍ତୀ ଶବ୍ଦ । ତା ପ୍ରତି ପ୍ରିୟାର କୃପାକଟାକ୍ଷ ପ୍ରେମିକର ହୃଦୟକୁ ସର୍ବଦା ବିଦ୍ଧ କରୁଥାଏ, କିନ୍ତୁ ରକୀବ୍ ନଥିଲେ ଶାଶ୍ୱତ ତ୍ରିଭୁଜ ( eternal triangle ) ସୃଷ୍ଟି ହୁଅନ୍ତା ନାହିଁ କି ଅନେକ କବିତାର ଉପାଦାନ ମିଳିନଥାନ୍ତା ।

ଗୋଟିଏ ଶ୍ରେଷ୍ଠ ଗଜଲ୍ ଓ ତାର ଓଡ଼ିଆ ଅନୁବାଦ ଦେଇ ଏ ପ୍ରବନ୍ଧଟି ଶେଷ କରିବି । ଗଜଲ୍‌ଟି ମୀର୍ ତକି ମୀର୍‌ଙ୍କର । ସେ ହେଲେ ପ୍ରାଚୀନମାନଙ୍କ ମଧ୍ୟରେ ମହାନ୍ । ଭାଷାର ସରଳତା ଓ ଅର୍ଥର ଗାମ୍ଭୀର୍ଯ୍ୟ ନିମିତ୍ତ ତାଙ୍କର କବିତା ପ୍ରସିଦ୍ଧ । ଗାଲିବ୍‌ଙ୍କ ପରି କବି ମଧ୍ୟ ତାଙ୍କୁ ଉସ୍ତାଦ ବା ଗୁରୁ ବୋଲି ସ୍ୱୀକାର କରିଛନ୍ତି । ହୃଦୟର ଆବେଗକୁ ସେ ଯେପରି ସରଳ, ମଧୁର ଭାଷାରେ ପ୍ରକାଶ କରିଛନ୍ତି ତାହା ଅନ୍ୟତ୍ର ବିରଳ । ଅନୁବାଦ ଯେ ଯଥାର୍ଥ ହୋଇପାରିନାହିଁ ସେ କଥା ମୁଁ ମୂଳରୁ ମାନିନେଉଛି ।

ମେହେର କି ତୁଝ୍ ସେ ତଓକ୍କୋ ଥି ତୁ ସିତମ୍‌ଗର୍ ନିକ୍ଲା
ମୋମ୍ ସମଝେ ଥେ ହମ୍ ଜିସ୍‌କୋ ଓ୍ୱହ ପତ୍‌ଥର୍ ନିକଲା ।

(ତୋଠାରୁ କରୁଣାର ଭରସା ଥିଲା, କିନ୍ତୁ ଶେଷରେ ତୁ ନିଷ୍ଠୁର ହେଲୁ । ମୁଁ ଯାହାକୁ ମହମ ପରି କୋମଳ ଭାବିଥିଲି, ସେ ପ୍ରକୃତରେ ପାଷାଣ ଥିଲା । )

ଜାତେ ଜୀ ଆହ୍ ତେରେ କୁଚେ ସେ କୋଇ ନଫିରା
ଜୋ ସିତମ୍‌ଦିଦ୍ ରହା ଓ୍ୱହ ତୋ ମର୍ କର୍ ନିକ୍ଲା ।

(ତୋ ଦୁଆରୁ କେହି ବଞ୍ଚିକରି ଫେରି ନାହିଁ । ଯେ କେବଳ ଦେଖଣାହାରୀ ହୋଇ ତୋର ଅଭ୍ୟନ୍ତର ଦେଖିବାକୁ ଯାଇଥିଲା, ସେ ବି ଶବଟିଏ ହୋଇ ଲେଉଟିଲା ।)

ଅଶ କେ ତର୍, କତରାଏ ଖୁଁ, ଲଖେତ ଜିଗର୍, ପାରା-ଏ-ଦିଲ୍
ଏକ୍ ସେ ଏକ୍ ଅଦଉ୍ ଆଁଖ୍ ସେ ବହିକର୍ ନିକଲା ।

( ମୋ ଆଖିରୁ କଣ ନ ବୋହିଲା ! ପ୍ରଥମେ ଅଶ୍ରୁ, ତାପରେ ବୁନ୍ଦ୍ ବୁନ୍ଦ୍ ରକ୍ତ, ଶେଷରେ ଖଣ୍ଡ ଖଣ୍ଡ ହୋଇଯାଇଥିବା ହୃଦୟର ନିର୍ଯାସ । ଗୋଟିକରୁ ଗୋଟିଏ ଆତୁର ପୀଡ଼ାଦାୟକ ) ।

ହମ୍‌ନେ ଜାନା ଥା କ ତୁ ଲିଖେଗା କୋଇ ହର୍ଫ୍, ଏ ମୀର
ତେରା ନାମା ତୋ ଶୌକ୍‌କା ଏକ୍ ଦଫ୍‌ତର୍ ନିକ୍‌ଲା ।

(ହେ ମୀର୍, ମୁଁ ଭାବିଥିଲି ତୁ ଅଳ୍ପକିଛି ଲେଖିବୁ, କିନ୍ତୁ ତୋ ପତ୍ର ତ ଆକାଂକ୍ଷାର ଏକ ପୂରାପୂର ସିରସ୍ତା । )



# ମୋଗଲାଇ

ଆଜକାଲି ଦୁଇଟି ଜିନିଷ କଥା ଖୁବ୍ ଶୁଣାଯାଉଛି । ଗୋଟିଏ ହେଲା କଣ୍ଟିନେଣ୍ଟାଲ୍ । ଏହା ଚପ୍ କଟ୍‌ଲେଟର ଏକ ଅଭିଜାତ ସଂସ୍କରଣ । ଅନ୍ୟଟି ହେଲା ମୋଗଲାଇ । ତେବେ ଏହି କଣ୍ଟିନେଣ୍ଟାଲ୍ ସମ୍ବନ୍ଧରେ ସାଧୁ ସାବଧାନ । ଭଲୁଆ ବନିଯିବାର ସମ୍ଭାବନା ପ୍ରଚୁର । ଆପଣଙ୍କର ଚିର ପରିଚିତ ମଟନ୍ ଚପ୍ ହଠାତ୍ ଦୁଇଧାଡ଼ି ଲମ୍ବା ଫରାସୀ ନାଆଁ ଧରି ଉପସ୍ଥିତ, ଯେପରିକି ଆପଣଙ୍କର ଅତି ପରିଚିତ ଯଦୁ ମଧୁ ହଠାତ୍ ତାର ଭିଜିଟିଂ କାର୍ଡ ଧରାଇ- ଶ୍ରୀଯୁକ୍ତ ଯଦୁନାଥ ହରିଚନ୍ଦନ ମାନଧାତା ମହାପାତ୍ର । କିନ୍ତୁ ଯେଉଁ ପ୍ରକାର ଖାଦ୍ୟକୁ ମୋଗଲାଇ କୁହାଯାଏ ସେଥିରେ ଏ ପ୍ରକାର ସମସ୍ୟା ନାହିଁ । ନାମରୁ ହିଁ ମୋଟାମୋଟି ଅର୍ଥ ବୁଝିହେବ । ସ୍ଥଳ ବିଶେଷରେ ଅବଶ୍ୟ ବ୍ୟତିକ୍ରମ ଅଛି, ତେବେ ମଧ୍ୟ ମାମଲା ବିଶେଷ ସଙ୍ଗୀନ ହୁଏ ନାହିଁ । ଧରନ୍ତୁ କୁହାଗଲା ଶାହାଜାହାନୀ ପୋଲାଓ । ଜାଣିଲେ ଯେ ଏହା ପଲାଉ ଏବଂ ଯେହେତୁ ମମତାଜମହଲଙ୍କ ଦେହାନ୍ତ ପରେ ଶାହାଜାହାନ ଏକାଦଶୀ କରୁଥିବାର କୌଣସି ପ୍ରମାଣ ନାହିଁ, ଏଥିରେ ମାଂସ ମଧ୍ୟ ଥିବ । ମୁର୍ଗ ମୁସଲମ ମାନେ ଗୋଟାକୁକୁଡ଼ା, ଏଣୁ ଏହା ଶ୍ରେଷ୍ଠ ଜାତୀୟ । କିନ୍ତୁ କଣ୍ଟିନେଣ୍ଟାଲ ଚକ୍କରରେ ପଡ଼ିଲେ ଦୁରବସ୍ଥା କଥା ଦେଖନ୍ତୁ । ଆପଣ ଏକ ପଞ୍ଚତାରକା ହୋଟେଲର ଫରାସୀ ରେସ୍ତୋରାଁରେ ପହଞ୍ଚିଲେ ଓ ଫରଦ କଲେ LES LEGUMES A LA GRECUQE- ଆସିଲା ଡାଲମା । ଅଥବା ଫରଦ କଲେ CREVETTES GEANTES FRITES TARTARE । ଆପଣ ଏ ମାଲ୍ ଧର୍ମତଲାର ସାଂଗ୍ରିଲାରେ ଖାଇଛନ୍ତି-ନାମ ଗଲ୍‌ଦା ଚିଂଡ଼ି ଫ୍ରାଏ ।

ମୁଁ ଅନେକ ସମୟରେ ଭାବିଛି, ଆମର ଉତ୍ତମ ମାଂସ ରନ୍ଧାକୁ ମୋଗଲାଇ କାହିଁକି କୁହାଯାଏ । ମୋଗଲମାନେ ତ ଏହାକୁ ଏ ଦେଶକୁ ଆଣି ନଥିଲେ । ଏହା ଆଗରୁ ଏହା ଏ ଦେଶରେ ପ୍ରଚଳିତ ଥିଲା । ମୋଗଲମାନଙ୍କର ନିଜସ୍ୱ ଖାଦ୍ୟ ବିଷୟରେ ଯାହା ଜଣାଯାଏ, ସେଥିରେ ଶିକ୍‌କାବାବ୍ ଜାତୀୟ ପକ୍ୱ ମାଂସ ପ୍ରଧାନ ଥିଲା ଆଉ ଏକ ଖାଦ୍ୟର ନାମ ଥିଲା "ଆସ" ଯାହା ଏକ ପ୍ରକାର ଗାଢ଼ ସୁପ୍ ବା ସୁରୁଆ ଜାତୀୟ ଜିନିଷ ଏବଂ ଏହାକୁ ଥଣ୍ଡା ଓ ଗରମ ଉଭୟ ଭାବରେ ଖିଆଯାଉଥିଲା । ଆଉ ଥିଲା ଅନେକ ପ୍ରକାରର ରୁଟି । କିନ୍ତୁ ମୋଗଲାଇର ଦୁଇ କାଣ୍ଡାରୀ ପ୍ରମୁଖ, କୋରମା, ଓ ପୁଲାଓ,

ତାଙ୍କ ଖାଦ୍ୟରେ ନଥିଲା । ବୋଧହୁଏ ମୋଗଲ ସାମ୍ରାଜ୍ୟ କର୍ତ୍ତୀ ଏତେ ବହୁଳ ହେଲା ଯେ ସବୁ ଭଲ ଜିନଷର ନାମ ମୋଗଲ ଦରବାର ସାଙ୍ଗେ ଯୋଡ଼ି ଦିଆଯାଉଥିଲା । ତଦ୍ଦ୍ୱାରା ତାର ଆଭିଜାତ ସ୍ୱୀକୃତ ହେଉଥିଲା । ସେ ସମୟର ବ୍ରାହ୍ମଣ ପଣ୍ଡିତମାନେ ତ କହୁଥିଲେ ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା ।

ଆମେ କଲେଜରେ ପଢ଼ୁଥିବା ବେଳେ ସାଥି ମୁସଲମାନମାନେ ବିରିୟାନୀ ନାମକ ଏକ ଖାଦ୍ୟ ସମ୍ବନ୍ଧରେ ଆମକୁ ଅନେକ ରୂପକଥା ଶୁଣାଉଥିଲେ । ମୋଟାମୋଟି ବକ୍ତବ୍ୟ ହେଲା ଯେ ତମେମାନେ ଖାଇବା କେଉଁଠୁ ଜାଣିବ । ରନ୍ଧା ହୁଏ ନବାବ୍ ରଇସ୍‌ମାନଙ୍କ ଘରେ । ସେଠି ସେରେ ଗୁଣ୍ଡଳ ସାଙ୍ଗେ ଷୋହଳ ସେର ମାଂସ ଓ ଷୋହଳ ସେର ଅସଲ ଗୁଆଘିଅ ଲାଗେ । ତାହାହିଁ ହେଉଛି ପ୍ରକୃତ ବିରିୟାନୀ ଏବଂ କଟକର ଖାନ୍ ହୋଟେଲରେ ଯେଉଁ ମାଲ୍ ମିଳେ ତାହା ପୁରା ଫୋପି । ଅବଶ୍ୟ ସେଥିରେ ମାଲିକର ଦୋଷ ନାହିଁ କାରଣ ସେପରି ବିରିୟାନୀ ଖାଇ ହଜମ କରିବା ଓ ତାର ଉଚିତ ଦାମ୍ ଦେଇପାରିବା ଗ୍ରାହକ କଟକରେ ନାହାନ୍ତି । ଆମେ ମଧ୍ୟ ଭାବି ନେଇଥିଲୁ ହେବ ପରା । କାରଣ ଆମ ପିଲାଦିନେ ଏକ ପ୍ରସିଦ୍ଧ ଓଡ଼ିଆ ରେକର୍ଡ ଥିଲା-ଆସ କଏ ଯେ ସିବରେ ଆଜ ରଜାଘର ଖାନା ସେଠାରେ ଯୋଡା ଯୋଡ଼ା ଆରିସା ପିଠା ଓ ବଡ ବଡ଼ ମିହିଦାନା ସାଙ୍ଗରେ ବିରିୟାନି ଓ ସେପରି ଖାଦ୍ୟର ବର୍ଣ୍ଣନା ନ ଥିବାରୁ ଆମେ ଧରିନେଇଥିଲୁ ଯେ ଓଡ଼ିଆ ପୁଅ ବୋଧହୁଏ ବିରିୟାନୀ ଖାଇବାର ଲାଏକ୍ ନୁହେଁ, ଏଣୁ ମିଆଁଭାଇଙ୍କ କଥା ପୁରାପୂରି ବିଶ୍ୱାସ ଯୋଗ୍ୟ ।

ତାପରେ ଅନେକ ଜାଗାରେ ମୋଗଲାଇ ଖାଇଛି । ଉତ୍ତର ଓ ମଧ୍ୟଭାରତରେ ମୋଗଲାଇ ଅର୍ଥ ପ୍ରାୟ ମୁସଲମାନ ବବୁର୍ଚ୍ଚିଙ୍କ ମାଂସ ରନ୍ଧା ବୋଲି ଧରିନିଆଯାଉଥିଲା । ଗେଷ୍ଟ ହାଉସରେ ପହଞ୍ଚିଲେ ଖାନ୍‌ସମା ପଚାରୁଥିଲା, ମୋଗଲାଇ ନା ନିରାମିଷ ନା ଇଂଲିଶ । ମୋର ନିଜର ପସନ୍ଦ ଇଂଲିଶ୍ ବ୍ରେକ୍‌ଫାଷ୍ଟ, ନିରାମିଷ ଲଞ୍ଚ୍ ଓ ମୋଗଲାଇ ଡ଼ିନର । ପରେ ମୋଗଲାଇ କାହାକୁ କହନ୍ତି ସେ ବିଷୟରେ ମୁଁ କିଛିଟା ଗବେଷଣା କରିଥିଲି । ଏ ବିଷୟରେ ବେଶ୍ କିଛି କଟାକ୍ଷପକ୍ଷ ମଧ୍ୟ ଅଛି । ମୋଟାମୋଟି ଧରାଯାଇପାରେ ଯେ ତନ୍ଦୁରର ରନ୍ଧା ମୋଗଲାଇ ନୁହେଁ । ଏହା ମଧ୍ୟ ଏସିଆରୁ ପଞ୍ଜାବ ଅଞ୍ଚଳକୁ ଆସିଛି । ଖାଣ୍ଟି ମୋଗଲାଇ ରନ୍ଧା ଡ଼େକଚି ଓ ଡାଓ୍ୱା ଦ୍ୱାରାହିଁ ହୁଏ । ତେବେ ମୋଗଲାଇ ଖାନା କଣ ?

ଶାହାଜାଦା ମିର୍ଜା ଆସମାନ୍ କାଦର୍ କେତେକ ରାଜନୈତିକ କାରଣରୁ ଦିଲ୍ଲୀରୁ ଲକ୍ଷ୍ନୌ ଆସିଥିଲେ । ଉଦ୍ଦେଶ୍ୟ, ଲକ୍ଷ୍ନୌର ନବାବ ଓ୍ୱାଜିଦ୍ ଅଲ୍ଲୀ ଶାହଙ୍କୁ ନିଜ ପକ୍ଷକୁ ଆଣିବା । ଶାହାଜାଦା ଦିନେ ନବାବଙ୍କୁ ନିମନ୍ତ୍ରଣ କରିଥିଲେ । ସେଦିନ ରନ୍ଧା ହୋଇଥିଲା –

୧। ପୁଲାଓ ।

୨। ଜର୍ଦ୍ଦା (ପାନର ଜର୍ଦ୍ଦା ନୁହେଁ; ଜର୍ଦ୍ଦା ମାନେ ହଳଦିଆ । ଏହା ଏକ ମିଠା ପୁଲାଓ । ଏଥିରେ ମାଂସ ବଦଳରେ ବାଦାମ, କିସମିସ୍ ଦିଆଯାଏ) ।

୩। ବିର୍ୟାନୀ (ପୁଲାଓ ଓ ବିର୍ୟାନୀର ଗୂଢ଼ ତତ୍ତ୍ୱ ପରେ ଆଲୋଚନା କରାଯିବ) ।

୪। କୋର୍ମା ।

୫। ଶମୀ କବାବ୍ ।

୬। ନର୍ଗିସୀ କୋଫ୍ତା ।

୭। ଗୃହ ପ୍ରକାର ନିରାମିଷ ତରକାରୀ ।

୮। ଅନେକ ପ୍ରକାରର ଚଟଣି ।

୯। ବାଇଗଣ ଓ ଦହିର ରାଇତା ।

୧୦। ରୁଟି (ଲକ୍ଷ୍ନୌରେ ବିଶିଷ୍ଟ ଅତିଥିମାନଙ୍କ ପାଇଁ ତିଆରି ରୁଟି—ରୁମାଲି ରୋଟି ଜାତୀୟ) ।

୧୧। ପରାଠା (ଆମ ପରଟାର ଏକ ଉନ୍ନତ ସଂସ୍କରଣ । ପ୍ୟାଟି ଭଳି ପରତ ପରତ ବାହାରେ ) ।

୧୨। ଶୀରମାଲ (ଦୁଧସର, ମଇଦା ଓ ଖଣ୍ଡର ଏକପ୍ରକାର ପରଟା) ।

୧୩। ଫଳର ମୁରବ୍ବା ।

ପୁଲାଓ ଓ ବିରୟାନୀ ସାଧାରଣ ଦୃଷ୍ଟିରେ ଏକ ବସ୍ତୁ, କିନ୍ତୁ ଏହା ଭିତରେ ପାର୍ଥକ୍ୟ ଅନେକ । ଦିଲ୍ଲୀ ବିରୟାନୀର ରାଜଧାନୀ ଓ ଲକ୍ଷ୍ନୌ ପୁଲାଓର ଦରବାର । ପୁଲାଓରେ ମାଂସର ରସରେ ଚାଉଳ ରନ୍ଧାଯାଏ । ଏହାର ରଙ୍ଗ ଖୁବ୍ ହାଲ୍କା । ବିର୍ୟାନୀରେ ଚାଉଳ ଅଲଗା ଓ ମାଂସ ଅଲଗା ରାନ୍ଧି ଦିରେନ୍ଧା ଅବସ୍ଥାରେ ଉଭୟଙ୍କୁ ମିଶାଇ ରନ୍ଧା ଶେଷ କରାଯାଏ । ବିର୍ୟାନୀରେ ମସଲାର ବ୍ୟବହାର ବେଶି ଓ ସାମାନ୍ୟ ଝୋଲ ଭଳି ସ୍ୱାଦ ହେବା କଥା । ପୁଲାଓ ଯଦି ଭଲ ରନ୍ଧାହୋଇ ନଥାଏ; ତେବେ ସାଧାରଣ ବିର୍ୟାନୀଠାରୁ ନିକୃଷ୍ଟ, କିନ୍ତୁ ଗୁଣୀମାନଙ୍କ ମତରେ ଉତ୍ତମ ପୁଲାଓ ବିର୍ୟାନୀଠାରୁ ବହୁ ଗୁଣରେ ସରସ । ପୁଲାଓ ଓ ବିର୍ୟାନୀର ବିଭିନ୍ନ ପ୍ରକାରର ଫର୍ଦ୍ଦରସ୍ତ ଦେବା ମୋ ପରି ଶାସ୍ତ୍ରାଧିକାରହୀନ ବ୍ୟକ୍ତି ପକ୍ଷରେ ଅସମ୍ଭବ, କିନ୍ତୁ ନବାବ୍ ଓ୍ୱାଜିଦ୍ ଅଲି ଶାହଙ୍କ ଏକ ଭୋଜିରେ ସତୁରି ପ୍ରକାର "ରାଇସ ଡିସ୍" ଅର୍ଥାତ୍ ପୁଲାଓ, ବିର୍ୟାନୀ ଓ ଜର୍ଦ୍ଦା ଇତ୍ୟାଦି ରନ୍ଧା ହୋଇଥିଲା । ପୁଲାଓର ଗୁଣ ହେଲା ସମସ୍ତ ଜିନିଷର ନିର୍ଯାସ ଗ୍ରହଣ କରି ତାକୁ ଅଲକ୍ଷ୍ୟରେ ପ୍ରକାଶ କରିବା । ପୁଲାଓ ଅଳ୍ପ ଖାଇବା କଥା ଓ ଅଳ୍ପଖାଇ ଭୂରିଭୋଜନର ତୃପ୍ତି ଆସିବା କଥା ।

ଲକ୍ଷ୍ନୌ ଦରବାରରେ ହୁକମ ମେହଦୀ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ଥିଲେ ଓ ଅଓ୍ଧର ପ୍ରଧାନମନ୍ତ୍ରୀ ପଦ ଅଲଙ୍କୃତ କରିଥିଲେ । ତାଙ୍କ ପାଖରେ ଜଣେ ପହଲମାନ ଆସି ପହଞ୍ଚିଲେ । ପହଲମାନମାନେ ସାଧାରଣତଃ ଖୁବ୍ ବେଶୀ ଖାଇଥାନ୍ତି । ଏ ମହାଶୟଙ୍କର ରେଶନ ଥିଲା ଦୈନିକ କୋଡ଼ିଏ ସେର ଦୁଧ ଓ ଅଢ଼େଇ ସେର ବାଦାମ ପିସ୍ତା । ଦ୍ୱିପ୍ରହର ଓ ରାତ୍ରି ଭୋଜନ ଲାଗି ପ୍ରତ୍ୟେକ ଥର ଅଢ଼େଇ ସେର ଅଟାର ରୁଟି ଓ ଗୋଟିଏ ଗୋଟିଏ ମଧ୍ୟମ ଧରଣ ଖାସିର ମାଂସ । ହୁକମସାହେବ ତାଙ୍କୁ ନିମନ୍ତ୍ରଣ କଲେ ଓ ଖାଇବାବେଳ ଟିକିଏ ଗଡ଼େଇ ଦେଲେ ଯେପରି ତାଙ୍କର ପେଟ ଜଳିବ । ତା'ପରେ ଗୋଟିଏ ଥାଳିଆରେ କିଛି ପୁଲଉ ଦିଆଗଲା । ପହଲମାନ ତ ରାଗି ଖୁନ୍ । ଏ କି ନିର୍ଦ୍ଦୟ ପରିହାସ ! ବଡ କଷ୍ଟରେ ତାଙ୍କୁ ବୁଝାଇ ଦିଆଗଲା ଯେ ଏହା କେବଳ ଚାଖିବାକୁ ପଠାଯାଇଛି ଓ ଅଳ୍ପ ସମୟ ପରେ ବାକିଟା ଆସିଯିବ । ପହଲ୍‌ମାନ ଥାଳିଆର ପୁଲଉ, ଯାହାକି ତାଙ୍କର ଦୁଇଗୁଣ୍ଡା ହେଲା, ଖାଇଲେ ଓ ସ୍ୱାଦର ତାରିଫ୍ କଲେ । ତା'ପରେ ଶୋଷ ଲାଗିଲା ଓ ଗିଲାସେ ପାଣି ପିଇଲେ । କିଛି ସମୟ ପରେ ଖାନା ଆସିଲା । ବର୍ତ୍ତମାନ ପହଲମାନ କ୍ଷମା ମାଗିଲେ ଓ କହିଲେ ଯେ ତାଙ୍କର ପେଟ ହୋଇଯାଇଛି । ଆଉ କ୍ଷୁଧା ନାହିଁ । ହୁକମ୍ ସାହେବ ତାଙ୍କୁ ବୁଝାଇଲେ ଅଧିକ ଭୋଜନ ମନୁଷ୍ୟର ପକ୍ଷେ ନୁହେଁ । କୋଡ଼ିଏ ତିରିଶ ସେର ତ ଗାଈଗୋରୁଙ୍କ ଖାଦ୍ୟ । ମନୁଷ୍ୟର ଉପଯୁକ୍ତ ଆହାର ଅଳ୍ପ ହେଲେ ମଧ୍ୟ ଶକ୍ତିରେ ଭରପୂର ଓ ସ୍ୱାଦରେ ଉଚ୍ଚକୋଟୀର ହେବା ଦରକାର । କାଲି ଆପଣ ମତେ କହିବେ ଏହି ଅଳ୍ପାହାର ଫଳରେ ଆପଣ କୌଣସି ଦୁର୍ବଳତା ଅନୁଭବ କଲେ କି ? ଅରଦିନ ପହଲ୍‌ମାନ ଆସି ଖବର ଦେଲା ଯେ ଆଗରୁ କେବେ ସେ ଏପରି ସ୍ଫୂର୍ତ୍ତି ଓ ଆରାମ ଅନୁଭବ କରି ନ ଥିଲେ ।

ସେତେବେଳେ ବବୁର୍ଚ୍ଚି ଅର୍ଥାତ୍ ସୁପକାରମାନଙ୍କର ସମ୍ମାନ ପ୍ରଚୁର ଥିଲା । ଲକ୍ଷ୍ନୌ ଦରବାରରେ କେହି କେହି ବବୁର୍ଚ୍ଚି ମାସକୁ ହଜାରେ ଟଙ୍କା ଦରମା ପାଉଥିବାର ରେକର୍ଡ ଅଛି । ସେ ସମୟର ଟଙ୍କାଟିଏ ତ ଆଜିର ଦଶଟଙ୍କା ଠାରୁ ବହୁତ ବେଶୀ । ସେମାନଙ୍କର ବ୍ୟବହାର ମଧ୍ୟ ସେପରି ଥିଲା । ସିପାହୀ ବିଦ୍ରୋହ ପରେ ଦିଲ୍ଲୀ ଇଂରେଜମାନଙ୍କର ଅଧିକାରକୁ ଆସିଲା । ଯେଉଁମାନେ ମୋଗଲ ଦରବାର ଉପରେ ନିର୍ଭରଶୀଳ ଥିଲେ, ସେମାନଙ୍କ ପାଇଁରେ ଦାନାଜନାର ସମସ୍ୟା ଅତି ଉତ୍କଟରୂପ ଧାରଣ କଲା । ସେମାନେ ପେଟ ପୋଡିବା ପାଇଁ ଅନ୍ୟାନ୍ୟ ଜୀବିକା ଯୋଗାଡ଼ କଲେ ବା ନିଜ କୌଳିକ ବ୍ୟବସାୟ ଛାଡ଼ି କୃଷି କରିବା ବା ମଜୁରି କରିବା ଲାଗି ବାଧ୍ୟହେଲେ । ଏହିପରି ଜଣେ ରାନ୍ଧୁଣିଆ ଏକ ଲାଲାଜୀଙ୍କ ପାଖେ ପହଞ୍ଚିଲା । ଲାଲାଜୀ ତ ହିନ୍ଦୁ ବ୍ୟବସାୟୀ, ଏଣୁ ବିରିୟାନିର ପ୍ରଶ୍ନ ନଥିଲା । ଲାଲାଜୀ ତାକୁ ମସୁର ଡାଲି ରାନ୍ଧିବାକୁ କହିଲେ । ସେ ଖର୍ଚ୍ଚ ଲାଗି ପାଞ୍ଚଟଙ୍କା ମାଗିଲା । ଲାଲାଙ୍କ ଚକ୍ଷୁ ସ୍ଥିର । ପାଞ୍ଚଟଙ୍କା ସେ ସମୟରେ ଜଣେ ଅମଲାର ବେତନ । ତେବେ ବି ଲାଲାଜୀ ଟଙ୍କାଟା ଦେଲେ । ତାପରେ ସେତେବେଳେ

ଡ଼ାକ୍ ଆସିଲା, ଲାଲ୍‌ଜୀ ଡ଼ାଲ୍ ତ ଖାଇଲେ, ଡେ଼କ୍‌ଚି ମଧ୍ୟ ଚାଟି ପକାଇଲେ । ଏହା ଦେଖି ସେ ବାବୁର୍ଚ୍ଚି କାର୍ଯ୍ୟରୁ ଇସ୍ତଫା ଦେଇଦେଲା । ଗଲାବେଳକୁ କହିଗଲା, "ୟିହ୍ ମୁହଁ ଅଉର୍ ମଶୁର୍‌କୀ ଦାଲ୍ !" ଅନେକ କଳାକାର ଗାଣ୍ଠିବାନ୍ଧି ଛାଡ଼ିଦେଲେ । ମୋ ନିଜ ଅଭିଜ୍ଞତାରୁ କହିପାରେ ପ୍ରକୃତ ମୋଗଲାଇ ଖବର । ମୋର ଜଣେ ବନ୍ଧୁଙ୍କ ଘରେ ମୁଁ ଅନେକଥର ଖାଇଛି । ଯେଉଁଦିନ ତାଙ୍କ ଘରେ ଖାଏ, ପରେ ଗୋଟିଏ ଓଳି ଖାଇବା ବନ୍ଦ କରିବାକୁ ହୁଏ । ପେଟ ଖରାପ ନ ଥାଏ, ଅଥଚ ଭୋକ ନ ଥାଏ । ଥରେ ବକ୍‌ରିଦ୍ ପର୍ବକୁ ଜଣେ ଖାନଦାନ୍ ମୁସଲମାନଙ୍କ ଘରୁ ସାଧାରଣ ପ୍ଲେଟ୍‌ରେ ଏକ ପ୍ଲେଟ୍ ପୁଲାଓ ଆସିଥିଲା । ତାକୁ ଚାରିଜଣ ତୃପ୍ତିରେ ଖାଇଥିଲେ ।

ମିଠାରେ ସେପରି କିଛି ବିଶେଷତ୍ୱ ନାହିଁ । ଜର୍ଦ୍ଦା ଅର୍ଥାତ୍ ମିଠା ପୁଲାଓର କଥା ତ କହିଛି । ଚାଉଳ ଖିରି ଖୁବ୍ ଲୋକପ୍ରିୟ ଥିଲା । ତାର ମୋଗଲାଇ ନାମ ହେଲା ଶୀରବିରନ୍ । ଅନ୍ୟ ମିଠା ହେଲା ଫିରନି । ଏହା ଚାଉଳ ଚୂନାର ଏକପ୍ରକାର ଅଠାଳିଆ ଜାତୀୟ ଜିନିଷ ଯେଉଁଥିରେ ଖୁବ୍ ମେଓ୍ୱା ପଡ଼ିଥାଏ । ଏହି ଉଭୟ ବସ୍ତୁକୁ ଛୋଟ ଛୋଟ ମାଟି ସରାରେ ଦେବା ଖାନ୍‌ଦାନୀ ବିଧି । ବିବିଧ ପ୍ରକାରର ହାଲୁଆ (ପ୍ରକୃତ ଉଚ୍ଚାରଣ ହଲ୍ୱା) ଅନେକ ସମୟରେ ଦିଆଯାଉଥିଲା । ଶୀତଦିନେ ଗରମ ହାଲୁଆର ବ୍ୟବହାର ବେଶି ଥିଲା । ଖରାଦିନେ କୁଲ୍‌ଫି ଏବଂ ଫାଲୁଦାର (ସେମିଆ ପରି ଏକ ଜିନିଷ) ଖୁବ୍ ପ୍ରଚଳନ ଥିଲା ।

ଏତ ଗଲା ଲଞ୍ଚ୍ ଓ ଡ଼ିନର୍ (ଦ୍ୱିପ୍ରହର ଓ ରାତ୍ରି ଭୋଜନ) । ଜଳଖିଆର କିଛି ମୋଗଲାଇ ସ୍ୱରୂପ ଅଛି କି ? ଆଜ୍ଞା ହଁ, ତେବେ ତା ସହିତ ପରିଚୟ ସାଧାରଣତଃ ହେବା କଷ୍ଟ । ପ୍ରଥମ ହେଲା ନହାରୀ । ଏହା ଏକ ପ୍ରକାର ଷ୍ଟିଉ । ସାଧାରଣତଃ ରାତିରେ ଗୋଟା ମସଲା ସହିତ କେତେଖଣ୍ଡ ହାଡ଼ ଓ ଅଳ୍ପ କିଛି ମାଂସ ବସାଇ ଦିଆଯାଏ । ରାତିଯାକ ହାଲୁକା ନିଆଁରେ ସିଝି ସିଝି ସକାଳକୁ ତିଆରି ହୁଏ । ଏହାକୁ ଖମୀରୀ ରୋଟି (ରୁଟି ଓ ପାଉଁରୁଟିର ମଝାମଝିଆ) ସହିତ ଖିଆହୁଏ । ଅନ୍ୟ ଏକ ଖାଦ୍ୟ ହେଲା ଅଖୁରି—କେତେ କଟା ଅଣ୍ଡା ଭୁଜିଆ ପରି ।

ଖାଇସାରି ପାଣି ପିଇବା ମଧ୍ୟ ମୋଗଲାଇ ହିସାବରେ ଅତି ପରିମାର୍ଜିତ ଭାବେ ହେବା ଦରକାର । ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ଘରେ ପିଇବା ପାଣିର ସୁବନ୍ଦୋବସ୍ତ ଥିଲା ଯାହାର ନାମ ଥିଲା ଆବ୍‌ଦାର୍ ଖାନା । ଉତ୍ତର ଭାରତର ଗରମ ସମ୍ବନ୍ଧରେ ତ ସମସ୍ତେ ଜାଣନ୍ତି । ଏଠି ଥଣ୍ଡା ପାଣି କେତେ ଆବଶ୍ୟକ ତାହା ବୁଝାଇବାକୁ ପଡ଼ିବ ନାହିଁ । ଆଗେ ବରଫ ମିଳୁ ନଥିଲା, ମିଳିଲେ ମଧ୍ୟ ସ୍ୱାସ୍ଥ୍ୟପକ୍ଷେ ନିରାପଦ ନ ଥିଲା । ମାଟି ପାତ୍ରରେ ପାଣିରଖି ତା ମୁହଁରେ କନା ବାନ୍ଧି ଦିଆଯାଉଥିଲା ଏବଂ ସେ କନାକୁ ସର୍ବଦା ଓଦା ରଖାଯାଉଥିଲା । ପାତ୍ରକୁ ବାଲି ଉପରେ ବସା ଯାଉଥିଲା ।

ଯେତକ ଗରମ ପବନ ବୋହୁଥିଲା, ପାଣି ସେତକ ଥଣ୍ଡା ହେଉଥିଲା । ତା ଛଡ଼ା ଦସ୍ତା (zinc) ସୁରେଇର ମଧ୍ୟ ବ୍ୟବହାର ଥିଲା । ଏହି ସୁରେଇକୁ କୁଲ୍‌ଫିବାଲାଙ୍କ ପରି ସୋରା (satpetre) ରେ ରଖା ଯାଉଥିଲା । ଏହାର ପାଣି ଅତ୍ୟନ୍ତ ଥଣ୍ଡା ହେଉଥିଲା । ପିଇବା ଲାଗି କାଚ, ଚନାମାଟି ଇତ୍ୟାଦିର ଅତି ପାତଳା ଓ ଅତି ସୁନ୍ଦର ଗିଲାସ ଓ ବାଟି ବ୍ୟବହୃତ ହେଉଥିଲା । ଗରମ ଦିନରେ ଖାନ୍‌ଦାନୀ ଲୋକେ ସୁନ୍ଦର ମାଟି ପାତ୍ରରେ ପାଣିପିଇବା ପସନ୍ଦ କରୁଥିଲେ । ଏହା ନାମ ଥିଲା ଆବ୍‌ଖୋରା । ମୋର ପିଲାଦିନେ ଗ୍ରାମାଙ୍କ ପ୍ରଗଣାରେ (ପୁରୀ ନନ୍ଦକଟବର୍ତ୍ତୀ ଗ୍ରାମସବୁ) ବୁଢ଼ୀମାନେ ଏକପ୍ରକାର ବଡ଼ ଗିନାକୁ (କଂସାଠାରୁ ସାନ) ଅବ୍‌ଖୁରା କହିବା ଶୁଣିଛି । ଏହା ବୋଧହୁଏ ଆବ୍‌ଖୋରାର ଅପଭ୍ରଂଶ । ଆବ୍ ପାଣି ଓ ଆବ୍‌ଖୋରା ଯେଉଁଥିରେ ପାଣି ପିଆଯାଏ । ପ୍ରଥମ କଥା, ଏହା ଗରମ ହୁଏନାହିଁ, ଏଣୁ ଥଣ୍ଡା ପାଣି ଥଣ୍ଡାହିଁ ରହିବ । ତା'ପରେ ଏଥିରେ ପାଣି ଢାଳି ଦେଲେ ପ୍ରଥମ ବର୍ଷା ପରେ ମାଟିର ସୁଗନ୍ଧ ପରି ଏକ ସୁଗନ୍ଧ ବାହାରେ । ଜୁନ୍ ମାସର ଉତ୍ତପ୍ତ ମଧ୍ୟାହ୍ନରେ ଏ ସୁଗନ୍ଧ କି ତୃପ୍ତିକର ତାହା ସହଜରେ ଅନୁମେୟ ।

ବର୍ତ୍ତମାନ ମୋଗଲାଇର ମୋଗଲାଇତ୍ୱ ବିଷୟରେ ଆପଣଙ୍କର କିଛି ଧାରଣା ହୋଇଥିବ । ମୋଗଲାଇର ବିଶେଷତ୍ୱ ଏକ ପରିମାର୍ଜିତ ରୁଚି ଯାହାକୁ ଉର୍ଦ୍ଦୁରେ ନଫାସତ୍ କୁହାଯାଏ । ଇଂରାଜୀରେ Sophistication ଓ delicacy ଏ ଉଭୟର ଏକ ସମନ୍ୱୟ । ଏଥିରେ ବାହୁଲ୍ୟକୁ ଯଥେଷ୍ଟ ପରିମାଣରେ ବାଦ ଦେବାକୁ ହୁଏ । ଏହି ଖାଦ୍ୟ ନିଜ ଗୁଣରେ ଗରିଷ୍ଠ ହୋଇଥିବାରୁ ଅଳ୍ପ ଖାଇବା ଉଚିତ୍ । ତେବେ ପୃଥିବୀର ସବୁଠାରେ ନାନା ମୁନିଙ୍କର ନାନା ମତ । ବେଦ ବେଦାଙ୍ଗର ଯେତେବେଳେ ଶାଖା ଅଛି ମୋଗଲାଇର ବି ନ ହୁଅନ୍ତା କିପରି ? ମୋଗଲାଇ କଳାର ତିନିଟି ସ୍କୁଲ୍ ବା ଶାଖା ସର୍ବବାଦୀ ସମ୍ମତ । ପ୍ରଥମ ଦିଲ୍ଲୀ ଓ ଦ୍ୱିତୀୟ ଲକ୍ଷ୍ନୌ । ତା ବିଷୟରେ ତ ଆଗରୁ କିଛି ଆଲୋଚନା ହୋଇଯାଇଛି । ଦିଲ୍ଲୀ ଓ ଲକ୍ଷ୍ନୌର ରନ୍ଧାରେ ତଫାତ୍ କେତେକଟା ଲାଲ୍‌କିଲ୍ଲା ଓ ବଡ଼ାଇମାମ୍‌ବାଡ଼ାର ସ୍ଥାପତ୍ୟରେ ପ୍ରଭେଦ ପରି । Baroque ବା ଅତ୍ୟଳଙ୍କରଣ ଲକ୍ଷ୍ନୌର ସଂସ୍କୃତିର ଲକ୍ଷଣ ଏବଂ କି ସାହିତ୍ୟ, କି ସ୍ଥାପତ୍ୟ, କି ସଙ୍ଗୀତ, କି ରନ୍ଧନ ସବୁଥିରେ ସ୍ପଷ୍ଟ । ତେବେ ଏକଥା ମଧ୍ୟ ସତ ଯେ ଦିଲ୍ଲୀ ଭାଙ୍ଗି ଲକ୍ଷ୍ନୌ ଗଢ଼ା ହୋଇଛି । ଅର୍ଥାତ୍ ଦିଲ୍ଲୀର ଚରମ ଦୁର୍ଦ୍ଦିନ ଓ ଲକ୍ଷ୍ନୌର ଅଭ୍ୟୁଦୟ ସମସାମୟିକ । ଏଣୁ ବହୁ ଗୁଣୀଜନ ପେଟ ପୋଷିବାକୁ ଦିଲ୍ଲୀରୁ ଲକ୍ଷ୍ନୌ ଯାଇଥିଲେ । ଏ ଦୁହିଁଙ୍କର ସମ୍ପର୍କ ତ ନାଡ଼ିର ସମ୍ପର୍କ । କିନ୍ତୁ ମୋଗଲାଇର ଆଉ ଏକ ଶାଖା ଦକ୍ଷିଣ ଭାରତର ହାଇଦ୍ରାବାଦରେ ସ୍ୱାଧୀନ ଭାବରେ ବିକଶିତ ହୋଇଥିଲା । ଏହା ହାଇଦ୍ରାବାଦୀ ଉର୍ଦ୍ଦୁ ପରି । ଏହା ଉପରେ ମରିଚର ପ୍ରଭାବ ସ୍ପଷ୍ଟ । ସାଧାରଣ ଉର୍ଦ୍ଦୁର ଲୋଗୋଁ, ବାତେଁ, ହମ୍, କଦମ ଯେପରି ହୋଇଯାଏ

ଦୋଗାଁ, ବାର୍ତାଁ, ଅପନ୍, ଖଜନ୍ ଇତ୍ୟାଦି । ହାଇଦ୍ରାବାଦୀ ରନ୍ଧାରେ ଝାଲ ଯଥେଷ୍ଟ ବେଶୀ, ବିଶେଷ କରି ଗୋଲମରିଚ । ଖାଇବାକୁ ଅତି ସୁସ୍ୱାଦୁ, କିନ୍ତୁ ଟୋପି ଟୋପି ଚନ୍ଦନ ପରି କପାଳରେ ଟୋପି ଟୋପି ଚନ୍ଦନ ଦେଖାଯାଇପାରେ । ଏ ରନ୍ଧାର ପରାକାଷ୍ଠା କିମ୍ମା (ହାଇଦ୍ରାବାଦୀ ଉଚ୍ଚାରଣ ଖିମା) ଓ କୋଫ୍ତାରେ ତା ଛଡ଼ା ଆଉ ଏକ ଉପଶାଖା ଅଛି, ଯାହାକୁ କୁହାଯାଇପାରେ କଲିକତା ମୋଗଲାଇ । କଲିକତା ତ ଭାରତରେ ପାଶ୍ଚାତ୍ୟ ପ୍ରଭାବ ପ୍ରବେଶର ସିଂହଦ୍ୱାର । ଇଂରେଜ ରାଜତ୍ୱରେ ବହୁ ମୁସଲମାନ ଖାନସମା ଇଂରେଜମାନଙ୍କଠାରେ ଚାକିରି କଲେ ଓ ତାଙ୍କଠାରୁ ରୋଷ୍ଟ, ପାଇ, ପୁଡ଼ିଂ ମଧ୍ୟ ଶିଖିଲେ । କଲିକତା ମୋଗଲାଇରେ କିଞ୍ଚିତ ପାଶ୍ଚାତ୍ୟ ପ୍ରଭାବ ଅଛି । ଆମଜାଦିଆ, ଆମିନିଆ, ନିଜାମ ଇତ୍ୟାଦି କଲିକତାରେ ପ୍ରସିଦ୍ଧ ମୁସଲମାନ ରେସ୍ତୋରାଁ ଏହି ଖାଦ୍ୟ ପରିବେଷଣ କରନ୍ତି । ଚିକେନ୍ ରୋଲ୍ ଜାତୀୟ ଖାଦ୍ୟ କଲିକତିଆ ମୋଗଲାଇର ଅବଦାନ ।

ତା'ଛଡ଼ା କଲିକତାରେ ଆଉ ଏକ ପ୍ରକାର ରୋଷା ଗଢ଼ି ଉଠିଥିଲା । ଏହାର ନାମକରଣ କଷ୍ଟ । ଏହାକୁ ଓଡ଼ିଆ—ବଡ଼ୁଆ କହିଲେ 'ଭୁଲ୍' ହେବନାହିଁ । ପରମ ନମସ୍ୟ କଲର ପରଶୁରାମ ଅର୍ଥାତ୍ ୰ ରାଜଶେଖର ବସୁ ଏହାର ନାମ ଦେଇଥିଲେ ଆଂଲୋ-ମୋଗଲାଇ । ଓଡ଼ିଆମାନେ କଲିକତାରେ ରନ୍ଧନଶିଳ୍ପୀ ହୋଇଥିବା ଅବିଦିତ ନୁହେଁ । ଚଟ୍ଟଗ୍ରାମ ଅଞ୍ଚଳର ବୌଦ୍ଧ ବଡ଼ୁଆମାନେ ମଧ୍ୟ ଏ ବିଦ୍ୟାରେ ଯଶସ୍ୱୀ । ଓଡ଼ିଆ ଓ ବଡ଼ୁଆଙ୍କର କଲିକତାକୁ ଅବଦାନ ହେଲା କେବିନ୍ ଅର୍ଥାତ୍ ଛୋଟ ଛୋଟ ରେସ୍ତୋରାଁ । ଏମାନେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରନ୍ଧନ ଶିଳ୍ପର ଏକ ଅଭୂତପୂର୍ବ ସମନ୍ୱୟ ସୃଷ୍ଟି କରିଛନ୍ତି । ଏଠାରେ ମେନୁରେ ଦେଖିବେ Four Rost, Brast Catlet ଇତ୍ୟାଦି । ଉକ୍ତ Brast (Breast) କଟ୍‌ଲେଟ୍ ପ୍ରକୃତରେ ଅତ୍ୟନ୍ତ ଉପାଦେୟ । ପକ୍ଷୀର ମାଂସରୁ ହାଡ଼ ବାହାର କରି ତାକୁ କୁଟି ମସଲାରେ ଅଣ୍ଡା ଓ ପାଉଁରୁଟି ଗୁଣ୍ଡରେ ପିଠୋଉ ବୋଲି ଭଜାଯାଏ । କବି ନଜରୁଲ୍‌ଙ୍କ ଭାଷାରେ "ଗନ୍ଧେ ରୂପେ ରସେ କରଛେ ଟଲମଲ" ।

ଏହି ପ୍ରକାର ରେସ୍ତୋରାଁହିଁ ପରଶୁରାମଙ୍କ ଆଂଲୋ-ମୋଗଲାଇ କେବିନ୍‌ର ମଡେଲ ଯାହାକି ତା ମାଲିକର ଭାଷାରେ ଗୋଟିଏ ରେସ୍‌ପେକ୍ଟେବୁଲ୍ ରେଷ୍ଟୋରାଣ୍ଟ ଏବଂ ଶିକ୍ଷିତ ଭଦ୍ରଲୋକମାନଙ୍କର ଏକ ରେଣ୍ଡେଜ୍‌ଭୁସ ଏବଂ ଯେଉଁଠି ଗାଇଟୋ-ପାଁଠାର ଇଷ୍ଟୁ ଓ ଡବଲ୍ ଡିମେଲ ରାଧାବଲ୍ଲଭୀ ମିଳେ । ଏହିମାନଙ୍କର ଆବିଷ୍କାର ମୋଗଲାଇ ପରଟା ଯାହାର କି ପ୍ରକୃତ ମୋଗଲାଇ ସହିତ କୌଣସି ସମ୍ପର୍କ ନାହିଁ । କିନ୍ତୁ ଆପଣ କେବେ କବିରାଜ କଟ୍‌ଲେଟ୍ ଖାଇଛନ୍ତି କି ? ଏହାକୁ ଆଂଲୋ-ମୋଗଲାଇର ପ୍ରକୃତ ନିଦର୍ଶନ ବୋଲି ଧରାଯାଇପାରେ । ଏକ ବୃହଦାକାର କଟ୍‌ଲେଟ ଉପରେ ଏକ ଫ୍ରାଇ ଅଣ୍ଡା, ତା ଚାରିପଟେ ଆଳୁ ଭଜା ଓ ସାଲାଡ୍ । ତା'ଉପରେ

ଚୂନା ଚୂନା କରି କଟାଯାଇଥିବା ଲେଟୁସ ଓ ବିଟରୁଟ । ସ୍ୱାଦ ଗନ୍ଧ ଅପରୂପ । ମୋର ଆପତ୍ତି ଏହାର ନାମଟା ନେଇ । ଆୟୁର୍ବେଦ ସାଙ୍ଗେ ତ ଏହାର କିଛି ସମ୍ପର୍କ ଥିଲାଭଳି ଲାଗୁନି । ଯଦି ଖାଣ୍ଟି ମୋଗଲାଇ ହୋଇଥାନ୍ତା, ଏହାକୁ ଏକ ଫାର୍ସି ନାମ ଦିଆ-ଯାଇଥାନ୍ତା, ଯଥା—ନର୍ଗିସ୍ କୋଫ୍ତା, ବହାରେଚମନ । ପ୍ରାଇ ଅଣ୍ଡାର ହଳଦିଆ ଓ ଧଳା ଅଂଶ ନରଗିସ ଫୁଲ ପରି । ଅନ୍ୟ ଭଜାର ହଳଦିଆ, କାକୁଡି ଓ ଲେଟୁସର ସବୁଜ; ବିଟରି ଲାଲ, ପିଆଜର ଧଳା ଏସବୁ ଯେପରି ବିଭିନ୍ନ ରକମର ଫୁଲ । ବସନ୍ତରେ ପୁଷ୍ପ ବାଟିକାରେ ପ୍ରସ୍ଫୁଟିତ ନରଗିସ । ଚକ୍ଷୁ, ନାସା ଜିହ୍ୱା କିବିରିକରେ ହିଁ ତୃପ୍ତ ହୋଇଥିଲି । ଏଥର କର୍ଣ୍ଣ ମଧ୍ୟ ତୃପ୍ତ ହେଲା ।

କିନ୍ତୁ ଏ ପ୍ରକାର ରନ୍ଧାକୁ ଉତ୍ସାହ ଦେବାର ଯଥେଷ୍ଟ କାରଣ ଅଛି । ଫ୍ରାନ୍ସ ତ ରନ୍ଧନଶିଳ୍ପର ମକ୍କା । ସେଠି ଆବହୁ ଦୁଇପ୍ରକାର ରନ୍ଧା ପ୍ରଚଳିତ ଥିଲା । ପ୍ରଥମଟା ହେଲା Haute cuisine ଅର୍ଥାତ୍ ଉଚ୍ଚ ରନ୍ଧା । ଏହା ପ୍ରଥମ ଶ୍ରେଣୀ ରେସ୍ତୋରାଁରେ ସ୍ୱନାମଧନ୍ୟ Chef ମାନଙ୍କ ରନ୍ଧା । ଅନ୍ୟଟା ହେଲା Bourgois cuisine ସାଧାରଣ ମଧ୍ୟବିତ୍ତ ଘର ରନ୍ଧା । Haute cuisine ଯେତେ ସ୍ୱାଦିଷ୍ଟ ହେଲେ ମଧ୍ୟ ଗୁରୁପାକ (ଉଭୟ ଅର୍ଥରେ—ଦାମଟା ମଧ୍ୟ ଗୁରୁପାକ) । ପୁଣି ଆଜିକାଲି କୋଲେଷ୍ଟେରଲ ଦାନବର ଭୟରେ ସମସ୍ତେ ଅସ୍ଥିର । ଲାଞ୍ଚ୍ ବା ଡିନରଟା ଯାହାଁ ରାନ୍ଧିବା ଆଜିକାଲି କାଳରେ ସମ୍ଭବ ନୁହେଁ । ଆଉ ଘର ରନ୍ଧା ତ ଘର ରନ୍ଧା । ଏଣୁ ଆଜିକାଲି ତମାମ୍ ୟୁରୋପରେ ଏକ ନୂତନ ରନ୍ଧା ବାହାରିଛି ଯାହାର ନାମ Nouvelle Cuisine । ଏହା Haute Cusine ର ଏକ ଲଘୁପାକ ସଂସ୍କରଣ । ଏହାର ବିଶେଷ ଆବଶ୍ୟକତା ବିମାନରେ ଖାଦ୍ୟ ପରିବେଷଣ କରିବା ପାଇଁ । ସେଠାରେ ଖାଦ୍ୟ ରଖିବାକୁ, ବାଢ଼ିବାକୁ ଓ ଖାଇବାକୁ ସ୍ଥାନ ଖୁବ୍ କମ୍ । ପୁଣି ଖାଦ୍ୟ ଏତେ ସୁସ୍ୱାଦୁ ହେବା ଦରକାର ଯେ ଯାତ୍ରୀମାନେ ମନେ ରଖିବେ ଓ ଭବିଷ୍ୟତରେ ଏହି ଏୟାର୍‌ଲାଇନ୍ସରେ ଟିକେଟ କାଟିବେ । ଏତେ ଭୁରିଭୋଜନ ହୋଇ ନଥିବ ଯେ ବିମାନ ମେଘ ଭିତରେ ଟିକିଏ ହଲିଗଲେ ଯାତ୍ରୀମାନେ ବାନ୍ତିକରି ପକାଇବେ । ଏଣୁ ବଡ଼ ବଡ଼ ନାମଡାକ ରେସ୍ତୋରାଁମାନେ ଏବେ Nouvelle Cuisine ଆଡ଼କୁ ଢଳୁଛନ୍ତି ! ଏହି ଓଡ଼ିଆ-ବଡ଼ିଆ କଣ Nouvelle Cuisine ର ଭାରତୀୟ ମୋଗଲାଇ ସଂସ୍କରଣ ନୁହେଁକି ? ମୋଗଲାଇ ପରଟା, କବିରାଜ କଟ୍‌ଲେଟ୍; ଗଲ୍‌ଦା ଚିଂଡ଼ି ଫ୍ରାଇ ଭେଜିଟେବୁଲ୍ ଚପ୍ Nouvelle Cuisine ଠାରୁ କଣ କମ୍ ? ଇଣ୍ଡିଆନ୍ ଏୟାର୍‌ଲାଇନ୍ସ ଓ ଏଆର୍-ଇଣ୍ଡିଆର କର୍ତ୍ତୃପକ୍ଷଙ୍କର ଅବଧାନ ହେଉ ।

□ □ □

# ଭୋଜନଂ ଯତ୍ର ତତ୍ରଶ୍ଚ (ତନ୍ଦୁର)

ପୂର୍ବ ପ୍ରବନ୍ଧଟି ମୋଗଲାଇ ରନ୍ଧା ସମ୍ବନ୍ଧରେ କିଞ୍ଚିତ ଆଲୋଚନା ଥିଲା । ମନେ ହେଲା ଯେ ପ୍ରବନ୍ଧଟା ଅସମ୍ପୂର୍ଣ୍ଣ ରହିଗଲା । ସେଥିରେ ଲେଖିଥିଲି ଯେ ମୋଗଲାଇ ରନ୍ଧା ତନ୍ଦୁରର ରନ୍ଧା ନୁହେଁ । ଏଣୁ ମୋଗଲାଇ ସାଥିରେ ତନ୍ଦୁରି ରନ୍ଧା ବିଷୟରେ କୌତୁହଳ ହେବା ସ୍ୱାଭାବିକ । ପାଠକ ନିଶ୍ଚୟ ରାସ୍ତା କଡ଼ରେ ଥିବା ଢାବା ନାମକ ପ୍ରତିଷ୍ଠାନ ସହିତ ପରିଚିତ । ଏହା ପ୍ରଧାନତଃ ଟ୍ରକବାଲାଙ୍କ ହୋଟେଲ । ସାଜସଜ୍ଜାର ବାହୁଲ୍ୟ ମୋଟେ ନାହିଁ । କିନ୍ତୁ ଖାଦ୍ୟ ସାଧାରଣତଃ ଭଲ । ଏହିସବୁ ଢାବା, ବିଶେଷ କରି ପଞ୍ଜାବୀ ପରିଚାଳିତ ଢାବାରେ ତନ୍ଦୁରି ରୁଟି ମିଳେ । ମୋଟା ମୋଟା କିନ୍ତୁ ବେଶ ସୁସ୍ୱାଦୁ ଏବଂ ଅନେକ ସମୟରେ ବିସ୍କୁଟ ପରି ମୁଡ଼ ମୁଡ଼ । ତା ଭିତରେ ରୁଟି ଛଡ଼ା, ନାନ, ତନ୍ଦୁରି ଚିକେନ ଇତ୍ୟାଦି ବସ୍ତୁ ମଧ୍ୟ ପ୍ରସ୍ତୁତ ହୁଏ । ଅତି ଉପାଦେୟ । ଏବଂ ସବୁଠାରୁ ବଡ଼କଥା ତେଲଘିଅ ସର୍ବସ୍ୱ ନହୋଇ ଥିବାରୁ ପେଟ ଖରାପ ହେବାର ସମ୍ଭାବନା ପ୍ରାୟ ନାହିଁ । କିନ୍ତୁ ଏହା ବାହ୍ୟ । ଏହି ତନ୍ଦୁର ତତ୍ତ୍ୱ ଆଲୋଚନା କଲେ ଆପଣ ମଧ୍ୟଏସିଆ ଓ ପାରସ୍ୟର ସଂସ୍କୃତି ଏବଂ ଉତ୍ତର ଭାରତ ଉପରେ ତାର ପ୍ରଭାବ ବିଷୟରେ ବେଶ୍ କିଛି ଜାଣି ପାରିବେ ।

ତନ୍ଦୁର ହେଲା ଏକ ପ୍ରକାରର ଓଭେନ୍ (Oven) ବା ଭାଟି । ଉତ୍ତର ଭାରତରେ କୁମ୍ଭାରମାନେ ଏହି ତନ୍ଦୁର ଲାଗି ଏକପ୍ରକାର ପାତ୍ର ତିଆରି କରନ୍ତି । ଏହା ଏକ ବିରାଟ ମୃଦଙ୍ଗ ଭଳି, ଯାହାକୁ ସିଧା ଠିଆକରି ରଖାଯାଏ । ତଳୁ ଜାଳ ଦେବାର ବ୍ୟବସ୍ଥା ହୋଇଥାଏ । କଡ଼ମାନଙ୍କରେ ପ୍ରଚୁର ମାଟି ଲେପା ହୋଇଥାଏ । ତା ଦ୍ୱାରା ଗରମ ବାହାରକୁ ଯାଏ ନାହିଁ । ପ୍ରଥମେ ନିଆଁ ଜାଳି ତନ୍ଦୁରକୁ ଗରମ କରାଯାଏ । ତାପରେ ଆଞ୍ଚ ଏକଦମ କମାଇ ଦିଆଯାଏ । ତା'ପରେ ମୋଟା ମୋଟା ରୁଟି ନେଇ ସେହି ମୃଦଙ୍ଗର ଭିତର ପଟରେ ଲଗାଇ ଦିଆଯାଏ । ରୁଟି ଅଳ୍ପ ସମୟ ଭିତରେ ତିଆରି ହୋଇଯାଏ । ପାଠକ ନିଶ୍ଚୟ ଲକ୍ଷ କରିଥିବେ ଯେ ତନ୍ଦୁରି ରୁଟିର ଏକପଟ ଅନ୍ୟପଟ ଅପେକ୍ଷା ବେଶୀ ବାଦାମି ଦେଖାଯାଏ । ଟିକିଏ ଫିକା ଥିବା ପଟରେ ରୁଟିଟା ତନ୍ଦୁର ଦେହରେ ଲାଗିଥିଲା । ଅନ୍ୟପଟଟା ସିଧାସଳଖ ଗରମେ ଯାଇଥିବାରୁ ଟିକିଏ ଟିକିଏ ପୋଡ଼ି ମଧ୍ୟ ଯାଇଥାଏ ଯାହାକି ଉକ୍ତ ରୁଟିକୁ ଏକ

ବିଶେଷ ସ୍ୱାଦ ଦେଇଥାଏ । ତା ଛଡ଼ା ବଡ଼ ବଡ଼ ଲୁହାଛଡ଼ରେ କୁକୁଡ଼ା ଗୋଟା ବା ଖଣ୍ଡ ଖଣ୍ଡ ମାଂସ ଏହି ତନ୍ଦୁର ଭିତରେ ରଖି ପାକ କରାଯାଏ । ଏହାହିଁ ତନ୍ଦୁର ରନ୍ଧା । ବିଶେଷ ପ୍ରକାରର ରୁଟି ମଧ୍ୟ ଛଡ଼ରେ ଫୋଡ଼ି ତିଆରି କରାଯାଏ । ତାହାର ନାମ ନାନ୍ । ସାଧାରଣତଃ ଶ୍ରୀଲଙ୍କାର ମାନଚିତ୍ର ଆକାରର । ମଝିଟା ମୁଡ଼ମୁଡ଼ ଓ କଡ଼ ଅଂଶ ନରମ । କେତେକ ସମୟରେ ପନିର ଖଣ୍ଡ ଓ ଛେନାର ଖଣ୍ଡକୁ ମଧ୍ୟ ଏହି ପଦ୍ଧତିରେ ତନ୍ଦୁର ମଧ୍ୟରେ ରନ୍ଧାଯାଏ । ଏହି ଲୁହାଛଡ଼ର ନାମ ଶିକ୍ । ଏ ରନ୍ଧା ଯେ ଆମ ଦେଶରେ କେବେ ନଥିଲା ଏକଥା କହିବା କଷ୍ଟ । ସଂସ୍କୃତ ସାହିତ୍ୟରେ ଶୂଲପକ୍ୱ ମାଂସର ଉଲ୍ଲେଖ ଅଛି । ହୁଏତ ପୁରାଣବର୍ଣ୍ଣିତ ପୁରୋଡ଼ାଶଂ ତନ୍ଦୁରି ରୁଟି ଭଳି ହୋଇଥିବ । ତେବେ ତାହା ବୋଧହୁଏ କାଳକ୍ରମେ ଅପ୍ରଚଳିତ ହୋଇ ଯାଇଥିଲା ଏବଂ ଏହା ମଧ୍ୟ ଏସିଆରୁ ଆସୁଥିବା ଆକ୍ରମଣକାରୀଙ୍କ ପାଇଁ ପୁଣିଥରେ ଆମଦାନି ହୋଇଥିଲା ।

ତନ୍ଦୁର ସମସ୍ତ ମଧ୍ୟପ୍ରାଚ୍ୟରେ ପ୍ରଚଳିତ । କିନ୍ତୁ ଭାରତବର୍ଷରେ ଏହାର ବ୍ୟବହାର କେବଳ ପଞ୍ଜାବ ପର୍ଯ୍ୟନ୍ତ । ଖାଣ୍ଟି ଗଙ୍ଗା ଯମୁନାର ଦେଶ । ଉତ୍ତର ପ୍ରଦେଶର ଖାନଦାନି ଖୋ ମୋଟଲାଇ । ଏଥିରେ ତନ୍ଦୁରର ବ୍ୟବହାର ନାହିଁ । ଏଣୁ ଭାରତର ଅନ୍ୟତ୍ର ଯେ ନାହିଁ ତା କହିବା ବାହୁଲ୍ୟ । ଅବଶ୍ୟ ଢ଼ାବାବାଲାମାନେ ବର୍ତ୍ତମାନ ସର୍ବତ୍ର ତନ୍ଦୁର କଲେଣି । ପଞ୍ଜାବର ମଧ୍ୟ ଏସିଆ ସହିତ ସମ୍ପର୍କ ଘନିଷ୍ଠ । ଆକ୍ରମଣକାରୀ ପ୍ରଥମେ ପଞ୍ଜାବରେ ପହଞ୍ଚୁଥିଲେ । ଫଳତଃ ସେଠି ସେମାନଙ୍କ ପ୍ରଭାବ ବେଶି ପଡ଼ିଥିବା ସ୍ୱାଭାବିକ । ପୁଣି ପଞ୍ଜାବର ମଧ୍ୟ ଏସିଆ ସହିତ ବାଣିଜ୍ୟ ବହୁକାଳରୁ ପ୍ରଚଳିତ । ଅମୃତସର ଓ ଲାହୋରର ଆଫଗାନିସ୍ଥାନ କେବଳ ନୁହେଁ, ସମରକନ୍ଦ ବୋଖାରା, ତାଶକନ୍ଦ ଆଦି ସହିତ ବଡ଼ ଧରଣର ବ୍ୟବସାୟ ହେଉଥିଲା । ସେଠାର ବେପାରୀ ଏଠି ଓ ଏଠାର ବ୍ୟବସାୟୀ ସେଠି ରହୁଥିଲେ, ଏଣୁ ସାଂସ୍କୃତିକ ଆଦାନପ୍ରଦାନ ତ ସ୍ୱାଭାବିକ । ଲାହୋର ଅମୃତସରରେ ତନ୍ଦୁରି ମୁର୍ଗା ଓ ଶିକ୍ କବାବର ଆଦର ହେଲା ଏବଂ ସମରକନ୍ଦର ବାବୁର୍ଚ୍ଚିମାନେ ମଧ୍ୟ କୋରମା ତିଆରି ଶିଖିଲେ ।

ମଧ୍ୟପ୍ରାଚ୍ୟରେ ଗୃହିଣୀମାନେ ସାଧାରଣତଃ ଘରେ ରୁଟି ତିଆରି କରନ୍ତି ନାହିଁ । ସୁବେଦାରରେ ମଧ୍ୟ ପାଉଁରୁଟି ବଜାରରୁ କିଣି ଆଣିବାହିଁ ବିଧି । ଏଥିଲାଗି ରୁଟିବାଲା ଥାଆନ୍ତି । ଏମାନଙ୍କୁ କୁହାଯାଏ ନାନବାଇ । ନାନ ଅର୍ଥାତ୍ ପାରସିକ ଓ ଅନ୍ୟାନ୍ୟ ମଧ୍ୟପ୍ରାଚ୍ୟ ଭାଷାରେ ରୁଟି । ଏଣୁ ରୁଟି ତିଆରି କଲାବାଲାର ନାମ ନାନବାଇ । ଇଂରେଜୀରେ Baker । ସେହିପରି ହାଲୱାଇ । ଅର୍ଥାତ୍ ଯେ ମିଠା ହାଲୁଆ ଇତ୍ୟାଦି ଜିନିଷ ତିଆରି କରେ । ଓଡ଼ିଆରେ ଗୁଡ଼ିଆ ଓ ଇଂରେଜୀରେ Confectioner । ଏହିସବୁ ରୁଟି ଆମ ରୁଟି ପରି ନୁହେଁ । ଏଥିରେ Learing ବା ଖମୀର ଦିଆହୋଇ ଏହାକୁ ଫୁଲାଯାଇଥାଏ ଓ ତନ୍ଦୁରରେ ତିଆରି କରାଯାଏ ! ଏଣୁ ଘରଓସ୍ୱ ରୁଟି ଅପେକ୍ଷା ଏହା କରିବା କଷ୍ଟ । କିନ୍ତୁ ସତେଜ ରହେ ମଧ୍ୟ ବହୁ ସମୟ । ଏଣୁ ପ୍ରତିଦିନ

ରୁଟି କିଣିବା ଦରକାର ନାହିଁ । ଆମେ ତ ଘରେ ପାଉଁରୁଟି ଦୁଇ ତିନି ଦିନ ରଖିଦେଉ । ଏହି କାରଣରୁ ଆଫଗାନ ବା ପାରସିକ ଗୃହିଣୀ ଏ ଜଞ୍ଜାଳ (ରୁଟି ତିଆରି)ରେ ପଡ଼ିବାକୁ ନାରାଜ ।

ବର୍ତ୍ତମାନର ତନ୍ଦୁରି ପଦ୍ଧତି ସମ୍ବନ୍ଧରେ ଆଲୋଚନା କରାଯାଉ । ଆଗରୁ କହିଛି ଯେ ଖଣ୍ଡ ଖଣ୍ଡ ମାଂସ, ଗୋଟା କୁକୁଡ଼ା ଇତ୍ୟାଦି ଲମ୍ବା ଛଡ଼ରେ ଫୋଡ଼ି ତନ୍ଦୁର ଭିତରକୁ ପୂରାଇ ଦିଆଯାଏ । ସେଠି ଶୁଷ୍କ ଉତ୍ତାପ । ପାଣି ଇତ୍ୟାଦିର ବାମ୍ପ ବାହାରିବାର ଉପାୟ ନାହିଁ । ତା ଛଡ଼ା ରନ୍ଧା ଆରମ୍ଭ ହୋଇଗଲେ, ଖୋଲା ତନ୍ଦୁର ଭିତରକୁ ପୂରାଇ ଦିଆଗଲେ ଆଉ ବିଶେଷ କିଛି କରିବାର ଉପାୟ ନାହିଁ । ଏଣୁ ଯାହା କିଛି ତନ୍ଦୁରରେ ରାନ୍ଧିବାକୁ ହେବ ତାକୁ ସାଧାରଣତଃ ଦହି ଓ ମସଲାର ଏକ ତରଳ ମିଶ୍ରଣରେ ବୁଡ଼ାଇ ରଖାଯାଏ । ଅନେକ ସମୟରେ ବାରଘଣ୍ଟା ବା ତା ଠାରୁ ବେଶି । ଖାଇବାକୁ ଦେବାର ଅଳ୍ପ ଆଗରୁ ତନ୍ଦୁରରେ ଦିଆଯାଏ । ଏଣୁ ତନ୍ଦୁରି ଖାଦ୍ୟ ହୋଟେଲରେ ପହଞ୍ଚିଲା କ୍ଷଣି ମିଳିପାରିବ ନାହିଁ । ଆପଣ ଅର୍ଡର ଦେଲାପରେ ଏହା ତନ୍ଦୁରରେ ଦିଆଯିବ ଏବଂ ପ୍ରାୟ ପନ୍ଦର ମିନିଟ ପରେ ଆପଣଙ୍କ ଆଗରେ ଥୁଆହିବ । ତନ୍ଦୁରି ଖାଦ୍ୟର ସବୁଠାରୁ ବଡ ଗୁଣ ଏଥିରେ ମାଂସର ନିଜସ୍ୱ ସ୍ୱାଦ ଫୁଟିଉଠେ । ତନ୍ଦୁରରେ କୌଣସି ଝୋଳ ଜାତୀୟ ବସ୍ତୁ ତିଆରି କରାଯାଇ ପାରିବ ନାହିଁ । ମଧ୍ୟପ୍ରାଚ୍ୟରେ ଯେ ଝୋଳ ଥିବା ବସ୍ତୁ ନାହିଁ । ଏ କଥା ନୁହେଁ । କିନ୍ତୁ ତା ରନ୍ଧା ପ୍ରଣାଳୀ ଆମ ରନ୍ଧା ପରି । ଅବଶ୍ୟ ଯେତେ ପଶ୍ଚିମକୁ ଯିବେ ମସଲା ସେତିକି କମିବ । ହଳଦୀଟା ମଧ୍ୟ ଆଫଗାନିସ୍ଥାନ ପର୍ଯ୍ୟନ୍ତ ଯାଇଛି ।

ଏଥିରୁ ମୋଟା ମୋଟି ଜଣା ପଡ଼ିଲା ଯେ ତନ୍ଦୁର ରନ୍ଧା ପାରିବାରିକ ରନ୍ଧା ନୁହେଁ । ପ୍ରଥମତଃ ଅଳ୍ପ ଲୋକଙ୍କ ଲାଗି ଏହା କରିବାରେ ଖର୍ଚ୍ଚ ବହୁତ କାରଣ, ତନ୍ଦୁର ଗରମ କରିବାରେ ଇନ୍ଧନ ଅନେକ ବେଶି ଲାଗେ । ଏଣୁ ଏସବୁ ଜିନିଷ ବଜାରରୁ କିଣିବା ହିଁ ସୁବିଧା । ମଧ୍ୟପ୍ରାଚ୍ୟରେ ଗୃହିଣୀଗଣ ସାଧାରଣତଃ ନାନ୍ ବା ରୁଟି ନାନବାଇଠାରୁ କିଣି ଆଣନ୍ତି । ଘରେ ଘରେ ତରକାରୀ ପରି ରନ୍ଧାହୁଏ । ଆଜିଠାରୁ ପ୍ରାୟ କୋଡ଼ିଏ ପଚିଶ ବର୍ଷ ତଳେ ଦିଲ୍ଲୀର ସାହିରେ ସାହିରେ ତନ୍ଦୁର ଥିଲା । ଗୃହିଣୀମାନେ ଘରେ ଅଟା ଚକଟି ନେଇ ତନ୍ଦୁରକୁ ଯାଉଥିଲେ । ସେଠି ତନ୍ଦୁରବାଲା ଅତି ଅଳ୍ପ ପଇସାରେ ରୁଟି ଗୁଡ଼ିକ ତିଆରି କରି ଦେଉଥିଲା । ଏହା ମହିଳାମାନଙ୍କର ଏକ ସାମାଜିକ ମିଳନ ସ୍ଥଳ ଭାବରେ ମଧ୍ୟ କାମ କରୁଥିଲା । ବର୍ତ୍ତମାନ ପାୟ ଉଠିଗଲାଣି । ତାର ଅନେକ କାରଣ । ପ୍ରଥମତଃ ବର୍ତ୍ତମାନର ଲୋକମାନଙ୍କର, ଏପରିକି ପଞ୍ଜାବୀ ମାନଙ୍କର ତନ୍ଦୁରି ରୁଟି ପ୍ରତି ମୋହ ଅନେକ କମି ଗଲାଣି । ତା ଛଡ଼ା ଗ୍ୟାସ ଓ ପ୍ରେସର୍ କୁକ୍‌ର ଦ୍ୱାରା ରାନ୍ଧିବାର କଷ୍ଟ ଓ ସମୟ

ବହୁତ କମି ଗଲଣି । ଏଣୁ ତନ୍ଦୁରବାଲା ପାଖକୁ ଯିବାର ଆବଶ୍ୟକତା ଅନେକ ଅନୁଭବ କରୁନାହାନ୍ତି । ବର୍ତ୍ତମାନ ତନ୍ଦୁର କେବଳ ହୋଟେଲ ଓ ଡାବାରେ । ରୁଟି ଓ ନାନ ଛଡ଼ା ତନ୍ଦୁରର ପ୍ରଧାନ ରନ୍ଧାହେଲା ଗୋଟା କୁକୁଡ଼ା ଓ ଗୋଟା ମାଛ । ତନ୍ଦୁରି ଚିକେନ ଓ ତନ୍ଦୁରି ଫିଶ । ତା ଛଡ଼ା ନାନା ପ୍ରକାରର କବାବ । ଏଥିରେ ମାଂସର ବଡ଼ ବଡ଼ ଖଣ୍ଡକୁ ଆଗରୁ ଦହି ଓ ମସଲାର ମିଶ୍ରଣରେ ଭିଜାଇ ରଖା ଯାଇଥାଏ । ଅର୍ଡ଼ର ଦେଲା ପରେ ଏହାକୁ ତନ୍ଦୁରରେ ପୁରାଇ ଦିଆଯାଏ । ବାହାରିଲେ ଉପରଟା ଲାଲ ଓ କଅଁଳ ମୁଡ଼୍ ମୁଡ଼ । ଟିକଏ ଟିକଏ ପୋଡ଼ା ଦାଗ ମଧ୍ୟ ଥାଏ । କିନ୍ତୁ ଭିତରଟା ଅତ୍ୟନ୍ତ ନରମ ଓ ସ୍ୱାଦିଷ୍ଟ । ଦେଲା ବେଳକୁ ତା ଉପରେ ଅଳ୍ପ ଲେମ୍ବୁରସ ଓ ଗରମ ମସଲା ଗୁଣ୍ଡ ଛିଞ୍ଚି ଦିଆଯାଏ । ଏହାର ପ୍ରଧାନ ଗୁଣ ହେଲା ଯେ ଏଥିରେ ମାଂସର ନିଜସ୍ୱ ସ୍ୱାଦ ଫୁଟିଉଠେ । ତନ୍ଦୁରି ଲାଗି ମାଂସ ମଧ୍ୟ ଉତ୍ତମ ଧରଣର ହେବା ଉଚିତ୍ । ମଧ୍ୟ-ପ୍ରାଚ୍ୟରେ ଏଥିଲାଗି ମେଣ୍ଢା ମାଂସ ହିଁ ବିଶେଷ ବ୍ୟବହାର କରାଯାଇ ଥାଏ । ବାବର ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି ଯେ ଭାରତରେ ଉତ୍ତମ ମାଂସ ମିଳେନାହିଁ, କଥାଟା କେବଳ ବିଜେତା ସୁଲଭ ଗର୍ବର ପ୍ରମାଣ ନୁହେଁ । ଶୀତ ପ୍ରଧାନ ଚାରଣ ଭୂମିରେ ପାଳିତ ମେଷଛାଗାଦିର ମାଂସ ଅତି ଉତ୍ତମ । ଏହା ତନ୍ଦୁରି ରନ୍ଧା ଲାଗି ପ୍ରଶସ୍ତ । ଅଥଚ ଭାରତ ବର୍ଷର ଜନ୍ତୁ ମାନଙ୍କର ମାଂସ ସେତେ ଉତ୍ତମ ନହୋଇ ଥିବାରୁ ଏଥିରେ ମସଲା ଦ୍ୱାରା ସ୍ୱାଦରେ କିଛି ପରିବର୍ତ୍ତନ କରିବାକୁ ହୁଏ । ଏଣୁ ଭାରତ ବର୍ଷରେ ମୋଗଲାଇ ରନ୍ଧା ଗଢ଼ି ଉଠିଲା ଏବଂ ତନ୍ଦୁରି କେବଳ ପଞ୍ଜାବରେ ହିଁ ରହିଗଲା ।

କୌଣସି କୌଣସି ପାଠକଗଣଙ୍କ ମନେ ହେବଣି, "ବାବୁ, ବହୁତ ଥିଓରି ତ ଝାଡ଼ିଲଣି । ବର୍ତ୍ତମାନ ପ୍ରାକ୍‌ଟିକାଲ ଆଡ଼କୁ ଆସ ।" ଅର୍ଥାତ୍ ହୋଟେଲରେ ତନ୍ଦୁରି ଖାନା କଣ କଣ ଓ କିପରି ଅର୍ଡ଼ର କରିବାକୁ ହେବ, ଏବିଷୟରେ କିଛି ଖୋଲସା କର । ତେବେ ଆଜ୍ଞା, ଅବଧାନ ହେଉ । ପ୍ରଥମ କଥା ଏ ଜିନିଷ ଘରେ ତିଆରି ହୋଇପାରିବ ନାହିଁ । ଆପଣଙ୍କ ଘରେ ଅତି ଉତ୍ତମ ଗ୍ୟାସ୍ ବା ଇଲେକ୍‌ଟ୍ରିକ ଓଭେନ ଥିଲେ ମଧ୍ୟ ନୁହେଁ । ସେଥିରେ ତିଆରି ବସ୍ତୁ ତନ୍ଦୁରି ଚିକେନ ନୁହେଁ । କାରଣ ସେଥିରେ ତନ୍ଦୁରର ଗରମ ମାଟିର ବାସନା ଓ କାଠ କୋଇଲାର ଏକ ହାଲୁକା ଗନ୍ଧ, ଯାହାକୁ ଇଂରାଜୀରେ Flavour କୁହାଯାଏ, ଆସି ପାରିବ ନାହିଁ । ଏଥିଲାଗି ଉନ୍ନତରୁଚିଜଣ ସ୍ୱାର ଦୋସ୍ତ ସାଙ୍ଗହୋଇ ଯିବା ଉଚିତ । କାରଣ ପ୍ରତ୍ୟେକ ତନ୍ଦୁରି ଡ଼ିଶ୍ ଗୁଡ଼ିକ ଏଡ଼େ ବଡ଼ ଯେ ଜଣେ ଖାଇପାରିବ ନାହିଁ । ଯଥା ଗୋଟା କୁକୁଡ଼ା । ତା ଛଡା ଆପଣଙ୍କର ଦୁଇଚାରିଟା ଜିନିଷ ଚାଖିବାର ଇଚ୍ଛା ଥାଏ ହେଲେ କଣ ଅର୍ଡ଼ର ଦେବେ । ସାଧାରଣତଃ ପଞ୍ଚତାରକା 'ହୋଟେଲ' ବାଦ୍ ଦେବେ । ଆପଣଙ୍କ ପାଖେ ଯେତେ ପଇସା ଥାଉନା କାହିଁକି । ଏ ସବୁ ଯାଗାରେ ସାଜସଜ୍ଜା ଓ ଆଡ଼ମ୍ବର ବେଶୀ । ଖାଦ୍ୟ ଉପରେ ଦୃଷ୍ଟି କମ୍ । ଉତ୍ତମ ପଞ୍ଜାବୀ ହୋଟେଲ ଏଥିଲାଗି ପ୍ରଶସ୍ତ । ତତ୍‌ପର ହେବା ଦରକାର ନାହିଁ । ଅନେକ ଯାଗାରେ ଦେଖିବେ ଯେ ଶୋକେସରେ ଲୁହା

ଛଡ଼ରେ ଗୁନ୍ଥାହୋଇ କୁକୁଡ଼ା, ମାଛ, ମାଂସ ଖଣ୍ଡ ଇତ୍ୟାଦି ଥୁଆ ହୋଇଛି । ଇଚ୍ଛା କଲେ ଆପଣ ବାଛି ପାରନ୍ତି । ମୋ ମତରେ ଦୁଇଜଣଙ୍କ ଲାଗି ଗୋଟିଏ ମୁର୍ଗା (କୁକୁଡ଼ା), ଗୋଟିଏ ତନ୍ଦୁରି ମଚ୍ଛି (ଗୋଟାମାଛ) ଏବଂ ଏକ ପ୍ଲେଟ୍ ବଟି ବା ଟିକ୍କା ଯଥେଷ୍ଟ । ସାଙ୍ଗରେ ଏକ ପ୍ଲେଟ ସାଲାଡ଼ । ତା ସହିତ ଆପଣ ପାଇବେ ଧନିଆ ବା ପୋଦିନା ଚଟଣି, କଟା ପିଆଜ ଓ ଆଚାର । ଅନେକ ଏହା ସହିତ ଏକ ପ୍ଲେଟ ଦହି ରାଇତା ମଧ୍ୟ ପସନ୍ଦ କରିଥାନ୍ତି । ସାଥିରେ ତନ୍ଦୁରି ରୋଟି ବା ନାନ ଖାଇବେ । ଆଜି କାଲି କେତେକ ତନ୍ଦୁରି ରୋଟି ସ୍ଥାନରେ ରୁମାଲି ରୋଟି ମାଗୁଛନ୍ତି । ମୋ ମତରେ ଏହାଦ୍ୱାରା ଶାସ୍ତ୍ର ଅଶୁଦ୍ଧ ହୁଏ । କାରଣ ରୁମାଲି ମୋଗଲାଇ କବାବ ସହିତ ଖାଇବା କଥା । ତନ୍ଦୁରି ସହିତ ସେହି ମଧ୍ୟ ଏସିଆର ନାନ ହିଁ ମାନେ । ସାଧାରଣତଃ ଆପଣ ଗୋଟିଏ ବା ଦେଢଟି ନାନ ଖାଇ ପାରିବେ । ଯଦି ଆପଣ ଶୁଖିଲା ନାନ ଚୋବାଇବାକୁ ନାରାଜ ତା ହେଲେ ବୁଡ଼ାଇବା ପାଇଁ ପାଲକ୍ପନିର (ଛେନା ଓ ପାଳଙ୍ଗର ତରକାରୀ) ବା କିମା ମଟର (ଗୁଣ୍ଡ ମାଂସ ଓ ମଟର ଛୁଇଁ) ନେଇ ପାରନ୍ତି । କିନ୍ତୁ ମୁଁ ନିଜେ ଏହା ପସନ୍ଦ କରେନାହିଁ ।

ତନ୍ଦୁରରେ କେବେ ନିରାମିଷ ରନ୍ଧା ନଥିଲା । ଏବେ କେତେକ ଯାଗାରେ ବିଶେଷ କରି ଉପର ଲିଖିତ ପଞ୍ଚତାରକା ଖଚିତ ହୋଟେଲ ମାନଙ୍କରେ ନିରାମିଷ ତନ୍ଦୁରି ରନ୍ଧା ଆରମ୍ଭ ହୋଇଛି । ଯଥା ତନ୍ଦୁରି ଗୋଭି । ଗୋଟା ଫୁଲକୋବିକୁ ମସଲା ଦେଇ କୁକୁଡ଼ା ପରି ଲୁହାଛଡ଼ ଦ୍ୱାରା ତନ୍ଦୁରରେ ରନ୍ଧାଯାଏ ବା ପନିର ଟିକ୍କା! ଅର୍ଥାତ୍ ଖଣ୍ଡ ଖଣ୍ଡ ଛେନା, ଟମାଟୋ, ଛତୁ ଓ ପିଆଜକୁ ବଟି କବାବ ପରି ଶୂଳ ପକ୍ୱ କରାଯାଏ । ଏ ସବୁ ବିଷୟରେ ଅଧମ ଆଉ କଣ କହିବ ? କବିସୂର୍ଯ୍ୟ ବଳଦେବ ରଥ ଏ ବିଷୟରେ ଶେଷ କଥା କହି ଯାଇଛନ୍ତି ।

ରନ୍ଧି ନାୟକ ସଙ୍ଗେ ଚୋବଦାର
ଝଙ୍କିଲେ ହେଲେ ବୁବୁକ ସବାର,
ଖିଆଇଲେ ହେଲେ ନାନା ମସଲା
ତୁରଙ୍ଗ ହୁଏ କି ରାସଭ ପିଲା ।

ଆହାର ପର୍ବ ଏଇଠାରେ ଶେଷ ହେବା କଥା । କିନ୍ତୁ ଧରନ୍ତୁ ଆପଣଙ୍କ ଗୁରୁ ଆପଣଙ୍କୁ ଆଦେଶ କରିଛନ୍ତି "ମଧୁରେଣ ସମାପୟେତ୍" । ଏହି ସବୁ ସ୍ଥାନରେ କିଛି ମିଠା ମଧ୍ୟ ମିଳେ । ଅବଶ୍ୟ ତନ୍ଦୁରରେ କୌଣସି ମିଠା ଜିନିଷ ରନ୍ଧା ହୁଏନାହିଁ । ଯଦି ଖରାଦିନ ତାହାଲେ କୁଲ୍ଫି ମଗାନ୍ତୁ । ଏହାର ସ୍ୱାଦ ସାହେବୀ ଆଇସ୍କ୍ରିମ୍ଠାରୁ ଢେର୍ ବଢିଆ । ସାଥିରେ ଥିବ ଫାଲୁଦା ବା ବରଫରେ ଥଣ୍ଡା କରାଯାଇଥିବା ସିମେଇ । ଯଦି ଶୀତଦିନ, ତାହେଲେ ଗରମ ଗାଜର ହାଲୁଆ । ଖାସ ତନ୍ଦୁରି ଦେଶ ଅର୍ଥାତ୍ ସିନ୍ଧୁ ନଦୀ ଆର ପାରିରେ ଖାଇବା ପରେ ଚା'ପାନ କରାଯାଏ । ଏହା ଆମ ଚା' ପରି

ନୁହେଁ । ଏହା ସବୁଜ ଚା' । ଦୁଧ ନଥାଏ । କିନ୍ତୁ ଚିନି ଓ କେତେବେଳେ ଅଳେଇଚ ଇତ୍ୟାଦି ମସଲା ମଧ୍ୟ ଦିଆଯାଏ । ଏ ଚା'ର ପ୍ରଧାନ ଉତ୍ପାଦନ ସ୍ଥଳ ହିମାଚଳ ପ୍ରଦେଶର କାଙ୍ଗଡ଼ା ଅଞ୍ଚଳ । ଏହି ଚା' ଲାଗି ଭାରତର ବାଣିଜ୍ୟ ମଧ୍ୟ ଏସିଆ ଦେଇ ରୁଷିଆ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଭାରତରେ ଏ ଚା' କୌଣସି ହୋଟେଲରେ ମିଳିବ ନାହିଁ । ତେବେ ମଧ୍ୟପ୍ରାଚ୍ୟରେ ସର୍ବତ୍ର ମିଳେ । ସେଠା ଲୋକେ ମଧ୍ୟ ଚା' ଦୋକାନରେ ଘଣ୍ଟା ଘଣ୍ଟା ଧରି ଆଡ୍ଡା ଦେବାରେ ପ୍ରସିଦ୍ଧ ।

ବର୍ତ୍ତମାନ ଏହି ପ୍ରବନ୍ଧଟିକୁ ଖାସ୍ ତନ୍ତ୍ର ଦେଶ, ସୋଭିଏତ୍ ମଧ୍ୟ ଏସିଆର ବୋଖାରାରୁ ଆସି ଓଡ଼ିଶାରେ ଆସ୍ଥାନ କରିଥିବା ଜାଗ୍ରତ ପୀର ଖୋଜାଁ ପାଖ କାଇପଦରର ବାବା ବୋଖାରୀଙ୍କ ଆଶୀର୍ବାଦ ପ୍ରାର୍ଥନା କରି ସମାପନ କରାଯାଉ ।



# ପୋଷାକ-ମୋଗଲାଇ ଓ ତତ୍‌ପଶ୍ଚାତ୍

ମଝିରେ ମଝିରେ ପୋଷାକ ସମ୍ବନ୍ଧରେ ଅନେକ ବିତର୍କ ହୁଏ । ହଠାତ୍ ସଙ୍ଗୀତଜ୍ଞ ଆନନ୍ଦ ଶଙ୍କର କୁରତା ପାଇଜାମା ପିନ୍ଧିଥିବାରୁ ତାଙ୍କୁ କ୍ୟାଲକଟା ସ୍ୱିମିଂ କ୍ଲବ ଭିତରକୁ ଛଡ଼ା ଗଲନାହିଁ । ଅଥଚ ହୁଏତ ସେ ହାଫ୍ ପ୍ୟାଣ୍ଟ୍ ଖଣ୍ଡେ ପିନ୍ଧିଥିଲେ ଛଡ଼ା ଯାଇଥାନ୍ତା । ପ୍ରସିଦ୍ଧ ଚିତ୍ରକାର ହୁସେନ୍‌ଙ୍କୁ ଜୋତା ପିନ୍ଧି ନଥିବାରୁ ମଧ୍ୟ ବମ୍ବେରେ ସେପରି ହିନସ୍ତା ହେବାକୁ ପଡ଼ିଥିଲା । ଏହାର ଅନ୍ୟ ସୀମା ତ୍ରିବାନ୍ଦ୍ରମର ପଦ୍ମନାଭ ସ୍ୱାମୀ ମନ୍ଦିରରେ ଯେଉଁଠିକି ପୁରୁଷ ଲୋକମାନେ ଖୋଲାଦେହରେ ଧୋତିକୁ ଲୁଙ୍ଗି ମାରି ଯିବାକୁ ବାଧ୍ୟ । ମନ୍ଦିର ହୋଇଥିବାରୁ ତ ଖାଲି ଗୋଡ଼ ଅବଶ୍ୟ । ଅସଲ କଥା ହେଲା ଯେ ଭାରତୀୟ ପୋଷାକର କୌଣସି ସର୍ବଜନସ୍ୱୀକୃତ ନିୟମ ବା ପ୍ରଥା (Convention) ନାହିଁ । ଦେଶ ମଧ୍ୟ ବହୁତ ବଡ଼ ହୋଇଥିବାରୁ ଏବଂ ପୃଥିବୀର ସମସ୍ତ ପ୍ରକାର ଜଳବାୟୁ ଏ ଦେଶରେ ଥିବାରୁ ପୋଷାକର ବିବିଧତା ପ୍ରାୟ ଅରାଜକତା ସାଥିରେ ସମାନ । କିନ୍ତୁ ପୋଷାକରେ କେତେକ ପରିମାଣରେ ଅନୁଶାସନ ଆଣିବା ମଧ୍ୟ ଅନେକ କାରଣରୁ ଆବଶ୍ୟକ ହୋଇପଡ଼େ । ଏହି ଅନୁଶାସନ ବିଷୟରେ ଚିନ୍ତା କରିବାକୁ ଗଲେ କିଛି ପରିମାଣରେ ଇତିହାସର ନଜର ନେବା ଆବଶ୍ୟକ ।

କଥାରେ ଅଛି ଭେକ ଥିଲେ ଭିଖ ମିଳେ । ଏଣୁ ଭେକ ବା ପୋଷାକ ସମ୍ବନ୍ଧରେ ଭାରତରେ ଯେ ସଚେତନା ନଥିଲା ଏହା ନୁହେଁ । କିନ୍ତୁ ହିନ୍ଦୁ ସମୟର ବେଶ ବିଶେଷ କରି ପୁରୁଷ ବେଶ ସମ୍ବନ୍ଧରେ ଆମର ଜ୍ଞାନ କମ୍ । ଏଥିଲାଗି ଆମେ ମୂର୍ତ୍ତିକଳାର ପ୍ରମାଣ ଉପରେ ନିର୍ଭର କରୁ । ଏଥିରୁ ଜଣାପଡ଼େ ଯେପରି ପୁରୁଷର ଉତ୍ତମାଙ୍ଗ ଅନାବୃତ ରହୁଥିଲା । କେବଳ ଉତ୍ତରୀୟ ଉପରେ ପକାଇ ଦିଆଯାଉଥିଲା । ଅଥଚ ଉତ୍ତର ଭାରତର, ବିଶେଷ କରି ହିମାଳୟ ଉପକଣ୍ଠର ପ୍ରଚଣ୍ଡ ଶୀତରେ ଏହି ପୋଷାକ ପିନ୍ଧିବା ଅସମ୍ଭବ ମନେହୁଏ । ଚିତ୍ରକଳାର ଯେଉଁ ନଜର ମିଳେ ତାହା ମୁସଲମାନ ଆସିବା ପରର । ଏଣୁ ଏଥିରେ ମୁସଲିମ୍ ପ୍ରଭାବ ସ୍ପଷ୍ଟ । ହିନ୍ଦୁ ଓ ମୁସଲମାନ ଉଭୟଙ୍କର ଉତ୍ତମାଙ୍ଗର ପୋଷାକ ଅନେକଟା ଏକାଭଳି ହୋଇଯାଇଥିଲା । ଫରକ ଭିତରେ ହିନ୍ଦୁଙ୍କ ଭିତରେ ଧୋତି ବେଶି ଥିଲା ଓ ମୁସଲମାନ ଅନେକ ସମୟରେ ତହମଦ୍ ବା ଲୁଙ୍ଗି ପିନ୍ଧୁଥିଲେ । ତେବେ ହିନ୍ଦୁ ଓ ମୁସଲମାନ ଉଭୟେ ପାଇଜାମା ପିନ୍ଧୁଥିଲେ-

ବିଶେଷ କରି ସୈନିକ ଓ ରାଜକର୍ମଚାରୀ । ମୋଗଲ ଦରବାରରେ ହିଁ କାଳକ୍ରମେ ଏପରି ପୋଷାକ ଗଢି ଉଠିଥିଲା ଯାହାକି ଭାରତର ହିନ୍ଦୁଆଡ଼େ, କି ରାଜପୁତ୍‌ କି ମରାଠା, ସମସ୍ତେ ଗ୍ରହଣ କରି ନେଇଥିଲେ ଏବଂ ପ୍ରାୟ ସମସ୍ତ ଦେଶୀୟ ରାଜ୍ୟର ଦରବାରରେ ଏହାହିଁ ଦରବାରୀ ପୋଷାକ ଥିଲା । ଏଣୁ ଏ ବିଷୟରେ କିଞ୍ଚିତ୍‌ ଦୃଷ୍ଟିପାତ କରିବା ଉଚିତ୍‌ ।



ଯେତେବେଳେ ଆଫଗାନ, ତୁର୍କି ଏବଂ ମୋଗଲମାନେ ଏ ଦେଶରେ ଆସି ପହଞ୍ଚିଲେ, ସେମାନଙ୍କ ପୋଷାକ ଥିଲା ଅତି ଥଣ୍ଡା ଜଳବାୟୁ ଲାଗି ଉପଯୁକ୍ତ । ଗୋଡ଼ରେ ଆଣ୍ଠୁ ଯାକେ ଆସୁଥିବା ବୁଟ, ପଶମ ଓ ଲୋମର ବିରାଟ ଜୋବା ଓ ମୁଣ୍ଡରେ ବିରାଟ ପଗଡ଼ି । ଜଳବାୟୁ ହିଁ ଧୀରେଧୀରେ ଏହାକୁ ସୀମିତ କରିଦେଲା । ମୋଟାମୋଟି ପୋଷାକଟା ହେଲା ଏହିପରି । ମୁଣ୍ଡରେ ପଗଡ଼ି, ଦେହରେ ନିମାଜାମା । ତା ଉପରେ ଅଙ୍ଗରଖା ବା ଜାମା । ତଳେ ପାଇଜାମା ( ପାଏ=ଗୋଡ଼ର ଜାମା ) । ଅଣ୍ଟାରେ କମର ବନ୍ଦ ଯେଉଁଥିରେ ତରବାରୀ ଝୁଲା-ଯାଏ ଏବଂ ଏକ କ୍ଷୁଦ୍ର ଛୁରିକା ଅର୍ଥାତ୍‌ କଟାର ଖୋସି ଦେଇହୁଏ । ଗୋଡ଼ରେ ଉଚ୍ଚ ଏଡ଼ିର ଜୋତା କାରଣ ପ୍ରାୟ ସମସ୍ତେ ଘୋଡ଼ା ଚଢୁଥିଲେ ଏବଂ ଉଚ୍ଚ ଏଡ଼ି ପାଦକୁ ରକାବ ( ଇଂରାଜୀରେ Stirrup ) ରେ ରହିବାକୁ ସାହାଯ୍ୟ କରୁଥିଲା । କାଳକ୍ରମେ ନିମାଜାମା ଉଠିଯାଇ ଏକ ସଂକ୍ଷିପ୍ତ ଫତେଇ ଭଳି ଜିନିଷ ହୋଇଗଲା । ଯାହାର ନାମ ହେଲା ସଦରୀ ବା ଶଲୁକା । ଏହା ଅତ୍ୟନ୍ତ ସୁନ୍ଦର କନାରେ ତିଆରି ହେଉଥିଲା ଏବଂ ଏହା ଉପରେ ଜରି ଓ କଢେଇ (Embroi-dory) ର କାମ ହେଉଥିଲା । ଏହା ଉପରେ ଅଙ୍ଗରଖା ପିନ୍ଧା ଯାଉଥିଲା । ମୁଁ ପିଲା ଥିଲାବେଳେ ବୁଢ଼ାମାନେ ସାର୍ଟକୁ ଅଙ୍ଗା କହିବାର ଶୁଣିଛି । ବୋଧହୁଏ ଏହା ହେବ ଅଙ୍ଗରଖାର ଅପଭ୍ରଂଶ । ଅଙ୍ଗରଖା କେତେକଟା ଡ଼ବଲ ବ୍ରେଷ୍ଟକୋଟ୍‌ ପରି । ଅଣ୍ଟାଯାକେ ଟାଇଟ୍‌ଫିଟ୍‌ ତାପରେ ବହୁତ କୁଞ୍ଚଥାଇ ଏକ ଘାଘରା ପରି । ଏହା ସାଧାରଣତଃ ଢିଲା

ବା ହାଲୁକା ରଙ୍ଗର ମଲ୍‌ମଲ୍ (ଅଦ୍ଧକନା ପଶ) ରେ ତିଆରି ହେଉଥିଲା ଏବଂ ତା ଭିତରୁ ସଦରୀ ବା ଶଲୁକାର କାରୁକାର୍ଯ୍ୟ ଦେଖା ଯାଉଥିଲା । ଶୀତଦିନେ ଏହା ଉପରେ ଗରମ କନାର ଝୋଗା ପିନ୍ଧା ଯାଉଥିଲା । ଝୋଗା ନ ପିନ୍ଧି ଅନେକ ଖାଲି ଶାଲ ମଧ୍ୟ ଘୋଡ଼ି ହେଉଥିଲେ । କମରବନ୍ଦ ମଧ୍ୟ ସାଧାରଣତଃ ଶାଲ କନାରେ ତିଆରି ହେଉଥିଲା । ମୂଳପୃଷ୍ଠାର ଚଣଟା ଦେଖନ୍ତୁ । ଏଥିରେ ଚାଲିବା, ତଳେ ବସିବା, ଚଉକିରେ ବସିବା, ଘୋଡ଼ା ଚଢ଼ିବା କୌଣସି ଦିଗରୁ ଅସୁବିଧା ହୁଏନାହିଁ । ଏହି ପୋଷାକ ଏକ ସର୍ବଭାରତୀୟ ପୋଷାକ ହୋଇଯାଇଥିଲା । ମୋଗଲ ଛଡ଼ା ରାଜପୁତ୍, ମରାଠା, ହାଇଦ୍ରାବାଦ, ମହିଶୁର ସର୍ବତ୍ର ଏହା ଚାଲୁ ହୋଇଯାଇଥିଲା ।

ଇଂରେଜ ଆସିବା ପରେ ଏଥିରେ କିଛି ପରିବର୍ତ୍ତନ ହେଲା । ଲକ୍ଷ୍ନୌରେ ବାହାରିଲା ଅଚକନ୍ । ଏହା ମୋଟା କନାରେ ତିଆରି ଓ ଏହାର ହାତ ଇଂରେଜ କୋଟ୍ ପରି । ଏବଂ ଏଥିରେ ବୋତାମ ଲାଗିଲା । ଶେଷକୁ ହାଇଦ୍ରାବାଦରେ ଏହା ହେଲା ଶେରୱାନି ଯେପରି ପଣ୍ଡିତ ଜବାହାରଲାଲ ନେହେରୁ ପିନ୍ଧୁଥିଲେ । ମୋଟାମୋଟି ଉନବିଂଶ ଶତାବ୍ଦୀର ଶେଷ ଭାଗକୁ ଏହା ଏକ ସର୍ବଭାରତୀୟ ପୋଷାକ ହୋଇ ଯାଇଥିଲା ଏବଂ ନୈଷ୍ଠିକ ହିନ୍ଦୁଙ୍କୁ ମୁଁ ଧୋତି ଉପରେ ଶେରୱାନି ଓ ତା ଉପରେ ଚାଦର ପକାଇବାର ଦେଖିଛି । କିନ୍ତୁ ଏଠି ମଧ୍ୟ ରାଜନୀତି ପଶିଛି । ଶେରୱାନି ଭାରତ ଓ ପାକିସ୍ଥାନ ଉଭୟ ଦେଶର ଜାତୀୟ ପୋଷାକ । କିନ୍ତୁ ଆମେ ଶେରୱାନି ପିନ୍ଧୁ ଚୁଡ଼ିଦାର ପାଇଜାମା ସହିତ । କିନ୍ତୁ ପାକିସ୍ତାନୀ ମାନେ ପିନ୍ଧନ୍ତି ଶଲୱାର ସହିତ କେବଳ ଦୁଃଖର କଥା ଯେ ଅଚକନ ଶେରୱାନି ଆସିବାରୁ ଭିତରେ ଶଲୁକାର ଫ୍ୟାଶନ୍‌ଟା ଦେଖାଇବାର ଉପାୟ ନଥିଲା । ଏଣୁ ପୋଷାକଟା କେତେକ ପରିମାଣରେ ମାନ୍ଦା ଅର୍ଥାତ୍ dull ହୋଇଗଲା । ପୁରୁଷ ପୋଷାକରେ ମଧ୍ୟ ସାମାନ୍ୟ ପରିମାଣରେ ରଙ୍ଗ ଓ ନକ୍‌ସାର ପ୍ରକାଶର ଉପାୟ ଥିବା ଉଚିତ୍ । ଯେପରି ଧରନ୍ତୁ ସୁଟ୍ ସାଙ୍ଗରେ ଟାଇ । ଶେରୱାନିର ରଙ୍ଗର ଅଭାବକୁ ଅନେକ ପରିମାଣରେ ପଗଡ଼ିର ବର୍ଣ୍ଣାଢ଼୍ୟତା ଦ୍ୱାରା ଦୂର କରାଯାଉଥିଲା । କିନ୍ତୁ ଧୀରେ ଧୀରେ ପଗଡ଼ି ଉଠିଗଲା ଓ ତା ଜାଗାରେ ଆସିଲା ଟୋପି । ପୁରୁଷ ପୋଷାକରୁ ଆଭା ଚାଲିଗଲା । ତେବେ ଶେରୱାନିଟା ଖରାଦିନ ଲାଗି ମୋଟେ ସୁବିଧା ନୁହେଁ । ଗରମ ପ୍ରଚୁର ହୁଏ ।ବେକଠାରୁ ଆଣ୍ଠୁ ପର୍ଯ୍ୟନ୍ତ ବନ୍ଦ ଥିବାରୁ ପବନ ବାଜି ପାରେନାହିଁ । ଏଣୁ ହାଇଦ୍ରାବାଦ ସହରରେ ଏକ ପ୍ରବାଦ ଅଛି "ବାହର ଶେରୱାନି, ଅନ୍ଦର ପରେଶାନି" । ଅବଶ୍ୟ ଏହା ଗରିବ ହୋଇଯାଇଥିବା ନବାବ ସାହେବଙ୍କ ଗୃହ ସମସ୍ୟା ଲାଗି ମଧ୍ୟ ପ୍ରଯୁଜ୍ୟ । ଏଣୁ ଏହି ଅସୁବିଧା ଦୂର କରିବାକୁ ଶେରୱାନିର ଏକ ସଂକ୍ଷିପ୍ତ ସଂସ୍କରଣ ବାହାରିଲା, ଯାହାର ନାମ ଥିଲା ବଣ୍ଡି । କିନ୍ତୁ ପଣ୍ଡିତ ନେହେରୁ ତାହା ଗରମ ଦିନେ ବ୍ୟବହାର କରୁଥିବାରୁ ତାହା ନେହେରୁ ଜ୍ୟାକେଟ ବୋଲି ପରିଚିତ ।

ଇଂରେଜଙ୍କର ଅନୁକରଣ ଦେଶର ଭିତରଆଡ଼େ ବଢ଼ିପାଣି ପରି ମାଡ଼ି ଚାଲିଥାଏ । କିନ୍ତୁ ଭାରତର ଦେଶୀୟ ରାଜ୍ୟରେ ଏକ ନୂଆ ପ୍ରକାରର ଫ୍ୟାଶନ୍ ଗଢ଼ି ଉଠୁଥିଲା । ରାଜାମାନେ ମୋଗଲାଇ ପୋଷାକ ଛାଡ଼ି ନଥିଲେ । ବିଶେଷ ଦିନ ମାନଙ୍କର ଦରବାରରେ ତାହା ଆବଶ୍ୟକ ହେଉଥିଲା । କିନ୍ତୁ ଦୈନନ୍ଦିନ ପୋଷାକର କିଞ୍ଚିତ୍ ଆଧୁନିକୀକରଣ ଆବଶ୍ୟକ ହୋଇଥିଲା । ସେତେବେଳେ ଦେଶୀୟ ରାଜ୍ୟ ମାନଙ୍କରେ ପ୍ରଧାନ ଦୁଇଟି କାମ ଥିଲା ଶୀକାର ଓ ପୋଲୋ । ଅଶ୍ୱାରୋହଣରେ ଦକ୍ଷତାର ସ୍ଥାନ ଅନ୍ୟ ସବୁ ବିଦ୍ୟା ଉପରେ । ରାଜ ଦରବାରର ଅନେକ ଲୋକ ଏହିସବୁ କ୍ରୀଡ଼ାରେ ବିଶେଷ ରୁଚି ରଖୁଥିଲେ ଏବଂ ଦକ୍ଷ ମଧ୍ୟ ଥିଲେ । ଏମାନେ ଇଂରେଜ ପୋଷାକର ଗୁଣକୁ ଗ୍ରହଣ କରି ସେଥିରେ କିଛି ଭାରତୀୟତ୍ୱ ମିଶାଇଲେ । ତାହା ଯୋଧପୁର ବା ପ୍ରିନ୍ସ ସୁଟ୍ ବୋଲି ପ୍ରସିଦ୍ଧ ଥିଲା । ମୁଣ୍ଡରେ ପଗଡ଼ି, ବନ୍ଦଗଲା କୋଟ୍ ଓ ଯୋଧପୁର ବ୍ରିଚେସ୍ ଏହାର ଅଙ୍ଗ ଥିଲା । ଦେଖିବାକୁ ଅତି ସୁନ୍ଦର (ଅବଶ୍ୟ ପିନ୍ଧିବା ଲୋକ ଯଦି ମୋଟା ହୋଇ ନଥାଏ) । ଏହି ଛବିରୁ କିଛି ଧାରଣା ହେବ । ଏହି ପୋଷାକରେ ସାଧାରଣତଃ ଷ୍ଟେଟ୍‌ର ଅଫିସର ମାନେ ଅଫିସ ଯାଉଥିଲେ । ଘୋଡ଼ା ଚଢ଼ିଲେ ଅବଶ୍ୟ ସାଧାରଣତଃ କୋଟଟା ବାହାର କରି ଦେଉଥିଲେ । ଏହି ପୋଷାକ ହିଁ ଆଜିକାଲିର ବନ୍ଦଗଲା ସୁଟ୍‌ର ଜନକ । କେବଳ ଯୋଧପୁର ଜାଗାରେ ଟ୍ରାଉଜର ହୋଇଯାଇଛି ।



ପାଇଜାମା କୁର୍ତ୍ତା ପିନ୍ଧି ଆନୁଷ୍ଠାନିକ ସ୍ଥାନ ସବୁକୁ (ଯଥା ଅଫିସ୍) ଯାଇହେବ କି ନାହିଁ ଏହା ବିଷୟରେ ଅନେକ ବିତର୍କ ହୋଇଛି । ଏ ବିଷୟରେ ମୋର କହିବାର କଥା ଏତିକି ଯେ ପଣ୍ଡିତ ଜବାହାରଲାଲଙ୍କ ପରି ସୁରୁଚିସମ୍ପନ୍ନ ଲୋକ କମ୍ ହୋଇଛନ୍ତି । ଏଣୁ ତାଙ୍କର ଉଦାହରଣ ଏ ବିଷୟରେ ମୂଲ୍ୟବାନ । ସେ କେବେ ଖାଲି କୁରତା ପାଇଜାମା ପିନ୍ଧି ନଥିଲେ । କୁର୍ତ୍ତା ଉପରେ ରହୁଥିଲା ଶୀତଦିନେ ଶେରୱାନି ଓ ଖରାଦିନେ ପ୍ରସିଦ୍ଧ ନେହେରୁ ଜ୍ୟାକେଟ । ଏଣୁ ମନେହୁଏ ଯେ ଖାଲି କୁରତା

ପାଇଜାମା ଆନୁଷ୍ଠାନିକ ପୋଷାକ ନୁହେଁ । ତା ଉପରେ ଆଉ କିଛି ପିନ୍ଧାଯାଏ । ତେବେ ମୋଗଲ ସାମ୍ରାଜ୍ୟ ଓ ତାପରେ ମଧ୍ୟ ପୋଷାକର ଶ୍ରେଷ୍ଠତ୍ୱ ଥିଲା ପଗଡ଼ିରେ । ଏହା ଯେ ଭାରତ ବର୍ଷରେ ମୁସଲମାନଙ୍କ ଆଗରୁ ଥିଲା ଏହାର ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମଧ୍ୟ ଅଛି । ଆଉ ସେ ପଗଡ଼ି କେତେ ପ୍ରକାରର । ଅତି ସାଧାରଣ ମୁଣ୍ଡରେ ଖଣ୍ଡେ ଧୋତି ବାନ୍ଧିଦେବା ଠାରୁ ଆରମ୍ଭ କରି ରତ୍ନଖଚିତ କଂଖାବର୍ ପଗଡ଼ି ପର୍ଯ୍ୟନ୍ତ । ଏବଂ ପଗଡ଼ି ଦେଖି ହିଁ କହିଦେଇ ହେଉଥିଲା ପଗଡ଼ି ପିନ୍ଧିଥିବା ଲୋକ କିଏ । ସେ ପାଲିଙ୍କିରେ ବସି ଆସିଥିବା ଜମିଦାର ନା ପାଲିଙ୍କି ବୋହୁଥିବା ବେହେରା ବା କହାର । କିନ୍ତୁ ପଗଡ଼ିଟା ପ୍ରକୃତରେ ଦ..ବାର ବା ସେହିପରି ଆନୁଷ୍ଠାନିକ ସ୍ଥାନରେ ଉପଯୁକ୍ତ । ଏ ପର୍ଯ୍ୟନ୍ତ ମଧ୍ୟ ଉତ୍ତର ଭାରତରେ ବର ଏବଂ ଦୁଇ ସମୁଧିଙ୍କର ଗୋଲାପି ବା ହଳଦିଆ ପଗଡ଼ି ବାନ୍ଧିବା ବିଧି । ତେବେ ଏହି ବିଶାଳକାୟ ପଗଡ଼ି ଦୈନନ୍ଦିନ ଏବଂ ଘରୁଆ (informal) ବ୍ୟବହାର ଲାଗି ଉପଯୁକ୍ତ ନ ହୋଇ ଥିବାରୁ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ପ୍ରକାରର ଛୋଟ ଟୋପି ପରି ପଗଡ଼ି ସୃଷ୍ଟି ହେଲା, ଯାହାକି ଆଗରୁ ରେଡ଼ିମେଡ ବଂଧା ହୋଇଥାଏ । ଯଥା- ଉତ୍ତର ଭାରତରେ ଶମ୍ଲା, ମହାରାଷ୍ଟ୍ରରେ ଫେଟା ଇତ୍ୟାଦି । ଏହାର ସବୁଠାରୁ ଜଣା ପରିଚିତ ନମୁନା ହେଲା ଲୋକମାନ୍ୟ ତିଲକ ଓ ଗୋପାଳକୃଷ୍ଣ ଗୋଖଲେ ଇତ୍ୟାଦି ପିଂଧୁଥିବା ଶିରସ୍ତ୍ରାଣ । କିନ୍ତୁ ଏହା ଅପେକ୍ଷା ଟୋପି ବେଶୀ ପ୍ରଚଳିତ ହୋଇଗଲା । ପ୍ରକୃତରେ ଟୋପି ପଗଡ଼ିର ଏକ ସଂକ୍ଷିପ୍ତ ସଂସ୍କରଣ ମଧ୍ୟ । ମୁସଲମାନ ପଗଡ଼ି ଏକ ଟୋପି ଉପରେ ବନ୍ଧା ଯାଉଥିଲା ଯାହାର ନାମ ଥିଲା କୁଲ୍ଲା । ପରେ ପଗଡ଼ିଟା ଫିଟାଇ ଖାଲି କୁଲ୍ଲାଟା ମୁଣ୍ଡରେ ରହୁଥିଲା । ସେହି କୁଲ୍ଲାର ନାନା ପରିବର୍ତ୍ତନ ହୋଇ ନାନା ପ୍ରକାର ଟୋପି ହେଲା ।

ଇଂରେଜମାନେ ଭାରତ ଜୟ କରିବା ପରେ ସମସ୍ତ ଭାରତୀୟ ବିଶେଷ କରି ମୋଗଲ ପ୍ରଥାକୁ ହେୟ ଓ ତୁଚ୍ଛ ପ୍ରତିପାଦନ କରିବାକୁ ଲାଗିପଡ଼ିଲେ । ଏହାର ଚରମ ପ୍ରକାଶ ମ୍ୟାକଲେଙ୍କ ଉଦ୍ଧତ ଉକ୍ତି "ପ୍ରାଚ୍ୟ ଦେଶର ସମସ୍ତ ଜ୍ଞାନ ୟୁରୋପର ଲାଇବ୍ରେରୀର ବହି ଆଲମାରୀର ଗୋଟିଏ ଥାକ ସଙ୍ଗେ ସମାନ ନୁହେଁ ।" ଆଉ ଏକ ଫଳ ହେଲା ଯେ ଭାରତର ଉଚ୍ଚପଦସ୍ଥ ଲୋକମାନଙ୍କ ପୋଷାକରେ ଇଂରେଜମାନେ ତାଙ୍କ ଚାକରମାନଙ୍କୁ ଅର୍ଥାତ୍ ଖାନ୍‌ସାମା, ଅର୍ଦ୍ଦଲି, ଚପରାସୀମାନଙ୍କୁ ସଜ୍ଜିତ କଲେ । ଏହା ଭାରତୀୟମାନଙ୍କ ଉପରେ ମନସ୍ତାତ୍ତ୍ୱିକ ଆଘାତ କରୁଥିଲା ଏବଂ ଭାରତୀୟମାନଙ୍କର ହୀନମନ୍ୟତାକୁ ବଢ଼ାଉଥିଲା । ବର୍ତ୍ତମାନ ସେ ପ୍ରକାର ପୋଷାକ ଖାନ୍‌ସାମା ଅର୍ଦ୍ଦଲି ଶ୍ରେଣୀ ସହିତ ଲୋକମାନସରେ ସମ୍ପୃକ୍ତ ହୋଇଯାଇ ଥିବାରୁ, ଆଉ ତାର ପୁନରୁତ୍ଥାନ ସମ୍ଭବ ନୁହେଁ । ଏପରିକି ଅର୍ଦ୍ଦଲି ଗଣ ମଧ୍ୟ ଆଉ ସେ ପୋଷାକ ପିନ୍ଧିବାକୁ ଚାହେଁ ନୁହଁନ୍ତି । ସେମାନେ ମଧ୍ୟ ସଫାରି ସୁଟ ପରି ପୋଷାକ ଗ୍ରହଣ କରିଛନ୍ତି ।

ପାଶ୍ଚାତ୍ୟ ପୋଷାକ ପୃଥିବୀର ସବଂତ୍ର କର୍ମ କ୍ଷେତ୍ରରେ ତ ସ୍ୱୀକୃତ ପାଇ ସାରିଛି । ଆମେ ଅବଶ୍ୟ ଏଥିରେ କେତେକ ପରିବର୍ତ୍ତନ ମଧ୍ୟ କରିଛୁ ଯଥା ବନ୍ଦଗଲା ଓ

ସଫାରି ସୁଟ । କିନ୍ତୁ ପ୍ରକୃତ ଭାରତୀୟ ପୋଷାକ ହେଲା ଧୋତି, କୁରୁତା ବା ପାଇଜାମା କୁରୁତା । ବିଶେଷ କରି ପାଇଜାମା କୁରୁତା ଲୋକପ୍ରିୟ ହୋଇଯାଇଛି । ଟେରିକଟ୍ ବା ପଲିଷ୍ଟର ମିଶ୍ରିତ କନାର ଏହି ପୋଷାକର ସୁବିଧା ଅନେକ ଏବଂ ଦେଖିବାକୁ ମଧ୍ୟ ସୁନ୍ଦର । ଏହାହିଁ ମୋଗଲ ପୋଷାକର ଆଧୁନିକ ସଂସ୍କରଣ । ତେବେ ଯଦିଚ ଏହା ରାଜନୈତିକ କ୍ଷେତ୍ରରେ ସ୍ୱୀକୃତି ଲାଭକରି ସାରିଛି, ତଥାପି ଏ ପୋଷାକ ଏ ପର୍ଯ୍ୟନ୍ତ ଅଫିସ ମାନଙ୍କରେ ସ୍ୱୀକୃତ ହୋଇନାହିଁ । ସରକାରୀ କ୍ଷେତ୍ରରେ ଏ ପର୍ଯ୍ୟନ୍ତ ୧୯୫୪ ସାଲର ସର୍କୁଲାର ବଳବତ୍ତର ରହିଛି । ଅବଶ୍ୟ କାର୍ଯ୍ୟତଃ ଶେରୱାନି ଉଠି-ଗଲଣି ଏବଂ ଆନୁଷ୍ଠାନିକ ପୋଷାକ ବନ୍ଦଗଲା ସୁଟ୍ ହୋଇସାରିଛି । କିନ୍ତୁ ଏଥିରେ କୌଣସି ସମ୍ପୃକ୍ତ ଭାରତୀୟ ପୋଷାକର ଉଲ୍ଲେଖ ନାହିଁ ଫଳତଃ ଅନେକ ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହୋଇଛି ।

ଭାରତୀୟ ମହିଳାମାନେ ଏ ସମସ୍ୟାରୁ ରକ୍ଷା ପାଇଛନ୍ତି । ଅନ୍ୟାନ୍ୟ ପ୍ରାଚ୍ୟଦେଶ ମାନଙ୍କରେ ନାରୀମାନେ ସ୍କର୍ଟ ପିନ୍ଧିବା ଆରମ୍ଭ କରିଥିଲେ । ଭାରତୀୟ ଉପମହା-ଦ୍ୱୀପରେ ମହିଳାମାନେ କିନ୍ତୁ ପାଶ୍ଚାତ୍ୟ ସାଜସଜ୍ଜାର ମୋହକୁ ଆଡ଼େଇ ଦେଇ ପାରିଥିଲେ । ଏଣୁ ତାଙ୍କ ପକ୍ଷରେ କେବଳ ଦୁଇଟି ପୋଷାକ ଶାଢ଼ୀ ବା କମିଜ୍ । କମିଜ୍ ସାଥିରେ ଶଲୱାର ବା ଚୂଡ଼ିଦାର ରୀତି ଅନୁଯାୟୀ ପିନ୍ଧା ଯାଇପାରେ । ଏହି ଉଭୟ ପୋଷାକ ସୌନ୍ଦର୍ଯ୍ୟ, ଗରିମା ଓ ବ୍ୟବହାରିକତାରେ ଅନୁପମ । ଏଣୁ ନିୟମ ଦରକାର ପୁରୁଷ ପୋଷାକରେ । ଏ ବିଷୟରେ କୌଣସି ସର୍ବଗ୍ରାହ୍ୟ ପ୍ରଥା ନହେବା ପର୍ଯ୍ୟନ୍ତ ଆନନ୍ଦଶଙ୍କରଙ୍କ ପରି ଅନେକଙ୍କୁ ଅପମାନ ସହ୍ୟ କରିବାକୁ ପଡ଼ିପାରେ । ପ୍ରଥମ ଦରକାର ସରକାର ୧୯୫୪ ର ଆଦେଶକୁ ଯୁଗୋପଯୋଗୀ କରିବା । ଯଥା କେଉଁ ପ୍ରକାର ଭାରତୀୟ ପୋଷାକକୁ ଆନୁଷ୍ଠାନିକ ବା formal ବୋଲି ଗ୍ରହଣ କରାଯିବ । ଅର୍ଥାତ୍ ସରକାରୀ ରାଜିଭୋଜନକୁ କି ପ୍ରକାର ଭାରତୀୟ ପୋଷାକ ପିନ୍ଧି ଯିବାକୁ ହେବ, ଏହା ସ୍ଥିରହେବା ଉଚିତ୍ ।

ଏକଥା ମଧ୍ୟ ସତ୍ୟ ଯେ ପୋଷାକରେ ଯଥେଚ୍ଛାଚାରିତାକୁ ମଧ୍ୟ ଛାଡ଼ିଦେବା ଉଚିତ୍ ନୁହେଁ । ଉପଯୁକ୍ତ ପୋଷାକ ମଧ୍ୟ ଅନୁଶାସନରେ ଏକ ଅଙ୍ଗ । ଏ ବିଷୟରେ ବଡ଼ ବଡ଼ କମ୍ପାନୀମାନେ ସରକାରଠାରୁ ଢେର ବେଶୀ କଡ଼ା । ଅଧିକାଂଶ କମ୍ପାନୀରେ ସାର୍ଟ ଉପରେ ଟାଇ ବା ସଫାରି ସୁଟ୍ ବାଧ୍ୟତାମୂଳକ । ଅନେକ ସ୍ଥାନରେ ତ ସଫାରି ମଧ୍ୟ ସୁନଜରରେ ଦେଖାଯାଏ ନାହିଁ । ତେଣୁ ପୋଷାକରେ ମଧ୍ୟ ସେହି ସନାତନ ପ୍ରଶ୍ନ । ବ୍ୟକ୍ତି ସ୍ୱାଧୀନତା ଓ ଅନୁଶାସନ ମଧ୍ୟରେ ଭାରସାମ୍ୟ କେଉଁଠି ? ପୋଷାକରେ ବ୍ୟକ୍ତିସ୍ୱତନ୍ତ୍ରତା ସୀମିତ କାରଣ ଓଡ଼ିଆରେ ମଧ୍ୟ ପ୍ରବାଦ ଅଛି "ଆପରୁଚି ଖାନା ପରରୁଚି ପିନ୍ଧନା ।"



# ପାଦ୍ରି ସାହେବ

ପାଦ୍ରି କଥାଟା ଯେତେଦୂର ସମ୍ଭବ ପର୍ତ୍ତୁଗୀଜ ଭାଷାର PADRE ଅର୍ଥାତ୍ Fatherର ଅପଭ୍ରଂଶ । କେବଳ ରୋମାନ୍ କାଥଲିକ୍ ଖ୍ରୀଷ୍ଟାନ୍‌ମାନେ ତାଙ୍କ ଧର୍ମ-ଯାଜକଙ୍କୁ Father କହନ୍ତି । ତଥାପି ଏ ପାଦ୍ରି କଥାଟା ସମସ୍ତ ଖ୍ରୀଷ୍ଟାନ୍ ଧର୍ମପ୍ରଚାରକ କି ପ୍ରୋଟେଷ୍ଟାଣ୍ଟ୍, କି କାଥଲିକ୍ ସମସ୍ତଙ୍କ ଲାଗି ଭାରତୀୟ ଭାଷାମାନଙ୍କରେ ପ୍ରୟୋଗ ହୁଏ । ପ୍ରଥମ ଖ୍ରୀଷ୍ଟାନ ମିଶନାରୀ ଧର୍ମପ୍ରଚାରକ କେବେ ଯେ ଭାରତକୁ ଆସିଥିଲେ ତା କହିବା ସମ୍ଭବ ନୁହେଁ । କେରଳରେ ବିଶ୍ୱାସ କରାଯାଏ ଯେ ଯୀଶୁଙ୍କ ବାର ଜଣ ଆଦି ଶିଷ୍ୟଙ୍କ ମଧ୍ୟରୁ ଜଣେ ଅର୍ଥାତ୍ ଥମାସ୍ ଭାରତ ଆସି କେରଳରେ ଖ୍ରୀଷ୍ଟଧର୍ମ ପ୍ରଚାର କରିଥିଲେ । ତା ଯଦି ହୋଇଥାଏ ତା ହେଲେ ଖ୍ରୀଷ୍ଟଧର୍ମ ଭାରତରେ, ୟୁରୋପ ଅପେକ୍ଷା ବେଶୀ ଖାନଦାନୀ । କାରଣ ୟୁରୋପରେ ଧର୍ମ ପ୍ରଚାର କରିଥିଲେ ପାଉଲସ୍ ବା ପଲ୍ ଯେକି ପ୍ରଥମ ବାରଜଣ ଶିଷ୍ୟଙ୍କ ଠାରୁ ଅର୍ବାଚୀନ । ଏହାକୁ ଛାଡ଼ିଦେଲେ ମଧ୍ୟ ଖ୍ରୀଷ୍ଟଧର୍ମ ପ୍ରଚାରକ ଗଣ ପର୍ତ୍ତୁଗୀଜ ମାନଙ୍କ ଆଗରୁ ଭାରତକୁ ଆସି ଯାଇଥିଲେ । ୧୨୯୨ ରେ ଦୁଇଜଣ ଇଟାଲୀର ରୋମାନ୍ କାଥଲିକ୍ ପାଦ୍ରି ଜନ୍ ଓ ନିକୋଲାସ ଭାରତକୁ ଆସିଥିଲେ ଏବଂ କେରଳର କୁଇଲନ୍‌ରେ ରୋମାନ୍ କ୍ୟାଥଲିକ୍ ଡ଼ାୟୋସିସ୍ ସ୍ଥାପନ କରିଥିଲେ । କିନ୍ତୁ ଏମାନେ ସର୍ବଭାରତୀୟ ସ୍ତରରେ କୌଣସି ପ୍ରଭାବ ପକାଇ ପାରି ନଥିଲେ । ଏମାନଙ୍କର ପ୍ରଭାବ କେବଳ ପଶ୍ଚିମ ଉପକୂଳର କେତେକ ସ୍ଥାନରେ ହିଁ ସୀମିତ ଥିଲା ।

ପ୍ରକୃତ ଧର୍ମ ପ୍ରଚାର ଆରମ୍ଭ ହେଲା ବ୍ରିଟିଶ୍ ଶାସନ ସଙ୍ଗେ ସଙ୍ଗେ । ପ୍ରଥମେ ପ୍ରଥମେ ଇଷ୍ଟଇଣ୍ଡିଆ କମ୍ପାନୀ ଓ ପାଦ୍ରି ସାହେବଙ୍କୁ ମୋଟେ ସାହାଯ୍ୟ କରୁନଥିଲା । କମ୍ପାନୀ ଆସିଥିଲା ବର୍ଣିକର ମାନଦଣ୍ଡ ନେଇ ଓ ଧୀରେ ଧୀରେ ତାକୁ ରାଜଦଣ୍ଡରେ ପରିଣତ କରିବାର ଚେଷ୍ଟା କରୁଥିଲା । ଏ ସମୟରେ ହିନ୍ଦୁ ପ୍ରଜା ଓ ମୁସଲମାନ ନବାବ ଉଭୟଙ୍କର ମନଧରି ଚାଲିବା ଦରକାର । ପାଦ୍ରି ସାହେବଙ୍କ ବକ୍ତୃତା ଉଭୟ ସମ୍ପ୍ରଦାୟକୁ ଉତ୍ତ୍ୟକ୍ତ କରି ରାଜନୈତିକ ଓ ସାମରିକ ଉଦ୍ୟମରେ ନାନାପ୍ରକାର ବାଧା ସୃଷ୍ଟି କରି ପାରିଥାନ୍ତା । ତା ଛଡା ସେ ସମୟରେ ଭାରତରେ ଥିବା ଇଂରେଜମାନଙ୍କର ପରିବାର ସାଧାରଣତଃ ଏଠାରେ ନଥିଲା । ଛୁଟି ନେଇ ଇଂଲଣ୍ଡ ଯିବା ପ୍ରାୟ ଅସମ୍ଭବ ।

ପନ୍ଦର ବା କୋଡ଼ିଏ ବର୍ଷ ପରେ ଥରେ ଯାଇ ହେଉଥିଲା । ଅଧିକାଂଶ ସାହେବ ଲାଗି ପଡ଼ିଥିଲେ ଅର୍ଥ ଉପାର୍ଜନରେ ତା ସତ୍ ହେଉ ବା ନହେଉ । ଲକ୍ଷ୍ୟ ଥିଲା ବିତ୍ତଶାଳୀ ହୋଇ ଦେଶକୁ ଫେରିବେ । ଧନ ଥିଲେ ଇଂଲଣ୍ଡରେ କଣ ନ ମିଳିବ । ଇଂଲଣ୍ଡରେ ଜମିଦାରୀ ଲର୍ଡ ବଂଶରୁ ପତ୍ନୀ, ପାର୍ଲିଆମେଣ୍ଟରେ ଆସନ, ସାମାଜିକ ପ୍ରତିଷ୍ଠା ସବୁ କଣା ଯାଇପାରିବ । ଏହି ଭାରତ ଫେରନ୍ତା ହଠାତ ବଡ ଲୋକଙ୍କୁ ସେ ସମୟରେ ଇଂଲଣ୍ଡରେ କୁହାଯାଉଥିଲା Nobob । ଏଭଳି ଅର୍ଥ ଉପାର୍ଜନ କରିବାକୁ ହେଲେ ପ୍ରଭୁ ଯୀଶୁଙ୍କ ଉପଦେଶ ଠାରୁ ବେଶ୍ କିଛି ଦୂରତ୍ୱ ରକ୍ଷା କରିବାକୁ ହେବ । ପୁଣି ଯେଉଁ ଇଂରେଜମାନେ ଭାରତକୁ ଆସୁଥିଲେ, ସେମାନେ ଶଙ୍କରାଚାର୍ଯ୍ୟ ବା ସେଣ୍ଟ୍ ଫ୍ରାନସିସ୍ ନଥିଲେ । ସୁଦୀର୍ଘ ପନ୍ଦର କୋଡ଼ିଏ ବର୍ଷ ବ୍ରହ୍ମଚର୍ଯ୍ୟ ରହିବା ତାଙ୍କ ପକ୍ଷରେ ଏକ ଅସମ୍ଭବ ବ୍ୟାପାର । ଏଣୁ ଏଠି ଦେଶୀ ରକ୍ଷିତାର ବନ୍ଦୋବସ୍ତ ହୋଇଯାଉଥିଲା । କଲିକତାର ପ୍ରତିଷ୍ଠାତା ଜବ ଚାର୍ଣ୍ଣକଙ୍କର ହିନ୍ଦୁ ପତ୍ନୀ ଥିଲେ ଓ ସେ ନିଷ୍ଠାର ସହିତ ହିନ୍ଦୁ ଧର୍ମ ପାଳନ କରୁଥିଲେ । ଅନେକଙ୍କର ମୁସଲମାନ ବିବି ଥିଲେ ଓ ସେମାନେ ମଧ୍ୟ ତାଙ୍କ ଧର୍ମ ପାଳନ କରୁଥିଲେ । ମୋଟାମୋଟି ସମସ୍ତେ ଖୁସି ଏବଂ କାହାର ଗରଜ ପଡିଛି ଯେ କୁଣ୍ଡା ଖୋଳି ନାହକୁଲି ଆହ୍ୱାନିଲି ପରି, ପାଦ୍ରୀ ସାହେବଙ୍କୁ ନିମନ୍ତ୍ରଣ କରିବା ।

ତେବେ ଧୀରେ ଧୀରେ ଏହି ଅବସ୍ଥାର ପରିବର୍ତ୍ତନ ଘଟିଲା । ବାଷ୍ପଚାଳିତ ଜାହାଜ ଯୋଗୁଁ ଇଂଲଣ୍ଡ ଯିବାକୁ କମ୍ ସମୟ ଲାଗିଲା । ସାହେବମାନେ ଛୁଟିରେ ଗଲେ ଓ ମେମ୍ ସାହେବମାନେ ଭାରତ ଆସିଲେ । ଫଳତଃ ସାହେବଙ୍କ ଜେନାନାରେ ଇଙ୍ଗଭାରତୀୟ ସହଅବସ୍ଥାନର ପରିସମାପ୍ତି ଘଟିଲା । ପୁଣି ସେ ସମୟଟା ବ୍ରିଟେନରେ ଭିକ୍ଟୋରିଆଙ୍କ ସମୟ । ସେ ସମୟରେ ଖ୍ରୀଷ୍ଟାନ ଧର୍ମକୁ ବ୍ରିଟିଶ ଶାସନର ଏକ ଅଂଶୀ-ଦାର ରୂପେ ଦେଖିବା ଆରମ୍ଭ ହୋଇଯାଇଥିଲା । ଏଣୁ ଇଂରେଜ ଅଫିସର୍‌ଗଣ କେତେକଟା ନିଜ ଅନ୍ତଃକରଣର ଆହ୍ୱାନରେ ଓ କେତେକଟା ମେମ୍ ସାହେବଙ୍କ ଚାପରେ, ମିଶନାରୀ ପାଦ୍ରି ସାହେବଙ୍କ ପ୍ରତି ସହାନୁଭୂତି ଦେଖାଇଲେ । ଫଳତଃ ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଅଂଶରେ ପାଦ୍ରି ସାହେବ ଭାରତରେ ନିରଙ୍କୁଶ ଧର୍ମ ପ୍ରଚାର କଲେ । ଅବଶ୍ୟ କେବଳ କେତେକ ଉପଜାତୀୟ ଅଞ୍ଚଳ ଛାଡିଦେଲେ ସେମାନଙ୍କୁ କୌଣସି ଉଲ୍ଲେଖଯୋଗ୍ୟ ସଫଳତା ମିଳିନାହିଁ । ଉପଜାତି ଅଞ୍ଚଳରେ ସେମାନଙ୍କର ସଫଳତାର ଅନେକ କାରଣ ଅଛି, ଯାହା ଆଲୋଚନା କଲେ ଗ୍ରନ୍ଥ ହୋଇଯିବ । ଏଠି ସେ ଆଲୋଚନା ଅବାନ୍ତର ।

ତେବେ ପାଦ୍ରି ସାହେବ ଯେ ଇଂରେଜ ଶାସନଠାରୁ ସମ୍ପୂର୍ଣ୍ଣ ସହଯୋଗ ପାଉଥିଲେ ତା ନୁହେଁ । ପାଦ୍ରି ସାହେବଙ୍କର ବ୍ରିଟିଶ୍ ସାମ୍ରାଜ୍ୟ ସହିତ ସମ୍ପର୍କ ସହଯୋଗ ଓ ସଂଘର୍ଷର ଇତିହାସ । ବ୍ରିଟିଶ ସାମ୍ରାଜ୍ୟର ଦୃଷ୍ଟିରେ ଭାରତ ଜନବଳ ଓ ଧନବଳର

ଏକ ଉଣ୍ଡାର ଯାହାକ ସାମ୍ରାଜ୍ୟର ଶକ୍ତିବୃଦ୍ଧି କରିବାରେ ବ୍ୟବହୃତ ହେବ । ଏଥିଲାଗି ପ୍ରଜାଙ୍କୁ ଯେତେଦୂର ସମ୍ଭବ ଶାନ୍ତ ରଖିବାକୁ ହେବ । ସେମାନଙ୍କର ଧାର୍ମିକ ବିଶ୍ୱାସରେ ଆଘାତ ହେଲେ ସିପାହୀ ବିଦ୍ରୋହ ପରି ଗୋଳମାଳ ହୋଇପାରେ । କିନ୍ତୁ ପାଦ୍ରି ସାହେବଙ୍କ ଦୃଷ୍ଟିଭଙ୍ଗୀ ବିଲକୁଲ ଅଲଗା । ଭାରତରେ ଯେଉଁ ଅସଂଖ୍ୟ ହିନ୍ଦୁ (ପୌତ୍ତଳିକ) ଅଛନ୍ତି ସେମାନଙ୍କର ମଧ୍ୟ ଆତ୍ମା ଅଛି ଓ ସେମାନଙ୍କୁ ପ୍ରଭୁଙ୍କ ସୁସମାଚାର ଶୁଣାଇ ଉଦ୍ଧାର କରିବାକୁ ହେବ । ଏହାଦ୍ୱାରା ସେମାନେ ସ୍ୱୀକାର କଲେ ଯେ ଭାରତୀୟ ମଧ୍ୟ ମନୁଷ୍ୟ ଓ ତାର କେତେକ ମାନବିକ ଅଧିକାର ଅଛି । ଫଳତଃ କେତେକ ପାଦ୍ରି ବ୍ରିଟିଶ ଶୋଷଣର ବିରୋଧିତା ମଧ୍ୟ କରିଥିଲେ । ସବୁଠାରୁ ବଡ଼କଥା ସେମାନେ ଭାରତୀୟଙ୍କ ଭିତରେ ଇଂରେଜୀ ଶିକ୍ଷାର ପ୍ରସାର ଲାଗି ବହୁ ପରିଶ୍ରମ କରିଥିଲେ ।

ପାଦ୍ରିଙ୍କର ପ୍ରଥମ ଲକ୍ଷ୍ୟ ଥିଲା ଧର୍ମ ପ୍ରଚାର । ଏଣୁ ସେମାନେ ଦେଖିଲେ ଯେ ଜନସାଧାରଣଙ୍କ ପାଖକୁ ଖ୍ରୀଷ୍ଟଧର୍ମକୁ ନେବାକୁ ହେଲେ ଲୋକଭାଷାକୁ ହିଁ ମାଧ୍ୟମ କରିବାକୁ ହେବ । ସେତେବେଳେ ଭାରତୀୟ ଭାଷାମାନଙ୍କରେ ଗଦ୍ୟ ଅବିକଶିତ । ବିଶେଷକରି ଉତ୍ତର ଭାରତରେ କାରଣ କଚେରିର ଭାଷା ଥିଲା ଫାର୍ସୀ । ଚିଠିପତ୍ର ଯେଉଁ ଭାଷାରେ ଲେଖାଯାଉଥିଲା ତାହା ଏକ ସଂସ୍କୃତ କିମାକାର ଖେଚେଡ଼ି ଭାଷା । ଯେପରି "ହୃଦକମଳକୁ ଦୋରସ୍ତି କର" ଇତ୍ୟାଦି । ଏ ସମୟରେ ବାଇବଲ୍ ତର୍ଜମା ଲାଗି ପାଦ୍ରିଙ୍କୁ ଦେଶୀ ଭାଷାରେ ଗଦ୍ୟଶୈଳୀ ଆୟତ୍ତ କରିବାକୁ ହେଲା । ଏଥିଲାଗି ସେମାନେ ଭାରତୀୟ ପଣ୍ଡିତମାନଙ୍କର ସହାୟତା ନେଇ ଧୀରେ ଧୀରେ ଆଧୁନିକ ଗଦ୍ୟ ଶୈଳୀର ମୂଳ ପତ୍ତନ କଲେ । ବିଶେଷ କରି ବଙ୍ଗ ଦେଶରେ ଏମାନଙ୍କର ଭାଷା ଓ ଶିକ୍ଷା କ୍ଷେତ୍ରରେ ଅବଦାନ ବଙ୍ଗୀୟ ନବଜାଗରଣର ମୂଳପତ୍ତନ କରିଥିଲା । ସେ ସମୟରେ ପଞ୍ଚକନ୍ୟାର ଏକ ପ୍ୟାରୋଡ଼ି ବଙ୍ଗ ଦେଶରେ ପ୍ରଚଳିତ ଥିଲା ।

"ହେୟାର, କଲଭିନ୍, ପାମରଷ୍ଟ, କେରି, ମାର୍ଶମ୍ୟାନ ତଥା
ପଞ୍ଚଗୋରା ସ୍ମରେ ନିତ୍ୟଂ, ମହାପାତକ ନାଶନମ୍"

ଯଦିଚ ଏହା କେତେକ ଇଙ୍ଗ ବଙ୍ଗଙ୍କର ଅତିଶକ୍ତି ଇଂରେଜ ଭକ୍ତିକୁ ବିଦ୍ରୂପ କରି ଲେଖା ଯାଇଥିଲା, ତଥାପି ଏହା ଧ୍ରୁବସତ୍ୟ ଯେ ଉକ୍ତ ପଞ୍ଚ ଗୋରାଙ୍କର ଶିକ୍ଷା କ୍ଷେତ୍ରରେ ଅବଦାନ ଅବିସ୍ମରଣୀୟ ।

ଓଡ଼ିଶା ଓ ଆସାମରେ ମଧ୍ୟ ପାଦ୍ରିମାନେ ଓଡ଼ିଆ ଓ ଅସମିୟା ଭାଷା ଲାଗି ଲଢିଛନ୍ତି । ଯେତେବେଳେ ଓଡ଼ିଶା ଓ ଆସାମ ଉପରେ ବଙ୍ଗାଳୀ ଚ୍ଛାଇ ହୋଇଗଲେ ଓ "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ" ଓ "ଅସମିୟା ବଂଗଲାର କଥିତ ବିକୃତ ରୂପ" ଇତ୍ୟାଦି ପ୍ରଚାର ଯୋରସୋରରେ ଚାଲିଥିଲା, ସେତେବେଳେ ପାଦ୍ରିମାନେ ଓଡ଼ିଆ ଓ ଅସମୀୟା ସପକ୍ଷରେ ମତ ଦେଇଥିଲେ ଓ ସରକାର ଉପରେ ଏହାକୁ ଶିକ୍ଷା ଓ କଚେରୀ ଭାଷା କରିବାପାଇଁ ଚାପ ପକାଇଥିଲେ ।

ମନେହୁଏ ଅନେକ ପାଦ୍ରି ଭାରତୀୟ ତତ୍କାଳୀନ ସମାଜର ଏବଂ ଇଂରେଜ ଶାସନର ଭୟଙ୍କର ରୂପକୁ ଉପଲବ୍ଧି କରି ପାରିଥିଲେ । ଯେ ବି ଫିଅର କହିଛନ୍ତି- "ବଙ୍ଗ ଦେଶର ନିଦାରୁଣ ଦାରିଦ୍ର୍ୟର ସ୍ୱରୂପ ଇଂରେଜ ଜାଣନ୍ତି ନାହିଁ । ଜଣେ ପୁରୁଷ ଲୋକର ଖାଦ୍ୟର ଖର୍ଚ୍ଚ ମାସକରେ ଦେଢ଼ ଟଙ୍କା ଓ ଜଣେ ସ୍ତ୍ରୀଲୋକର ବାରଅଣା । ଅଥଚ ଲୁଣ ଟିକସ ଗୋଟେ ପରିବାର ଉପରେ ପଡ଼େ ହାରାହାରି ମୁଣ୍ଡପିଛା ବର୍ଷକୁ ସାତ ଟଙ୍କା ।" ଆଉ ଜଣେ (G. A. Macllay) ଲେଖିଛନ୍ତି "ଭାରତୀୟ ଗ୍ରାମବାସୀ ଲାଗି ଖାଦ୍ୟାଭାବ ସର୍ବଦା ଆଖି ଆଗରେ ଓ ତା ପଛରେ ଦୁର୍ଭିକ୍ଷ । କିନ୍ତୁ ବିଡ଼ମ୍ବନା ଏହି ଯେ ସେ ରହୁଛି ସମ୍ପଦର ଏକ ସ୍ୱପ୍ନ ଦେଶରେ । ଚାରିଆଡ଼େ ଶସ୍ୟ-ଶ୍ୟାମଳା ଭୂମି ଏବଂ ତା ଭିତରେ ଗ୍ରାମବାସୀ ଖଟି ଖଟି ଉପବାସରେ ରହୁଛି । ତା'ର ପରିଶ୍ରମ ଉପରେ ବଞ୍ଚୁଛନ୍ତି ଶହ ଶହ ଲାଲ କୁର୍ତ୍ତାଧାରୀ ସିପାହୀ, ସୁନେଲି ତକମା ବାଲା ଚପରାସୀ ଏବଂ କେତେ କେତେ ବିଭିନ୍ନ ବିଭାଗର ଅଫିସର ।

ଆଉ ଏକ ପାଦ୍ରି (Rev. W. Urwick) କହିଛନ୍ତି "ଖାଲି ଟିକସ ଓ ଟିକସ । ତା ମଧ୍ୟରେ ତାର ହୁକା ଖଣ୍ଡିକ ହିଁ ଏକମାତ୍ର ସାନ୍ତ୍ୱନା । ସେ ପ୍ରତିବାଦ କରି ପାରେନାହିଁ । ତାର ଏକମାତ୍ର ପ୍ରତିବାଦ ଓ ଶେଷ ପ୍ରତିଶୋଧ ଦୁର୍ଭିକ୍ଷରେ ମୃତ୍ୟୁ ।" ଅନ୍ୟତ୍ର ସେ ହିନ୍ଦୁ ଓ ଇଂରେଜ ସମାଜକୁ ତୁଳନା କରି କହୁଛନ୍ତି "ଉଭୟ ସମାଜରେ ବ୍ରାହ୍ମଣ ଓ ଶୂଦ୍ର ଦେଖିବାକୁ ମିଳେ । କାଳୀଘାଟରେ ହିନ୍ଦୁ ପୌତ୍ତଳିକତା ଓ ଜାତିବାଦର ଉଳଙ୍ଗ ରୂପ ଦେଖିବାକୁ ମିଳେ ଏବଂ ସନ୍ଧ୍ୟାବେଳେ ଇଡ଼େନ ଗାର୍ଡେନରେ ଆଂଲୋଇଣ୍ଡିଆନ୍ ଜାତି ପ୍ରଥାର ନିର୍ଲଜ୍ଜ ପ୍ରଦର୍ଶନୀ । ପୌତ୍ତଳିକର ଗର୍ବ ବା ସାହେବଙ୍କ ଗର୍ବ ଏ ଦୁହିଁଙ୍କ ଭିତରୁ କେଉଁଟା ବେଶି ଅଯୌକ୍ତିକ ଓ ଅକ୍ଷମଣୀୟ ଠିକ୍ କରିବା କଷ୍ଟ ।"

ଏହି ଭାବଧାରାର ପରିଣତି ଘଟିଥିଲା ଦୀନବନ୍ଧୁ ସି ଏଫ୍ ଆଣ୍ଡ୍ରୁଜଙ୍କ ଭଳି ମହାପ୍ରାଣଙ୍କ ଠାରେ । ବର୍ତ୍ତମାନ ଗୋରା ପାଦ୍ରିଙ୍କ ସଂଖ୍ୟା ମୁଷ୍ଟିମେୟ ଓ ବର୍ଷକୁ ବର୍ଷ କମି କମି ଯାଉଛି । ଖ୍ରୀଷ୍ଟଧର୍ମ ପ୍ରଚାର ଲାଗି ଭାରତୀୟ ଧର୍ମଯାଜକ ଅନେକ ଅଛନ୍ତି । ଏଣୁ ଯେଉଁ ପାଦ୍ରିମାନଙ୍କୁ ନେଇ ଏହି ପ୍ରବନ୍ଧ ସେମାନେ ଆଉ ନାହାନ୍ତି । କିନ୍ତୁ ଉପରେ ଯେଉଁ ଜାଗ୍ରତ ବିବେକର ନମୁନା ଦିଆଗଲା, ତା ନିଃଶେଷ ହୋଇନାହିଁ । ପୃଥିବୀର ଅନେକ ସ୍ଥାନରେ ଖ୍ରୀଷ୍ଟାନ୍ ଧର୍ମଯାଜକଙ୍କ ଭିତରୁ ଏକ ମୁଷ୍ଟିମେୟ ଶ୍ରେଣୀ ଜନସାଧାରଣଙ୍କ ଲାଗି ସଂଗ୍ରାମ, ଦରକାର ହେଲେ ସଶସ୍ତ୍ର ସଂଗ୍ରାମରେ ଭାଗନେଇଛି । ଏହା ଅବଶ୍ୟ ରୋମ୍‌ର ପସନ୍ଦ ହୋଇନାହିଁ । କିନ୍ତୁ ସେମାନେ ରୋମ୍‌ର ଶାସନ ଠାରୁ ବିବେକର ବାର୍ତ୍ତାକୁ ଯୀଶୁଖ୍ରୀଷ୍ଟଙ୍କର ବେଶୀ ନିକଟବର୍ତ୍ତୀ ବୋଲି ଭାବିଛନ୍ତି ଏବଂ ଫଳତଃ ପାଇଛନ୍ତି ବହୁ ନିର୍ଯାତନା । କିନ୍ତୁ ସେମାନେ ସେହି ନିର୍ଯାତନାକୁ ନିଜର ଚରମ ଗୌରବ ଏବଂ ଯୀଶୁଙ୍କ ନିକଟବର୍ତ୍ତୀ ହେବାର ମାଧ୍ୟମ ମନେ କରିଛନ୍ତି । ଯୀଶୁଙ୍କୁ ତ କଣ୍ଟାର ମୁକୁଟ ପିନ୍ଧାଇ ଓ କ୍ରୁଶ ବୁହାଇ ବଧଭୂମିକୁ ନିଆଯାଇଥିଲା ।

□ □ □

# ନାଦିର ଶାହ ଓ ଦିଲ୍ଲୀ

ନାଦିର ଶାହର ଆକ୍ରମଣକୁ ପ୍ରାଚୀନ ଦିଲ୍ଲୀ ଏକ ଦୁଃସ୍ୱପ୍ନ ବୋଲି ଭାବି ନେଇଥିଲା । ସାଧାରଣତଃ ଇତିହାସରେ ଆମେ ପଢ଼ୁ ଯେ ନାଦିର ଶାହ ଏକ ପ୍ରଚଣ୍ଡ ଡକାୟତ ଯେ କି ଲୁଟିକରି ନେଇ ପଳାଇଲା । ଟଙ୍କା ଓ ପ୍ରଜା ଉପରେ ତାର ପ୍ରଭାବ କ୍ଷଣସ୍ଥାୟୀ । କିନ୍ତୁ ପ୍ରକୃତରେ ତା କଣ ସତ୍ୟ । କଣ ନାଦିର ଶାହର ଆକ୍ରମଣ ଘୂର୍ଣ୍ଣିବାତ୍ୟା ପରି ଆକସ୍ମିକ ? ନା ବହୁଦିନ ଧରି ଏହା ଲାଗି ପ୍ରସ୍ତୁତି ଚାଲିଥିଲା । ଏହାକୁ ରୋକାଯାଇ ପାରିଥାଆନ୍ତା କି ? ଏହିପରି ଅନେକ ପ୍ରଶ୍ନ ଅଛି ଯାହା ବିଷୟରେ ଆଲୋଚନା କରିବା ଉଚିତ୍, କାରଣ ସେ ସବୁ ପ୍ରଶ୍ନ ବର୍ତ୍ତମାନ ମଧ୍ୟ ପ୍ରାସଙ୍ଗିକତା ହରାଇ ନାହାନ୍ତି ।

ନାଦିର ଶାହଙ୍କ ପରି ବ୍ୟକ୍ତି ଇତିହାସରେ ବିରଳ ନୁହନ୍ତି । ଯେତେବେଳେ ଶାସନର ମୂଳଦୁଆ ଭୁଷୁଡ଼ି ଆସେ ଓ ଶାସନ ଓ ସମାଜର କଡ଼ିକାଠ ପରି କାମ କରୁଥିବା ସଂସ୍ଥା ଗୁଡ଼ିକ ଦୁର୍ବଳ ହୋଇ ପଡ଼ନ୍ତି ସେତେବେଳେ ଏକ ସଙ୍କଟ ପରିସ୍ଥିତି ଦେଖାଯାଏ । ଅନୁଶାସନର ପ୍ରଭାବ ନଥିବାରୁ କ୍ଷମତା ଉପରେ ଅଧିକାର ଅବ୍ୟବସ୍ଥିତ ହୋଇଯାଏ । ଏହି ସମୟଟା ଭାଗ୍ୟାନ୍ୱେଷୀ ଜୁଆଡ଼ିଙ୍କର ପୌଷମାସ । ଏମାନଙ୍କର ମଧ୍ୟରେ ଯେଉଁମାନଙ୍କର ସାଙ୍ଗଠନିକ କ୍ଷମତା ଥାଏ ଓ ଯେଉଁମାନେ ନୂତନ ଅନୁଶାସନ ପ୍ରବର୍ତ୍ତନ କରିପାରନ୍ତି ସେମାନେ ସାମ୍ରାଜ୍ୟ ସ୍ଥାପନ କରନ୍ତି ବା ନୂତନ ରାଷ୍ଟ୍ର ଗଠନ କରନ୍ତି । ଯେଉଁମାନଙ୍କର ତା ନଥାଏ ସେମାନେ ଜାତିର ଦୁଃସ୍ୱପ୍ନ ବା ଦୁଷ୍କାଳ । କାରଣ ସେମାନେ ଭାଙ୍ଗନ୍ତି, କିନ୍ତୁ ଗଢ଼ିପାରନ୍ତି ନାହିଁ । ତଥାପି ଏମାନଙ୍କର ମଧ୍ୟ ଐତିହାସିକ ଆବଶ୍ୟକତା ଅଛି । ଏମାନେ ନିଜେ ନ ଗଢ଼ିଲେ ମଧ୍ୟ ନୂତନ ଗଠନ ଲାଗି କ୍ଷେତ୍ର ପରିଷ୍କାର କରି ଦିଅନ୍ତି ।

ନାଦିର ଶାହଙ୍କର ଅଭ୍ୟୁଦୟ ମଧ୍ୟ ସେହିପରି । ସେ ସମୟରେ ଏସିଆର ଦୁଇଟି ମହାନ ସାମ୍ରାଜ୍ୟ ଭାଙ୍ଗି ପଡ଼ୁଥିଲା । ଇରାନରେ ସଫାୱୀ ସାମ୍ରାଜ୍ୟ ଓ ଭାରତରେ ମୋଗଲ ସାମ୍ରାଜ୍ୟ, ଉଭୟ ଭାଙ୍ଗିପଡ଼ିବା ଉପରେ । ଏ ଦୁଇ ସାମ୍ରାଜ୍ୟ ମଝିରେ ଆଫଗାନିସ୍ଥାନ ଯାହାକି ଏକ ଶାସନହୀନ ଅବ୍ୟବସ୍ଥିତ ଡକାୟତ ଦେଶ । ଆଇନ, ଅନୁଯାୟୀ ପୂର୍ବ ଆଫଗାନିସ୍ଥାନ ଅର୍ଥାତ କାବୁଲ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟର ଅଂଶ । ସେହିପରି ପଶ୍ଚିମ ଆଫଗାନିସ୍ଥାନ ଅର୍ଥାତ୍ ହେରାଟ୍ ଇତ୍ୟାଦି ଇରାନର ସଫାୱୀ

ସାମ୍ରାଜ୍ୟର ଅଂଶ ବୋଲି ଗଣା ଯାଉଥିଲା । ସେତେବେଳେ ଅଫଗାନିସ୍ଥାନ ବୋଲି କୌଣସି ରାଷ୍ଟ୍ର ନଥିଲା । ଏହି ସମୟରେ ଆଫଗାନସ୍ଥାନରେ ମହମ୍ମଦ ଖାନ୍ ନାମକ ଏକ ଦୁଃସାହସିକ ଆଫଗାନ ରାଜଧାନୀ ଇସ୍ପାହାନ ୧୭୨୨ ସାଲରେ ଦଖଲ କରିଥିଲା । ଏହି ଅବ୍ୟବସ୍ଥାର ସୁଯୋଗ ନେଲେ ଏକ ତୁର୍କ ଭାଗ୍ୟାନ୍ୱେଷୀ, ନାଦର କୁଲ୍ ଖାଁ । ସେ ଅବଶ୍ୟ ଇରାନ୍‌କୁ ଏହି ଦସ୍ୟୁର କବଳରୁ ମୁକ୍ତ କଲେ । କିନ୍ତୁ ପରେ ନିଜେ ଇରାନ୍‌ର ସିଂହାସନରେ ବସିଗଲେ ।

ଇରାନ୍ ଓ ଭାରତବର୍ଷ ମଧ୍ୟରେ ଏକ ବିରାଟ ପ୍ରଭେଦ ଅଛି । ଇରାନ୍‌ର ସୁନିର୍ଦ୍ଦିଷ୍ଟ ଭୌଗଳିକ ସୀମା ନାହିଁ । ଏଣୁ ଇରାନ ରାଜ୍ୟ କେତେବେଳେ ମଧ୍ୟ ଏସିଆ, ତୁର୍କି ଓ ଇରାକ ଆଡ଼କୁ ମାଡ଼ିଯାଏ ତ କେତେବେଳେ କ୍ଷୁଦ୍ର ଫାରସ ବା ଇସ୍ପାହାନ ପର୍ଯ୍ୟନ୍ତ ସୀମିତ ଥାଏ । ଏଣୁ ନାଦର ଶାହ ଇସ୍ପାହାନ ଅଧିକାର କଲାପରେ ନିଜର ରାଜ୍ୟର ସ୍ଥାୟିତ୍ୱ ଲାଗି ରାଜ୍ୟ ବଢାଇବାକୁ ବାଧହେଲେ । ତେବେ କେଉଁଆଡେ ଯିବେ । ସବୁଠାରୁ ସୁବିଧା ଆଫଗାନିସ୍ଥାନ । କିନ୍ତୁ ସେତେବେଳେ ଏହା ମୋଗଲ ସାମ୍ରାଜ୍ୟର ଏକ ଅଂଶ ଓ କାବୁଲରେ ମୋଗଲ ସୁବେଦାର ମଧ୍ୟ ଉପସ୍ଥିତ । କାବୁଲରେ ସୁବେଦାରଙ୍କର ପ୍ରଧାନ କାମ ହେଲା ଇରାନ୍ ଓ ମଧ୍ୟ ଏସିଆ ଉପରେ ଆଖି ରଖିବା । ଏଥିରେ ସେ ହେଲା କରି ନଥିଲେ ଓ ଦିଲ୍ଲୀକୁ ରିପୋର୍ଟ ମଧ୍ୟ ଦେଇଥିଲେ । କିନ୍ତୁ ହାୟ, ଶୁଣୁଛି କିଏ ? ସେତେବେଳେ ଦିଲ୍ଲୀର ସିଂହାସନରେ ସମ୍ରାଟ ମହମ୍ମଦ ଶାହ ଆସୀନ । ଏହି ମହାନୁଭବଙ୍କୁ ମହମ୍ମଦ ଶାହ ରଙ୍ଗିଲା ମଧ୍ୟ କୁହାଯାଏ । ସଙ୍ଗୀତରେ ପାରଦର୍ଶୀ ଥିଲେ ଓ ସେହିପରି କଳାନୁରାଗୀ । କିନ୍ତୁ ସୁରା ଓ ସାକି ଛଡା ଆଉ କିଛି ବୁଝୁ ନଥିଲେ । ବିଶେଷ କରି ଯୁଦ୍ଧ, କୂଟନୀତି ଇତ୍ୟାଦି ରସହୀନ ବିଷୟରେ ତାଙ୍କର ଆଦୌ ରୁଚି ନଥିଲା । ଏଣୁ କାବୁଲ ଓ କାନ୍ଦାହାରରେ ଯାହା ହେଉଛି ହେଉଥାଉ । ଏହା ଭିତରେ ପ୍ରାୟ ସମସ୍ତ ପ୍ରଧାନ ପଦାଧିକାରୀମାନେ ମହମ୍ମଦ ଶାହଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରୁଛନ୍ତି । ଏମାନଙ୍କ ମଧ୍ୟରେ ହାଇଦ୍ରାବାଦର ନିଜାମ ଆସଫଜାହ ଓ ଲକ୍ଷ୍ନୌର ସୁବେଦାର (ପରେ ନବାବ) ସାଦତ୍ ଖାଁ ପ୍ରଧାନ । ଏମାନେ ଗୋପନରେ ନାଦର ଶାହଙ୍କ ସଙ୍ଗେ ଯୋଗାଯୋଗ ରଖିଥିଲେ ଏବଂ ତାଙ୍କୁ ଭାରତ ଆକ୍ରମଣ କରିବାକୁ ପ୍ରବର୍ତ୍ତାଉ ଥିଲେ । ଏଣୁ ନାଦର ଶାହଙ୍କୁ କାନ୍ଦାହାର, ତାପରେ ଗଜନୀ ଓ ଶେଷରେ କାବୁଲ ଅଧିକାର କରିବାରେ କୌଣସି ଅସୁବିଧା ହେଲାନାହିଁ ।

ନାଦର ଶାହ କେବଳ ଡ଼ାକୁ ସରଦାର ନଥିଲେ । ସେ ଥିଲେ ପାରସ୍ୟ ସମ୍ରାଟ । ଏଣୁ କୂଟନୀତିରେ ମଧ୍ୟ ଦକ୍ଷ ଥିଲେ । ମୋଗଲ ଦରବାର ଏତେ ମୂର୍ଖ ଓ ଏକଦେଶ ଦର୍ଶି ହୋଇ ଯାଇଥିଲା ଯେ ସେମାନେ ପାରସ୍ୟ ସାମ୍ରାଜ୍ୟ ସହିତ କୂଟନୈତିକ ସମ୍ପର୍କ ମଧ୍ୟ ରଖିଲେ ନାହିଁ । ନାଦର ଶାହ କ୍ଷମତାକୁ ଆସିବା ପରେ ଇରାନରୁ ଅନେକ ଶରଣାର୍ଥୀ କାବୁଲ ଆଡ଼କୁ ପଳାଇ ଆସିଲେ । ଏ ନେଇ ଇରାନର

ଆପତ୍ତିର ଉପଯୁକ୍ତ ଉତ୍ତର ମୋଗଲ ଦରବାର ପକ୍ଷରୁ ଦିଆଗଲା ନାହିଁ । ଯାହାକି କୂଟନୈତିକ ମର୍ଯ୍ୟାଦା ଅନୁଯାୟୀ ନୁହେଁ । ଏପରିକି କୂଟନୈତିକ ପ୍ରତିନିଧିମାନଙ୍କୁ ଅଟକାଇ ରଖାଗଲା ଏବଂ ନାଦର ଶାହଙ୍କ ଚିଠିର ଉତ୍ତର ଦିଆଗଲା ନାହିଁ । ଏହା ଯେ ଅତ୍ୟନ୍ତ ଅନୁଚିତ କଥା ଏଥିରେ ସନ୍ଦେହ ନାହିଁ । ଏହା ନାଦର ଶାହଙ୍କୁ ଭାରତ ଆକ୍ରମଣ କରିବାର ଏକ ଯୁଦ୍ଧର କାରଣ ଯାହାକୁ କୂଟନୈତିକ ଭାଷାରେ CAUSUS BELLI କହନ୍ତି, ମିଳିଗଲା ।

ଏଣେ ଭାରତରେ ମରାଠା ଶକ୍ତିର ଅଭ୍ୟୁଦୟକୁ ଭାରତର ଓ ଭାରତ ବାହାରର ଅନେକ ମୁସଲମାନ ବଡ଼ ସନ୍ଦେହ ଓ ଭୟର ସହିତ ଲକ୍ଷ୍ୟ କରୁଥିଲେ । ସେ ସମୟଟା ପେଶୱା ବାଜିରାଓଙ୍କ ସମୟ । ଦିଲ୍ଲୀ ପର୍ଯ୍ୟନ୍ତ ତାଙ୍କର ଘୋଡ଼ା ଛୁଟୁଛି । ୧୭୩୭ ରେ ସେ ଦିଲ୍ଲୀ ଆକ୍ରମଣ କରିଥିଲେ ଓ ମୋଗଲ ସେନାକୁ ବିଦ୍ୟୁତ୍ ବେଗରେ ଆକ୍ରମଣ କରି ହଟାଇ ପାରିଥିଲେ । ଯମୁନାର ଦକ୍ଷିଣରେ ଥିବା ଦେଶ ମୋଗଲ ସମ୍ରାଟ ପେଶୱାଙ୍କୁ ଦେବାକୁ ବାଧ୍ୟହେଲେ । ଏହାକୁ ନାଦର ଶାହ ଏକ ଯୁଦ୍ଧର କାରଣ ରୂପେ ବ୍ୟବହାର କଲେ । ସେ ପ୍ରଚାର କଲେ ଯେ ହିନ୍ଦୁସ୍ଥାନରେ ଇସଲାମି ଶକ୍ତିର ପୁନଃସ୍ଥାପନା ଲାଗି ସେ ଭାରତ ଆସୁଛନ୍ତି । ମୋଟ କଥା ହେଲା ଯେ ଇରାନ ସବୁବେଳେ ଆଫଗାନିସ୍ଥାନ ଆଡ଼କୁ ବିସ୍ତାରର ଚେଷ୍ଟା କରେ । ଏଣୁ ବାବରଙ୍କ ସମୟରୁ କାବୁଲ ମୋଗଲ ସାମ୍ରାଜ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ହିସାବରେ ଥିଲା ଏବଂ ପ୍ରଥମ ପାଞ୍ଚ ମୋଗଲ ବାଦଶାହ ଠିକ୍ ବୁଝିଥିଲେ ଯେ ଭାରତର ସୁରକ୍ଷା କାବୁଲର ସୁରକ୍ଷା ଉପରେ ନିର୍ଭର କରେ । କିନ୍ତୁ ତାଙ୍କ ପରେ ଆଉ ଏ ବିଷୟରେ କିଛି କରିବାର ଇଚ୍ଛାଶକ୍ତି ଓ ଅଧିକାଂଶ ସମୟରେ କ୍ଷମତା ମଧ୍ୟ ନଥିଲା । ତେବେ ଭାରତରେ ଯେପରି ମୋଗଲ ବଂଶର ପତନ ଆରମ୍ଭ ହୋଇଥିଲା, ସେହିପରି ଇରାନରେ ମଧ୍ୟ ସଫାଓ୍ୱୀ ସାମ୍ରାଜ୍ୟର କ୍ଷୟ ଲାଗିଥିଲା । ଏଣୁ କେହି କାହାକୁ କିଛି କରି ପାରିନଥିଲେ । କିନ୍ତୁ ନାଦର ଶାହ ଇରାନର ରାଜା ହେବା ପରେ ଆଫଗାନିସ୍ଥାନ ଆଡ଼କୁ ତାଙ୍କ ଦୃଷ୍ଟି ଯିବା ସ୍ୱାଭାବିକ । ଏଥିରୁ ସ୍ପଷ୍ଟ ଯେ ମୋଗଲ ମାନଙ୍କର କୂଟନୈତିକ ସେବା ବା Diplomatic Service ଅତି ଦୁର୍ବଳ ଥିଲା । ଏଠି ବର୍ତ୍ତମାନ କାବୁଲର ଅବସ୍ଥା ବିଷୟରେ ଦୁଇପଦ କହିବା ଅପ୍ରାସଙ୍ଗିକ ହେବନାହିଁ । ଆଫଗାନିସ୍ଥାନର ଭାରତ ପକ୍ଷରେ ମହତ୍ତ୍ୱ ଅନେକ । ଆଫଗାନିସ୍ଥାନର ଆରମ୍ଭରୁ ଭାରତ ସହିତ ଭଲ ସମ୍ପର୍କ ଓ ପାକିସ୍ଥାନ ସହିତ ଖରାପ ସମ୍ପର୍କ । ଏହା ଭାରତର ସୁରକ୍ଷା ପ୍ରତି ଅତ୍ୟନ୍ତ ସହାୟକ କାରଣ ପାକିସ୍ଥାନକୁ ସେ ସୀମା ମଧ୍ୟ ଜଗିବାକୁ ହେବ । ମଝିରେ ଆଶଙ୍କା ହେଉଥିଲା ଯେ ରୁଷିଆର ସୈନିକ ହସ୍ତକ୍ଷେପ ପରେ ଆଫଗାନମାନେ ହୁଏତ ପାକିସ୍ଥାନ ପ୍ରତି ତାଙ୍କ ମତ ବଦଳାଇ ଦେଇଛନ୍ତି । କିନ୍ତୁ ବର୍ତ୍ତମାନ ରୁଷ୍ ସୈନ୍ୟ ଚାଲିଯିବାର ଏତେ ଦିନପରେ ସେହି ଆଫଗାନ ସରକାର ପାକିସ୍ଥାନର ଅନେକ ଚେଷ୍ଟା ସତ୍ତ୍ୱେ ସ୍ଥିର ରହିଛି । ଏଣୁ ଯେତେଦୂର ମନେହୁଏ ଆଗର ଅବସ୍ଥା ହିଁ ଚାଲିଛି ଓ ଭାରତ ପାକିସ୍ଥାନ ଆଫଗାନିସ୍ଥାନ ଶକ୍ତି ସନ୍ତୁଳନ ଆଗଭଳି ଅଛି ।

ବର୍ତ୍ତମାନ ନାଦର ଶାହଙ୍କ ପାଖକୁ ଫେରିଯିବା । ପ୍ରଥମରୁ ମନେ ରଖିବା ଉଚିତ ଯେ ନାଦର ଶାହଙ୍କର ଆକ୍ରମଣ ହଠାତ୍ ହୋଇ ନଥିଲା । ଏହି ଆକ୍ରମଣ ହେବବୋଲି ସ୍ପଷ୍ଟ ଜଣାଥିଲା । ୧୭୩୮ ରେ ଇରାନ ଭାରତ ଆକ୍ରମଣ ଲାଗି ସେନା ପ୍ରସ୍ତୁତ କରିବା ଆରମ୍ଭ କଲା । କିନ୍ତୁ କିଏ ପ୍ରତିକାର କରିବ । ଖାନ୍ ଦୌରାନଙ୍କ ଛଡ଼ା ପ୍ରାୟ ସବୁ ପ୍ରଧାନମନ୍ତ୍ରୀ ଗୁପ୍ତରେ ନାଦର ଶାହଙ୍କ ସଙ୍ଗେ ସମ୍ପର୍କ ରଖିଥିଲେ । ଏଣୁ ନାଦର ଶାହ ବିନା ବାଧାରେ ସମସ୍ତ ପଞ୍ଜାବ ଅତିକ୍ରମ କଲେ । ଶେଷରେ କରନାଲ ଠାରେ ଯୁଦ୍ଧ ହେଲା । ଏଥିରେ ମଧ୍ୟ ସେହି ପ୍ରକାର ଅପାରଗତା ଦେଖାଦେଲା । ଦିନ ଦିନ ଧରି ନାଦର ଶାହଙ୍କ ଆକ୍ରମଣକୁ ମୋଗଲ ସେନା ଅପେକ୍ଷା କରି ନିଜର ରସଦ ଧ୍ୱଂସ କଲା । ଯୁଦ୍ଧର କୌଣସି ଯୋଜନା ନଥିଲା । ଶେଷରେ ୧୪ ଫେବ୍ରୁୟାରୀ ୧୭୩୯ ରେ ଯୁଦ୍ଧହେଲା ଓ ମୋଗଲ ସେନା ପରାଜିତ ହେଲା ।

ମୋଗଲ ମାନଙ୍କର ଭୁଲର ଏକ ତାଲିକା କରାଯାଉ :

୧) ଯୁଦ୍ଧ ଏଡ଼ାଇବାର କୂଟନୈତିକ ଚେଷ୍ଟାର ସମ୍ପୂର୍ଣ୍ଣ ଅବହେଳା ।

୨) ନିଜର ସୀମାନ୍ତ ପ୍ରଦେଶ ଆଫଗାନିସ୍ଥାନର ସୁରକ୍ଷାରେ ଅବହେଳା ।

୩) ଚାରିମାସ କାଳ ଆକ୍ରମକାରୀ ପଞ୍ଜାବରେ ନିଜର ସେନା ଚାଳନ କରୁଥିବା ବେଳେ ତାକୁ କୌଣସି ପ୍ରକାର ବାଧା ନଦେବା ।

୪) ଯୁଦ୍ଧ ସମୟରେ କୌଣସି ହଠାତ୍ ଆବଶ୍ୟକତା ପାଇଁ ଅଲଗା ସେନା (Reserve) ନ ରଖିବା ।

୫) ନିଜର ରସଦ ଓ ଅନ୍ୟାନ୍ୟ ଆବଶ୍ୟକ ସାମଗ୍ରୀ ଆସିବାର ପଥର ସୁରକ୍ଷାର ବ୍ୟବସ୍ଥା ନ କରିଥିବା ।

ନାଦର ଶାହ ଭାରତ ଆସିଥିଲେ ଦୁଇଟି ଉଦ୍ଦେଶ୍ୟ ନେଇ । ପ୍ରଥମ ଆଫଗାନିସ୍ଥାନକୁ ମୋଗଲ ସାମ୍ରାଜ୍ୟରୁ ବିଚ୍ଛିନ୍ନ କରି ଇରାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବା । ଦ୍ୱିତୀୟତଃ ଲୁଟ୍‌କରି ଇରାନର ଅର୍ଥନୈତିକ ଅବସ୍ଥାର ଉନ୍ନତି କରିବା । ଉଭୟରେ ସେ ସଫଳ ହୋଇଥିଲେ । ଭାରତ ଆକ୍ରମଣରେ ସେ ଏତେ ଧନ ପାଇଥିଲେ ଯେ ଇରାନରେ ତିନବର୍ଷ ଲାଗି ସେ ସମସ୍ତ ଖଜଣା ଓ ଟିକସ ମାଫକରି ଦେଇଥିଲେ । ତାଛଡ଼ା ଇରାନକୁ ଦିଲ୍ଲୀରୁ ଅନେକ କାରିଗର ନେଇ ଯାଇଥିଲେ । ଏଥିରୁ ଗୋଟିଏ ଜିନିଷ ଅନୁମାନ କରିହୁଏ । ସେ ସମୟରେ ଏତେ ଅବ୍ୟବସ୍ଥା ସତ୍ତ୍ୱେ ମୋଗଲ ସାମ୍ରାଜ୍ୟ ଆର୍ଥିକ ଦୃଷ୍ଟିରୁ ଦିବାଳିଆ ନଥିଲା । ଜନବଳ ଓ ଧନବଳ ଉଭୟ ଥିଲା । ପ୍ରକୃତ ଅଭାବ ଥିଲା ସୁଦୃଢ଼ ନେତୃତ୍ୱର ।

ନାଦର ଶାହ ଦିଲ୍ଲୀରେ ଗଣହତ୍ୟା କରିଥିଲେ । ଗଣହତ୍ୟାର ସ୍ପଷ୍ଟ ଉଦାହରଣ ହିସାବରେ ନାଦର ଶାହଙ୍କର ଦିଲ୍ଲୀକାଣ୍ଡ ଏକ ପ୍ରକୃଷ୍ଟ ନମୁନା । ଏହି ଗଣହତ୍ୟା

ସକାଳଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଚାଲିଥିଲା । କେତେ ଲୋକ ମଲେ ତାର ସଠିକ୍ ହିସାବ ନାହିଁ । ତେବେ ଭିନ୍ନ ଭିନ୍ନ ଅନୁମାନ ୮୦୦୦ ରୁ ୩୦୦୦୦ ପର୍ଯ୍ୟନ୍ତ ମରିଥିବାର ଜଣାଯାଏ । ଦିଲ୍ଲୀର ଅନେକ ଅଂଶ ନଷ୍ଟ ହୋଇଗଲା । ତେବେ ଏହାର କାରଣ ଦିଲ୍ଲୀର ଜନତା ଓ ଗଣ୍ୟମାନ୍ୟ ଲୋକଙ୍କର ମୂର୍ଖତା । ନାଦର ଶାହଙ୍କର ସେନା ଦିଲ୍ଲୀ ବାହାରେ ଥିଲା । କେବଳ ନାଦର ଶାହଙ୍କର ଅଙ୍ଗରକ୍ଷୀ ସେନା ଦିଲ୍ଲୀ ଭିତରକୁ ପ୍ରବେଶ କରିଥିଲା । ଏଣୁ ସେମାନଙ୍କ ସଂଖ୍ୟା ବେଶି ନଥିଲା । ଆସିବାର ଦିନେ ଦୁଇଦିନ ପରେ ଇରାନୀ ସୈନିକ ଓ ଦିଲ୍ଲୀର ଦୋକାନଦାର ମାନଙ୍କ ମଧ୍ୟରେ ଗୋଲମାଳ ଆରମ୍ଭ ହୋଇଗଲା । ଖୁବ୍ ଶୀଘ୍ର ଏହା ଇରାନଙ୍କ ବିରୁଦ୍ଧରେ ଦଙ୍ଗାରେ ପରିଣତ ହୋଇଗଲା । ଏହାର ଏକ ପ୍ରଧାନ କାରଣ ହେଲା ନାଦର ଶାହଙ୍କର ମୃତ୍ୟୁର ଗୁଜବ । ଏଣୁ ଦଙ୍ଗାକାରୀ ମାନଙ୍କର ସାହାସ ବଢ଼ିଗଲା । ସେମାନେ ଅନେକ ଇରାନି ସୈନିକଙ୍କୁ ମାରି ପକାଇଲେ । ଭୟଙ୍କର ଦଙ୍ଗା ହେଲା । ସକାଳେ ନାଦର ଶାହ ତାଙ୍କ ସୈନ୍ୟମାନଙ୍କ ସହ ଚାନ୍ଦନୀଚୌକ ଗଲେ । ରାସ୍ତାରେ ଅନେକ ଇରାନି ସୈନିକଙ୍କର ଶବ ଦେଖିଲେ । ଏଥିରେ ତାଙ୍କର ରାଗିବାର କଥା । ସବୁଠାରୁ ବିପଦଜନକ ଘଟଣା ହେଲା ଯେ ନାଦର ଶାହ ସୁନହରି ମସଜିଦରେ ଠିଆ ହୋଇଥିବା ବେଳେ ତାଙ୍କ ଉପରକୁ ଗୁଳି ଚଳାଗଲା ଓ ଫଳତଃ ତାଙ୍କ ପାଖରେ ଠିଆ ହୋଇଥିବା ଜଣେ ଇରାନୀର ପ୍ରାଣ ଗଲା । ନାଦର ରାଗି ଦିଲ୍ଲୀବାସୀଙ୍କୁ ଉଚିତ ଦଣ୍ଡ ଦେବାକୁ ସ୍ଥିର କଲେ । ଏବଂ ତାଙ୍କ ହିସାବରେ ଇରାନୀ ସୈନ୍ୟମାନଙ୍କର ହତ୍ୟା ଓ ତାଙ୍କୁ ହତ୍ୟା କରିବାର ଚେଷ୍ଟାର ଉପଯୁକ୍ତ ଦଣ୍ଡ ଗଣହତ୍ୟା ।

ଏଠି ମନେ ରଖିବାର କଥା ଯେ ବ୍ରିଟିଶ ଭାରତ ଅଧିକାର କଲାପରି ନାଦର ଶାହ ଦିଲ୍ଲୀ ଅଧିକାର କରିନଥିଲେ । ଦିଲ୍ଲୀର ଶାସନ ବ୍ୟବସ୍ଥା ମୋଗଲମାନଙ୍କ ହାତରେ ଥିଲା । ଆଇନ ଶୃଙ୍ଖଳା ରକ୍ଷାକରିବା ମୋଗଲ କୋତୱାଲଙ୍କର କାମ । ସେଥିଲାଗି ତାଙ୍କ ପାଖେ ଯଥେଷ୍ଟ ସେନା ଥିଲେ । ସେ ଓ ଅନ୍ୟାନ୍ୟ ମୋଗଲ ଅଧିକାରୀମାନେ ଜାଣିଥିଲେ ଯେ ଇରାନୀ ସେନା ସହର ବାହାରେ ଅଛି ଓ ଇରାନୀଙ୍କ ବିରୁଦ୍ଧରେ ଦଙ୍ଗାର ଫଳ କଣ ହେବ । ପ୍ରଥମେ ଯେତେବେଳେ ଦରଦାମ ନେଇ ଗଣ୍ଡଗୋଳ ହେଲା ସେହି ସମୟରେ ହିଁ ହସ୍ତକ୍ଷେପ କରିବା ଉଚିତ ଥିଲା । ଏହାପରେ ମଧ୍ୟ ଦଙ୍ଗାକାରୀଙ୍କ ବିରୁଦ୍ଧରେ ଉପଯୁକ୍ତ କାର୍ଯ୍ୟ କରିବା ଉଚିତ୍ ଥିଲା । ଏହି ଦଙ୍ଗା ଯଦି ରୋକା ଯାଇ ପାରିଥାନ୍ତା, ତା ହେଲେ ଗଣହତ୍ୟା ହୋଇ ନଥାନ୍ତା । ନାଦର ଶାହଙ୍କର ମୃତ୍ୟୁର ଗୁଜବ ଯେ କି ବିପଦଜନକ ତା ବୁଝିବାଲାଗି ବେଶୀ ବୁଦ୍ଧିର ପ୍ରୟୋଜନ ନାହିଁ । ମୋଗଲ ସରକାରର ରାଜଧାନୀ ଦିଲ୍ଲୀରେ ଆଇନ ଶୃଙ୍ଖଳା ରକ୍ଷା କରିବାରେ ଅପାରଗତା ଏହି ଗଣହତ୍ୟାର ପ୍ରଧାନ କାରଣ ।

ଗଣହତ୍ୟା ବନ୍ଦହେବାପରେ ଅସଲ ଅତ୍ୟାଚାର ଆରମ୍ଭ ହେଲା । ତାହାହେଲା ଦିଲ୍ଲୀର ସୁନିୟୋଜିତ ଲୁଣ୍ଠନ । ସେ ସମୟର ମୂଲ୍ୟରେ ନାଦର ଶାହ ପ୍ରାୟ ୭୫ କୋଟି

ଟଙ୍କାର ଧନରତ୍ନ ନେଇ ଫେରିଥିଲେ । ତାଛଡ଼ା ଅଜସ୍ର ଘୋଡ଼ା ହାତି ଇତ୍ୟାଦି । ସେହି ୭୫ କୋଟି ଟଙ୍କାର ଆଜିକାର ହିସାବରେ ମୂଲ୍ୟାଙ୍କନ କରିବା କଷ୍ଟ । ତେବେ ଏହା ୧୭୩୯ ର ଘଟଣା । ଉତ୍ତର ଭାରତରେ ୧୭୦୦ ରେ ଗହମ ଟଙ୍କାକୁ ୯୦ ସେର ୧୭୫୦ ରେ ଟଙ୍କାକୁ ୧୦୭ ସେର ଏବଂ ୧୭୨୯ ରେ ଟଙ୍କାକୁ ୧୨୯ ସେର । ଏହାକୁ ବର୍ତ୍ତମାନର ଗହମ ଭାଉ ସଙ୍ଗେ ତୁଳନା କରନ୍ତୁ । ସେତେବେଳ ତୁଳନାରେ ଟଙ୍କାର ମୂଲ୍ୟ ୧୦୦ ରୁ ଦେଢ଼ଶହ ଗୁଣ ହ୍ରାସ ପାଇଛି । ଏଣୁ ନାଦର ନେଇ ଯାଇଥିବା ଟଙ୍କାର ପରିମାଣ ୭୫୦୦ କୋଟିରୁ ଆଠହଜାର କୋଟି ପର୍ଯ୍ୟନ୍ତ । ତାହା କେବଳ ଦିଲ୍ଲୀ ସହରରୁ । ସେତେବେଳେ ଦିଲ୍ଲୀ ବ୍ୟବସାୟର କେନ୍ଦ୍ର ନଥିଲା । ତଥାପି ଏହି କ୍ଷୟିଷ୍ଣୁମାନ ରାଜଧାନୀରୁ ଏତେ ପୁଂଜି ବା capital ବାହାରିଲା । ଏଣୁ ଭାବନ୍ତୁ ସୁରଟ ବା ମୁର୍ଶିଦାବାଦ ପରି ବଡ଼ ବ୍ୟବସାୟ କେନ୍ଦ୍ରରେ କେତେ ପରିମାଣରେ ପୁଂଜି ନଥିବ । ସେତେବେଳର ଗୋଟିଏ ବଡ଼ ପୁଂଜିପତି ପ୍ରତିଷ୍ଠାନ ଥିଲେ ମୁର୍ଶିଦାବାଦର ଜଗତଶେଠ୍ । ତାଙ୍କର ପ୍ରତାପର ନମୂନା ହେଲା ସେମାନେ ଗୋଟିଏ ଗୋଟିଏ ହୁଣ୍ଡି, କୋଟିଏ ଟଙ୍କାର ମୂଲ୍ୟ ପର୍ଯ୍ୟନ୍ତ ଦେଉଥିଲେ । ଏହି ହୁଣ୍ଡି ହିଁ ଆଜିକାଲିର Demand Draft ।

ନାଦର ଶାହ ମୋଗଲ ବାଦଶାହଙ୍କୁ ଗାଦିରେ ବସାଇ ଚାଲିଗଲେ । କିନ୍ତୁ ଏହାର ଫଳ କଣ ହେଲା ? ଅଧିକାଂଶଙ୍କର ମତ ଯେ ନାଦର ଶାହଙ୍କର ଆକ୍ରମଣ ମୋଗଲମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେଲା । କିନ୍ତୁ ପ୍ରକୃତରେ ମୋଗଲ ମେରୁଦଣ୍ଡ ଭାଙ୍ଗି ସାରିଥିଲା । ନାଦର ଶାହଙ୍କର ଆକ୍ରମଣରେ ପ୍ରଧାନ ଫଳ ହେଲାଯେ ଆଫଗାନିସ୍ଥାନ ଆଉ ମୋଗଲ ସାମ୍ରାଜ୍ୟରେ ରହିଲା ନାହିଁ । ସାମ୍ରାଜ୍ୟର ସୀମା ହିନ୍ଦୁକୁଶ ପର୍ବତରେ ନରହି ସିନ୍ଧୁନଦୀ ଉପରକୁ ଘୁଞ୍ଚି ଆସିଲା । ଫଳତଃ ପଞ୍ଜାବର ନିରାପତ୍ତା ସବୁବେଳେ ବିପନ୍ନ ହୋଇ ରହିଲା । ବହୁକାଳ ଧରି ଆଫଗାନିସ୍ଥାନ ଭାରତର ସାମ୍ରାଜ୍ୟର ଅଂଶ ରହିଥିଲା । କିନ୍ତୁ ଏହାପରେ ଆଉ ତା କେବେ ସମ୍ଭବ ହେଲାନାହିଁ । ଇଂରେଜମାନେ ଅବଶ୍ୟ ଚେଷ୍ଟା କରିଥିଲେ । କିନ୍ତୁ ସେମାନେ ଶୋଚନୀୟ ଭାବରେ ଅସଫଳ ହେଲେ ।

କିନ୍ତୁ ଏହି ସ୍ୱପ୍ନ ସମ୍ପୂର୍ଣ୍ଣ ଭାବେ ଭୁଲି ହୋଇନାହିଁ । ପାକିସ୍ଥାନର ଅନେକ ସେନାନାୟକ ଓ ରାଜନୈତିକ ପାକିସ୍ଥାନ ଓ ଆଫଗାନିସ୍ଥାନର ଏକ ମିଳିତ ରାଷ୍ଟ୍ର ବା Confederationର ସ୍ୱପ୍ନ ଦେଖୁଛନ୍ତି । ଏହା ଆଫଗାନିସ୍ଥାନରେ କମ୍ୟୁନିଷ୍ଟ ସରକାର ବିରୁଦ୍ଧରେ ବିଦ୍ରୋହ ପାକିସ୍ଥାନରୁ ପରିଚାଳିତ ହେବା ପରଠାରୁ ଆରମ୍ଭ ହୋଇଛି । ତାଆଗରୁ ଆଫଗାନିସ୍ଥାନ ସ୍ୱପ୍ନ ଦେଖୁଥିଲା ସିନ୍ଧୁର ପଶ୍ଚିମରେ ଥିବା ଅଞ୍ଚଳକୁ ପାକିସ୍ଥାନରୁ ଅଲଗା କରିବାକୁ । ଉଭୟ ସ୍ୱପ୍ନକୁ କେବଳ ଦିବାସ୍ୱପ୍ନ କହିବା ଅନ୍ୟାୟ ହେବ । ଏହାର ସୁଦୃଢ଼ ଐତିହାସିକ ଭିତ୍ତି ଅଛି । ପାକିସ୍ଥାନ ମଧ୍ୟ ଭାରତ ପରି ଭାରତ ସାମ୍ରାଜ୍ୟର ଦାୟାଦ । ଏହି ସାମ୍ରାଜ୍ୟ ହିନ୍ଦୁ, ବୌଦ୍ଧ, ପଠାନ, ମୋଗଲ, ଇଂରେଜ ନାନାରୂପରେ ଦେଖାଯାଇଛି । ସେହି ସାମ୍ରାଜ୍ୟର ପଶ୍ଚିମ ସୀମା ସମସ୍ୟା ବର୍ତ୍ତମାନ ପାକିସ୍ଥାନର । ଏଣୁ ସେହି ପ୍ରାଚୀନ ପ୍ରଶ୍ନ ସିନ୍ଧୁ ନଦ ବା ହିନ୍ଦୁକୁଶ ପର୍ବତ ? ବର୍ତ୍ତମାନ ପାକ ଆଫଗାନ

ସୀମା ଇଂରେଜମାନେ ହାରଯାଇଥିବା ଆଫଗାନିସ୍ଥାନ ଉପରେ ଲଦି ଯାଇଛନ୍ତି ସତ । ଅସଲ ପ୍ରଶ୍ନ ହେଲା ଆତ୍ମନିୟନ୍ତ୍ରଣର । ପାକିସ୍ଥାନର ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ପୂର୍ବ ଆଫଗାନିସ୍ଥାନରେ ଏକ ପଖତୁନ ଜାତି ରହନ୍ତି । ଏହି ସମସ୍ୟାର ବୋଧହୁଏ ସମାଧାନ ନାହିଁ ଓ ପାକିସ୍ଥାନ ଆଫଗାନିସ୍ଥାନ ସମସ୍ୟା ରହିଛି ଓ ରହିବ । ଇସ୍‌ଲାମର ଦୁହାଇ ଦେଇ ଏକ କନ୍‌ଫେଡ଼େରେସନ୍ ସ୍ୱପ୍ନ ଜନ୍ମଭୂମଙ୍କନ (ଦୁର୍ଗତ) ଜିହ୍ୱା-ଉଲ୍-ହକ୍ ବା ମୌଲବାଦୀ ଆଫଗାନ ବିଦ୍ରୋହୀ ନେତା ଗୁଲ୍‌ବୁଦ୍ଦିନ୍ ହିକମତିଆର୍ ଦେଖିପାରନ୍ତି । କିନ୍ତୁ କାର୍ଯ୍ୟତଃ ଇସ୍‌ଲାମକୁ ଏପରି ବ୍ୟବହାର କରିବାର ଚେଷ୍ଟାରେ ବାସ୍ତବିକତା ନାହିଁ ।

ନାଦର ଶାହଙ୍କ ଆକ୍ରମଣରୁ କୌଣସି ଶିକ୍ଷାଲାଭ ମୋଗଲ ଦରବାର କରିନଥିଲା । କିନ୍ତୁ ବର୍ତ୍ତମାନର ଭାରତ ସେହି ଶିକ୍ଷାକୁ ଭୁଲିଲେ ଚଳିବ ନାହିଁ ।



# ଗଙ୍ଗୁ ତେଲି

ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି "କହାଁ ରାଜା ଭୋଜ ଔର୍ କହାଁ ଗଙ୍ଗୁ ତେଲି।" ଅର୍ଥାତ୍ ସମ୍ଭ୍ରାନ୍ତ ଓ ଜନସାଧାରଣଙ୍କର ଜୀବନ ପ୍ରଣାଳୀ ଏବଂ ଜୀବନ ଦର୍ଶନ ଅଲଗା । ଏ ପର୍ଯ୍ୟନ୍ତ ରାଜା ଭୋଜ ଆର୍ଥାତ୍ ସମ୍ରାଟ, ରାଜା, ନବାବ, ଅମୀର ଉମରାଙ୍କ ବିଷୟରେ ଅନେକ ଆଲୋଚନା ହେଲାଣି । ପ୍ରକୃତରେ ଇତିହାସରେ ଯେଉଁ ଉପାଦାନ ମିଳେ ତା ସମ୍ଭ୍ରାନ୍ତ ବା Elite ମାନଙ୍କର ଇତିହାସ । ଜନସାଧାରଣ ଅର୍ଥାତ୍ ଗଙ୍ଗୁ ତେଲିର ପ୍ରଧାନ ସମସ୍ୟା କିପରି ଜୀଇଁବ । ସେ କେବଳ ଖଜଣା ଦେବ, ତାର ଘର ଲୁଟ ହେବ ଏବଂ ଯଦି ବେଶୀ ସାହସୀ ହୋଇଥାଏ ତା ହେଲେ ସିପେଇ ହୋଇ ଭର୍ତ୍ତିହେବ । ଫଳତଃ ହୁଏତ ଅକାଳମୃତ୍ୟୁ ବା କିଛି ଲୁଟପାତ ଜନିତ ପୁଂଜି ହାସିଲ । ତାଦ୍ୱାରା ଖ୍ୟାତିକ ଦରଜା ଖାଟେ ଅଭିଜାତ ଶ୍ରେଣୀରେ ପ୍ରବେଶର ସମ୍ଭାବନା । ଏହି ଗଙ୍ଗୁ ତେଲି ମାନଙ୍କର ଅବସ୍ଥା କିପରି ଥିଲା ।

ସମସ୍ତେ କହନ୍ତି ଭାରତ ଜାତି ବା Casteର ଦେଶ । ଯେ ଯେଉଁ ଜାତିରେ ଜନ୍ମ ହୋଇଛି ତାକୁ ସେହି ଜାତିର କର୍ମ କରିବାକୁ ହେବ ଏବଂ ସେହି ଜୀବନ ପ୍ରଣାଳୀ ଅନୁସରଣ କରିବାକୁ ହେବ । ମୁଁ ପିଲା ହୋଇଥିଲା ବେଳେ ୧୯୩୦ ଦଶନ୍ଧିରେ ଏକ ରେକର୍ଡ ଖୁବ୍ ଜନପ୍ରିୟ ହୋଇଥିଲା । ସେ ଗୀତର ଆରମ୍ଭ ଏହିପରି—

କିଏ ଶୁଣିବ ହୋ, ପାଠ ପଢି ହେଲୁ ନାଶ
ସମସ୍ତେ କାନରେ କଲମ ଖୋସିଲେ
ବଳି ବାଡ଼ି ଗଲା ନାଶ ।

ପରେ କବି ଦୁଃଖର ସହିତ କହୁଛନ୍ତି, "ଚଷାପୁଅ ଏବେ ପନ୍ଦରଟଙ୍କିଆ କିରାଣୀ ହେଲାଣି ଗୁଡ଼" ଅର୍ଥାତ୍ କାନରେ କଲମ ଖୋସିବାଟା ଏକ ବିଶେଷ ଜାତିର କାମ । ଏହା ଶତକଡ଼ା ପଞ୍ଚାନବେଙ୍କ ପକ୍ଷରେ ସତ ହେଲେ ମଧ୍ୟ ବୁଦ୍ଧିମାନ ଓ ପ୍ରତିଭାବାନ ବ୍ୟକ୍ତି ଏ ହରକୋଠରୁ ବାହାରି ଯାଉଥିଲେ । ଏପରିକି ସେମାନେ ନିଜ ପରିବାରରେ ଜାତି ଉଚ୍ଚତର କରିବାରେ ସମର୍ଥ ହେଉଥିଲେ । କିନ୍ତୁ ଏହି କରିତ୍କର୍ମୀ ମାନେ ଜନସାଧାରଣ ନୁହନ୍ତି । ଏଣୁ ଉପସ୍ଥିତି ଏମାନଙ୍କୁ ଛାଡ଼ି ଦିଆଯାଉ । ଏଠି ଆମେ ଆଲୋଚନା କରିବା ମୋଗଲ ସମୟରେ ଜନସାଧାରଣଙ୍କ ଅବସ୍ଥା କଣ ଥିଲା । ସେମାନେ

କଣ ଖାଉଥିଲେ, ପିନ୍ଧୁଥିଲେ ଓ କିପରି ରହୁଥିଲେ । ମୋଟ ଉପରେ ସେମାନେ ଇଂରେଜ ଶାସନ ସମୟରେ ଭଲରେ ଥିଲେ ନା ମୋଗଲ ସମୟରେ । ଏହାର ଆଲୋଚନା ଆବଶ୍ୟକ କାରଣ ଇଂରେଜ ପ୍ରଚାର କରି ଆସିଛନ୍ତି ଯେ ସେମାନେ ଭାରତୀୟ ରାଜା ନବାବ ଅମଳର ଅବ୍ୟବସ୍ଥା ଦୂରକରି ଦେଶକୁ ଉନ୍ନତର ପଥରେ ଆଗେଇ ନେଲେ, ଆମେ ତାହା ମୋଟା ମୋଟି ମାନି ନେଇଛୁ ଓ ଅଧିକାଂଶଙ୍କର ବିଶ୍ୱାସ ଯେ ଜନସାଧାରଣଙ୍କର ପକ୍ଷରେ ଇଂରେଜ ଅମଳ ଅତି ଭଲ ଥିଲା । ଭାରତୀୟ ଜନତାର ଦାରିଦ୍ର୍ୟ ସମ୍ବନ୍ଧରେ ଉପାଦାନ ପ୍ରଧାନତଃ ବିଦେଶୀ ପର୍ଯ୍ୟଟକ ମାନଙ୍କର ଲେଖା ଉପରେ ନିର୍ଭରଶୀଳ । ଏହି ପର୍ଯ୍ୟଟକମାନେ ୟୁରୋପର ହୋଇ-ଥିବାରୁ ଭାରତ ବର୍ଷରେ ବିଶେଷ କରି ଦକ୍ଷିଣ ଭାରତରେ ଲୁଗା ପଟାର ସ୍ୱଳ୍ପତା ଏବଂ ଅନ୍ୟାନ୍ୟ ଜିନିଷ ଯଥା ଖଟ ପଲଙ୍କ ଇତ୍ୟାଦିର ଅଭାବରୁ ଧରି ନେଇଥିଲେ ଯେ ଭାରତୀୟମାନେ ଅତି ଗରିବ । ଅଥଚ ଏହି ଜଳବାୟୁ ପକ୍ଷରେ ଅତ୍ୟଧିକ ପୋଷାକ ଅନାବଶ୍ୟକ । ସେହିପରି ଘର । ଆମର ସମସ୍ୟା କିପରି ଘରକୁ ଥଣ୍ଡା ରଖିବୁ । ୟୁରୋପରେ ସମସ୍ୟା ଓଲଟା ଘର କିପରି ଗରମ ରହିବ । ଏଣୁ ଭାରତର ଗୃହଲଦର ୟୁରୋପୀୟ ଆଖିର ଦାରିଦ୍ର୍ୟର ନମୁନା ।

ପ୍ରକୃତ ତଥ୍ୟ ପାଇବାକୁ ହେଲେ ଆମକୁ ସେ ସମୟର ମଜୁରି ଓ ଦରଦାମକୁ ବିଶ୍ଳେଷଣ କରିବାକୁ ହେବ । ଏଥିରେ ମଧ୍ୟ ସାବଧାନ ହେବାର ପ୍ରୟୋଜନ ଅଛି । ତାହାର କାରଣ ଭାରତର ଅଧିକାଂଶ ମୂଲିଆ ନଗଦ ମଜୁରି ପାଉ ନଥିଲେ । ସେମାନେ ଖାଦ୍ୟଶସ୍ୟ ଆକାରରେ ମୂଲ ପାଉଥିଲେ । ତା ଛଡ଼ା ସମସ୍ତ ଭାରତ ଗୋଟିଏ ଅର୍ଥନୈତିକ ଏକକରେ ପରିଣତ ହୋଇ ନଥିଲା । ତେବେ ସେତେବେଳେ ବଙ୍ଗଳା (ବିହାର ଓ ଓଡ଼ିଶା ସମେତ) ସବୁଠାରୁ ଶସ୍ତା ଥିଲା । ଉତ୍ତର ଭାରତ ଅର୍ଥାତ୍ ଦିଲ୍ଲୀ ଆଗ୍ରା ତା ଠାରୁ ମହଙ୍ଗା ଓ ସବୁଠାରୁ ମହଙ୍ଗା ଥିଲା ଗୁଜରାଟ । ସେତେବେଳର ଗହମ ଦର ଦେଖାଯାଉ— ୧୬୦୦ ଖ୍ରୀଷ୍ଟାବ୍ଦ ବା ଆକବରଙ୍କ ମୃତ୍ୟୁ ସମୟକୁ ଗହମ ଥିଲା ଟଙ୍କାରେ ୯୦ ସେର । ତାହାର ପଚିଶ ବର୍ଷପରେ ଟଙ୍କାରେ ୧୦୭ ସେର । କିନ୍ତୁ ୧୬୩୦ ବେଳକୁ ବଙ୍ଗଳାରେ ୧୩୧ ସେର । ଆଗରୁ କହିଛୁ ଯେ ବଙ୍ଗଳା ଶସ୍ତା । ଏଣୁ ହାରାହାରି ଟଙ୍କାରେ ୧୦୦ ସେର ଧରି ଯାଇପାରେ । ସବୁ ଖାଦ୍ୟଦ୍ରବ୍ୟ ମଧ୍ୟରେ ଚାଉଳ ସବୁଠାରୁ ମହଙ୍ଗା ଓ ବାଜରା ସବୁଠାରୁ ଶସ୍ତା ଥିଲା । ଜାହାଙ୍ଗୀରଙ୍କ ସମୟରେ ଚାଉଳ ଥିଲା ଟଙ୍କାରେ ୫୪ ସେର ଏବଂ ବାଜରା ଟଙ୍କାରେ ୧୮୦ ସେର ।

କିନ୍ତୁ ଏହି ଦାମର ଜନସାଧାରଣଙ୍କ ଉପରେ ପ୍ରଭାବ କିପରି ଥିଲା ? ବର୍ତ୍ତମାନ ମଜୁରିର ହାର ଦେଖାଯାଉ । ଜାହାଙ୍ଗୀରଙ୍କ ସମୟରେ ମଜୁରି ଥିଲା ଦିନକୁ ଛଅ ପଇସା ଅକୁଶଳୀ ଶ୍ରମିକଙ୍କ ପାଇଁ । ଏହି ଛଅ ପଇସାରେ ସେମାନେ ପ୍ରାୟ ସାତ ସେର ଗହମ କିଣି ପାରୁଥିଲେ । ବର୍ତ୍ତମାନ ବଜାରରେ ଯାହା ଗହମ ଦର ସେଥିରେ ଟଙ୍କା ଆକାରରେ ଦୈନିକ ଏକୋଇଶ ବା ବାଇଶ ଟଙ୍କା ହେବ । କିନ୍ତୁ ସାଧାରଣ ଲୋକେ

ଗହମର ରୁଟି ଖାଉ ନଥିଲେ । ସେମାନେ ସାଧାରଣତଃ ବାଜରା ଖାଉଥିଲେ । ସେ ସମୟରେ ମୂଲ ପ୍ରାୟ ଶସ୍ୟରେ ଦିଆ ଯାଉଥିଲା । ଜାହାଙ୍ଗୀରଙ୍କ ସମୟରେ ଅକୁଶଳୀ ଶ୍ରମିକର ମୂଲ ଥିଲା ୧୭ ସେର ବାଜରା । କିନ୍ତୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଅର୍ଥାତ୍ ଇଂରେଜ ରାଜତ୍ୱର ଆରମ୍ଭରେ ଏହା ଖସିଯାଇ ଅଢେଇ ସେରରେ ରହିଥିଲା । ଜାହାଙ୍ଗୀରଙ୍କ ସମୟରେ ଜଣେ ଲୋକ ମୂଲଲାଗି ତାର ପରିବାର ସ୍ୱଚ୍ଛନ୍ଦରେ ପୋଷି ପାରୁଥିଲା । କିନ୍ତୁ ତାର ଦେଢଶହ ବର୍ଷପରେ ଅର୍ଥାତ୍ କ୍ଲାଇବ ବଙ୍ଗ ବିହାର ଓଡ଼ିଶାର ଦେଓ୍ୱାନୀ ନେଲା ବେଳକୁ କେବଳ ଚଳିବା ଲାଗି ଘରର ସମସ୍ତ ସମର୍ଥ ଲୋକଙ୍କୁ ଅର୍ଥାତ୍ ଅତି ବୁଢା ଓ ଅତି ପିଲାଙ୍କୁ ଛାଡ଼ି ସମସ୍ତଙ୍କୁ ମୂଲ ଲାଗିବାକୁ ପଡୁଥିଲା ।

ନାନାଦି ପ୍ରମାଣ ଓ କାଗଜପତ୍ରରୁ ଜଣାପଡ଼େ ଯେ ମୋଗଲ ସାମ୍ରାଜ୍ୟର ଉନ୍ନତି ସମୟରେ ଏ ଦେଶର ଗରିବ ଜନତା ବେଶ୍ ପୁଷ୍ଟିକର ଖାଦ୍ୟ ଖାଇ ପାରୁଥିଲା । ୟୁରୋପୀୟ ପର୍ଯ୍ୟଟକ ମାନଙ୍କ ଲେଖାରୁ ଜଣାଯାଏ ଯେ ଜନସାଧାରଣ ଉତ୍ତର ଭାରତରେ ରାତିରେ ଖେଚେଡ଼ି ଖାଉଥିଲେ ଯେଉଁଥିରେ ଘିଅ ପଡୁଥିଲା । ବାଜରା ବା ଗହମର ରୁଟି ସହିତ ଦୁଧ, ଦହି ଓ ଘିଅ ଖିଆ ଯାଉଥିଲା । ଘିଅ ସେ ସମୟରେ ଟଙ୍କାକୁ ଦଶ ସେର ଥିଲା । ଏଣୁ ମୂଲିଆ ପକ୍ଷରେ ମଧ୍ୟ ଘିଅ କିଣିବା ଅସମ୍ଭବ ନଥିଲା । ମୋଟ ଉପରେ ସପ୍ତଦଶ ଶତାବ୍ଦୀରେ ଭାରତୀୟ ଜନତାର ଜୀବନଧାରଣର ମାନ ଊନବିଂଶ ଶତାବ୍ଦୀ ଅପେକ୍ଷା ଉଚ୍ଚତର ଥିଲା । ଆହାର ବ୍ରିଟିଶ ସମୟ ଅପେକ୍ଷା ଅନେକ ବେଶୀ ସନ୍ତୁଳିତ ଓ ପୁଷ୍ଟିକର ଥିଲା ।

ଅବଶ୍ୟ ସେତେବେଳେ ଦୁର୍ଭିକ୍ଷର ସମସ୍ୟା ଥିଲା । ୧୫୯୫ ରୁ ୧୭୯୨ ଅର୍ଥାତ୍ ପ୍ରାୟ ଶହେବର୍ଷ ମଧ୍ୟରେ ପ୍ରାୟ ୨୪ ଥର ଦୁର୍ଭିକ୍ଷ ପଡ଼ିଥିଲା । ଅର୍ଥାତ୍ ପ୍ରାୟ ପାଞ୍ଚ ବର୍ଷରେ ଥରେ । ତେବେ ଏହାର କାରଣ ସମସ୍ତ ଦେଶରେ ଖାଦ୍ୟାଭାବ ନୁହେଁ । ସେତେବେଳେ ପ୍ରଧାନ ଅସୁବିଧା ଥିଲା ଫସଲ ମହଯୁଦ କରି ରଖିବାର ଗୋଦାମର ଅଭାବ ଏବଂ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଖାଦ୍ୟ ନେଇଯିବା ପାଇଁ ପରିବହନ ସୁବିଧାର ଅଭାବ । ଏଣୁ ଏକ ଦୁର୍ଭିକ୍ଷ ସମୟରେ ଗୋଟିଏ ଜାଗାରେ ଗହମ ଟଙ୍କାକୁ ତିନି ସେର ଥିଲାବେଳେ ସେଠାରେ ଶହେ ମାଇଲ ବା ଦେଢଶହେ କିଲୋମିଟର ଦୂରରେ ଟଙ୍କାକୁ ତିରିଶ ରୁ ଚାଳିଶ ସେର ଦରରେ ମିଳୁଥିଲା । କିନ୍ତୁ ପରିବହନର ଅଭାବ । ସେ ସମୟରେ ପ୍ରଧାନ ପରିବହନ ବ୍ୟବସ୍ଥା ଥିଲା ଘୋଡ଼ା, ବଳଦ, ଓଟ ଇତ୍ୟାଦି ଭାରବାହି ପଶୁ । ସେମାନଙ୍କର ଗତି ଧୀର ଏବଂ ସବୁଠାରୁ ଅସୁବିଧା ଯେ ତାଙ୍କ ଲାଗି ଯାହା ଖାଦ୍ୟ ଓ ପାଣି ଦରକାର, ଦୁର୍ଭିକ୍ଷ ସମୟରେ ତାହାର ଯୋଗାଣର ଅଭାବ । ଏହି ସମସ୍ୟାର ପ୍ରତିକାର ରେଲ ହେବାପରେ ସମ୍ଭବ ହେଲା । ଇଂରେଜ ଅମଳରେ ଯେଉଁ ସବୁ ଦୁର୍ଭିକ୍ଷ ପଡୁଥିଲା ତାର କାରଣ ପରିବହନର ଅଭାବ ନୁହେଁ । ତାର ପ୍ରଧାନ କାରଣ ଭଲ ବର୍ଷ ମାନଙ୍କରେ ଖାଦ୍ୟଶସ୍ୟ ରପ୍ତାନୀ । ଏଣୁ ଦେଶର ଆପଦ ଭଣ୍ଡାର ବା Buffer Stock ନଥିଲା ।

ସେତେବେଳେ ଲୋକ ସଂଖ୍ୟା କମ୍ ଥିବାରୁ ଜମିର ଅଭାବ ନଥିଲା । ସମସ୍ୟା ଥିଲା ଶ୍ରମଶକ୍ତିର । ଅର୍ଥାତ୍ ଜଣେ ଚାଷୀ ନିଜେ ଯେତିକି ପାରିବ ପ୍ରାୟ ସେତିକି ଚାଷ କରୁଥିଲା । ଜମିର ଉର୍ବରତା ମଧ୍ୟ ଅପେକ୍ଷାକୃତ ଭଲ ଥିଲା । ବର୍ତ୍ତମାନ ତୁଳନାରେ ସମସ୍ତ ଜନ ସଂଖ୍ୟାର ଅପେକ୍ଷାକୃତ କମ ଅଂଶ ଚାଷରୁ ଜୀବିକା ଅର୍ଜନ କରୁଥିଲେ କାରଣ ଶିଳ୍ପ, ଅର୍ଥାତ୍ କୁଟିର ଶିଳ୍ପ ଓ ବ୍ୟବସାୟରେ ଅନେକ ବେଶୀ ଲୋକ ଲାଗିଥିଲେ । ମୋଗଲ ସମୟରେ ଭାରତ ପୃଥିବୀର ଏକ ପ୍ରଧାନ ଶିଳ୍ପକେନ୍ଦ୍ର ଥିଲା ଓ ତାହାର ଶିଳ୍ପଦ୍ରବ୍ୟର ବିରାଟ ରପ୍ତାନୀ ବଜାର ଥିଲା । ଏଣୁ ଚାଷ ଉପରେ ଲୋକସଂଖ୍ୟାର ଚାପ ନଥିଲା ଏବଂ ଜମି ମଧ୍ୟ ଖଣ୍ଡ ଖଣ୍ଡ ହୋଇଯିବାର ସମସ୍ୟା ବହୁତ କମ୍ ଥିଲା । ଚାଷୀର ଅବସ୍ଥା ମଧ୍ୟ ମୋଗଲ ସମୟରେ ଊନବିଂଶ ଶତାବ୍ଦୀର ବ୍ରିଟିଶ ଅମଳ ଅପେକ୍ଷା ମୋଟାମୋଟି ଭଲ ଥିଲା । ଅବଶ୍ୟ ଏ କଥା ସ୍ୱୀକାର କରିବାକୁ ହେବ ଯେ ଶିଳ୍ପ ବ୍ୟବସାୟ ତୁଳନାରେ କୃଷି ସେ ସମୟରେ ମଧ୍ୟ ଅବହେଳିତ ଓ ଅନଗ୍ରସର ଥିଲା । ତାହାହିଁ ଭାରତୀୟ ଅର୍ଥ ବ୍ୟବସ୍ଥାର ପ୍ରଧାନ ଦୁର୍ବଳତା ଥିଲା ।

ସେତେବେଳର ଭାରତୀୟ କୃଷିର ପ୍ରଧାନ ସମସ୍ୟା ଥିଲା ଜମିଦାରୀ ପ୍ରଥାର ସମ୍ପ୍ରସାରଣ । ଜମି ଦୁଇ ପ୍ରକାରର ଥିଲା । ପ୍ରଥମ ହେଲା ଖାଲସା ଯାହାର ଖଜଣା ସମ୍ରାଟଙ୍କ ଅଧିକାରୀମାନେ ଆଦାୟ କରୁଥିଲେ ଓ ତାହା ସମ୍ରାଟଙ୍କ ଖଜଣାକୁ ଯାଉଥିଲା । ଏହାହିଁ ସେ ସମୟର କେନ୍ଦ୍ର ସରକାରର ପ୍ରଧାନ ଆୟ । ଆଉ ସବୁ ଥିଲା ଜାଗୀର ବା ଜମିଦାରୀ । ନଗଦ ବେତନ ବଦଳରେ ଜାଗୀର ଦିଆ ଯାଉଥିଲା । ଅକବର ଚେଷ୍ଟା କରିଥିଲେ ଯେ ସବୁ ଜମି ଖାଲସା କରି ଦିଆଯିବ ଏବଂ ଜାଗୀର ବଦଳରେ ନଗଦ ବେତନ ଦିଆଯିବ । କିନ୍ତୁ ତାହା ହୋଇ ପାରିଲାନାହିଁ । ପରବର୍ତ୍ତୀ କାଳରେ ଜାଗୀର ବଢ଼ିଚାଲିଲା । ପ୍ରାୟ ଜାଗୀରଦାର ମାନେ ଖଜଣା ଦେବାରେ ହେଳା କରୁଥିଲେ । ଖଜଣା ବାକି ରହୁଥିଲା । ଏଣୁ ସେନାଙ୍କୁ ଦରମା ମିଳୁ ନଥିଲା । ଏଣେ ରଇତ ଉପରେ ଉପରେ ଅତ୍ୟାଚାର ବଢ଼ି ଚାଲିଥିଲା । ମୋଟାମୋଟି ଆଉରଂଜେବଙ୍କ ପର୍ଯ୍ୟନ୍ତ ଅବସ୍ଥା କାବୁରେ ଥିଲା କାରଣ ଖାଲସା ସମସ୍ତ ଜମିର ଏକ ଚତୁର୍ଥାଂଶ ଥିଲା । ତା ପରଠାରୁ ଧୀରେ ଧୀରେ ଅବସ୍ଥାର ଅବନତି ଘଟିଲା ।

ଚାଷୀର ଅବସ୍ଥାର ସମ୍ପୂର୍ଣ୍ଣ ଅବନତି ଘଟିଲା ଇଂରେଜ ଅମଳରେ । ଭାରତର ଶିଳ୍ପ ଭାଙ୍ଗିଯିବାରୁ ଜନସାଧାରଣଙ୍କ ପକ୍ଷରେ କୃଷି ଛଡ଼ା ଆଉ ଜୀବିକା ରହିଲାନାହିଁ । ଫଳତଃ ଜମି ଉପରେ ଚାପ ବଢ଼ିଗଲା ଏବଂ ଜମି ସବୁ କ୍ରମଶଃ ଖଣ୍ଡ ଖଣ୍ଡ ହୋଇଗଲା । ଏହି ଅବସ୍ଥାର ଆହୁରି ଅବନତି ଘଟିଲା ଚିରସ୍ଥାୟୀ ବନ୍ଦୋବସ୍ତ ଲାଗି । ଏଥିରେ ଚାଷୀ ସମ୍ପୂର୍ଣ୍ଣ ରୂପେ ଜମିଦାରର ଦୟା ଉପରେ ନିର୍ଭର ରହିଲା । ମୋଟ ଉପରେ କହିବାକୁ ଗଲେ ଏହି ଗଙ୍ଗୁ ତେଲିର ଦଳ ଅର୍ଥାତ୍ ଜନସାଧାରଣ ମୋଗଲ ସମୟରେ ମନ୍ଦ ନଥିଲେ । ପୁଷ୍ଟିକର ଖାଦ୍ୟ ଦିଗରୁ ତ ଯଥେଷ୍ଟ ଭଲ ଥିଲେ । ଇଂରେଜମାନେ ସବୁବେଳେ ଗର୍ବକରି ଆସିଛନ୍ତି ଯେ ସେମାନେ ଭାରତରୁ ଅରାଜକତା ଦୂର କଲେ ।

କିନ୍ତୁ ଅରାଜକତାଟା ମଧ୍ୟ ମୋଗଲ ସାମ୍ରାଜ୍ୟର କ୍ଷୟର ସମୟରେ ବଢିଗଲା । ତା ଆଗରୁ ସମସ୍ୟା ଉତ୍କଟ ନଥିଲା । ପୁଣି ପ୍ରଶ୍ନ ଉଠିପାରେ ବ୍ୟବସ୍ଥାଟା କାହାଲାଗି ? ଇଂରେଜ ସମୟର ଶାନ୍ତି ଶୃଙ୍ଖଳା ଚିରସ୍ଥାୟୀ ବନ୍ଦୋବସ୍ତର ଜମିଦାରଙ୍କୁ ପ୍ରଜାଙ୍କୁ ଶୋଷଣ ଲାଗି ସାହାଯ୍ୟ କରୁ ନଥିଲା କି ?

ରାଜା ଭୋଜ ଓ ଗଙ୍ଗୁ ତେଲି ମଧ୍ୟରେ ଫରକ ଅନେକ । ଏପରିକି କମ୍ୟୁନିଷ୍ଟ ସମାଜରେ ମଧ୍ୟ । ଏଣୁ ମୋଗଲ ସାମ୍ରାଜ୍ୟରେ ଫରକ ଥିବାଟା ସ୍ୱାଭାବିକ୍ । ତେବେ ମଧ୍ୟ ଗଙ୍ଗୁ ତେଲିର ଦୃଷ୍ଟିରୁ ଜାହାଙ୍ଗୀର, ଶାହଜାହାନ ଅମଳ ବେଶ୍ ଥିଲା । ଖୋଦ୍ ଇଂରେଜ ଅମଳରେ ଗଙ୍ଗୁ ତେଲି ପକ୍ଷରେ କ୍ରମଶଃ ଅବସ୍ଥା ଖରାପ ହେଲା । ମୁଣ୍ଡପିଛା ଜମିର ପରିମାଣ ଖୁବ୍ କମିଗଲା କାରଣ ବେଶୀ ଲୋକ ଚାଷକୁ ଆଶ୍ରା କଲେ । ମୁଣ୍ଡପିଛା ଜମି ୧୮୯୦ ରେ ଥିଲା ୬.୪ ଏକର । ୧୯୪୦ ବେଳକୁ ତାହା ୨.୮ ଏକରରେ ରହିଲାଣି । ଏଣୁ ଖାଦ୍ୟର ଅଭାବ ହେବା ସ୍ୱାଭାବିକ । ଏଥିରେ ଆଉ ଅବସ୍ଥା ସୁଧୁରିବ୍ରା କିପରି । ଇଂରେଜ ଶାସନ ଭାରତର ଆଧୁନିକୀକରଣ କରିଛି । ଏକ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀ ସୃଷ୍ଟି କରିଛି ଇତ୍ୟାଦି ଇତ୍ୟାଦି । କିନ୍ତୁ ଏଥିରେ ଗଙ୍ଗୁ ତେଲିର ଯାଏ କେତେ ଆସେ କେତେ । ସେତ ଆଉ ଘିଅ ଖାଇ ପାରିଲାନାହିଁ ଯାହା ତାକୁ ମୋଗଲ ଅମଳରେ ମିଳୁଥିଲା ।

